

୧୯୫୫-୫୬ର ଶ୍ରେଷ୍ଠ ଓଡ଼ିଆ ପୁସ୍ତକ ରୂପେ

ଭାରତ ସାହିତ୍ୟ ଏକାଡେମୀ ଦ୍ୱାରାପୁରସ୍କୃତ

[illegible] ପ୍ରକାଶନ
[illegible], କଟକ-୨



| | | | |
|---|---|---|---|
| ପ୍ରଥମ ସଂସ୍କରଣ | — | ଅକ୍ଟୋବର | ୧୯୫୫ |
| ଦ୍ୱିତୀୟ ସଂସ୍କରଣ | — | ନଭେମ୍ବର | ୧୯୫୭ |
| ତୃତୀୟ ସଂସ୍କରଣ | — | ମାର୍ଚ୍ଚ | ୧୯୫୯ |
| ଚତୁର୍ଥ ସଂସ୍କରଣ | — | ଅଗଷ୍ଟ | ୧୯୬୪ |
| ପଞ୍ଚମ ସଂସ୍କରଣ | — | ଫେବୃୟାରୀ | ୧୯୬୮ |
| ଷଷ୍ଠ ସଂସ୍କରଣ | — | ଜାନୁୟାରୀ | ୧୯୭୫ |
| ସପ୍ତମ ସଂସ୍କରଣ | — | ଜୁନ୍ | ୧୯୭୯ |
| ଅଷ୍ଟମ ସଂସ୍କରଣ | — | ଜୁଲାଇ | ୧୯୮୯ |

ମୂଲ୍ୟ—୧୬-୦୦

ବନ୍ଧାଇ ଟ ୪-୦୦

କୋଡ଼ିଏ ଟଙ୍କା ମାତ୍ର

କେତନ ଆର୍ଟ ପ୍ରିଣ୍ଟର୍ସ, କଟକ-୧

# ସମ୍ବର୍ଦ୍ଧନା

'କା'—କାର 'କାହ୍ନୁ ଚରଣ କଲମରେ କରେଁ
କରୁଣଣ୍. ପୁରସ୍କୃତ ହେବା ଅବସରେ ।
କବ ଗୃହେ କଥାକାର କସ୍ମ-କସ୍ମ-କାଚ,
କଣ ଦେଶ ପାଇଁ କାନ୍ତ-କାହ୍ୱାଣୀ ପ୍ରଗ୍ୱର ।

ମାୟାଧର ମାନସିଂହ

ଗଡ଼ନାୟକ,

ତୁମେ ଲଳିତ ମଧୁର ଛନ୍ଦ
ସୃଷ୍ଟି କର । ହେ କବି, ତୁମର
କବିତା ପ୍ରାଣରେ ପୁଲକ ଆଣେ ।
ସେଦିନ ସନ୍ଧ୍ୟାରେ ମୋର କା-କା
ରବ ଶୁଣିବାକୁ ଆଗ୍ରହରେ ତୁମେ
କାନ ଡେରିଥିଲ, ଶୁଣିସାରି ଛୁଟାଇ-
ଥିଲ ଦୀର୍ଘଶ୍ୱାସ । ସେହି "କା"କୁ
ଆଜି ତୁମରି ହାତରେ ଉତ୍ସର୍ଗ କରୁଛି ।

ଭୁବନେଶ୍ୱର
୩-୧୧-୬୪ } କାହ୍ନୁଚରଣ



ଏଥର ବନର ଆଲୁଅ ମଥା ନୋଇଁବ ।

ନନ୍ଦିକା ପଲଙ୍କ ଉପରେ ବସିଲା । କନା ବିଛଣା ପାରି ଦେଇଛି । ଧୋବ ଫର ଫର ଚଦର ପାଢ ମୁଣ୍ଡ ଉପରେ ଯାଉଁଳି ତକିଆ ଥୋଇଛି । ବେହିଆଣୀଟା ସେ, ଦରବୁଢ଼ୀ ହେଲଣି, ହେଲେ, ତା ମୁହଁକୁ ଟିକିଏ ଲାଜ ସରମ ଅଛି କି ? କେଡ଼େ ଯତ୍ନରେ ଦରଫୁଟିଲା ଚମ୍ପାକଢ଼ିର ମାଳ ଗୁନ୍ଥି ଝୁଲାଇ ଦେଇଛି ପଲଙ୍କ ବାଡ଼ରେ । ତା ଆଖିରେ ନନ୍ଦିକା ସବୁଦିନେ ପିଲା, କାଲି ଯେପରି ଡୋଲିରୁ ଓହ୍ଲାଇ ଏ ଘରେ ଗୋଡ଼ ଦେଇଛି, ଆଜି ଚଉଠିଘର ।

ନନ୍ଦିକାକୁ ଚଡ଼ି ମାଡ଼େ, ଖୁସି ବି ଲାଗେ ।

ଚମ୍ପାକଢ଼ିର ମାଳଟି ହାତରେ ଧରି ନନ୍ଦିନୀ ନିରେଖି ଗୁହିଁଲା । ମଧୁର ମହକ ନାକରେ ବାଜୁଛି । ଚମ୍ପାକଢ଼ିର ମାଳଟିଏ ତ, ତାଆର କି ମୂଲ୍ୟ ଅଛି ? ତାଆର ଭିତରେ ଯେଉଁ ସ୍ନେହ, ମମତା, ଉଦ୍‌ବିଗ୍ନତା ପୁରିରହିଛି, କିଏ ତାର ମୂଲ କରିବ ?

ଦକ୍ଷିଣ ପାଖ ଝରକା ସେପଟେ ଗଜା ଚମ୍ପାଗଛରେ ଫୁଲ କଢ଼ି ଲଦି ହୋଇଛି, ଗଛମୂଳରେ ବିଛେଇ ହୋଇ ପଡ଼ିଛି ବେତାଏ । କେବଳ ଚମ୍ପା ନୁହେଁ, ଆଉ ଝରକା ପାଖରେ ଜାଢଜାଢକା ଗୋଲାପ ବୁଦାରେ ନାଲି, ହଳଦୀ, ଧୋବଲା ଫୁଲର ମହୋତ୍ସବ । ତାର ବି ମୂଲ୍ୟ ନାହିଁ । କିନ୍ତୁ, ଯେଉଁ ମଣିଷଟି ସେ ଫୁଲ ଆହରଣ କରି, ମନପ୍ରାଣ ଦେଇ ଗୁନ୍ଥି, ମାଳା କରି, ଖଟବାଡ଼ରେ ଝୁଲାଇଛି, ତାର ସେବା, ଆନୁଗତ୍ୟ, ସ୍ନେହ, ମମତା ଅମୂଲମୂଲ ।

ସେ ଯେ କନା, ଶାଶୁଙ୍କର ହାତବାରସି, ଅତି ବିଶ୍ୱାସୀ । ସେ ଯାହା କହିବ, ଶାଶୁ ସେଥିରୁ ବାହାର ହେବେ ନାହିଁ ।

ନନ୍ଦିକା ଫୁଲମାଳଟି ପଲଙ୍କର ବାଡ଼ାରେ ଝୁଲାଇଦେଲା । କଅଁଳ ବିଛଣା ଉପରେ ଗଡ଼ିପଡ଼ିଲା ।

ଘଣ୍ଟାଏ କି ଦୁଇଘଣ୍ଟା ସେ ଉପରବେଳା ବିଶ୍ରାମ ନେବାକୁ ସମୟ ପାଏ । ଉଠି ଲେଉଟିଲେ କବାଟ ଖୋଲି ତାକୁ ପୁଣି ପଦାକୁ ଯିବାକୁ ପଡ଼ିବ । ଘରଯାକର କାମ ତା ଉପରେ, ବିଶ୍ରାମ କାହିଁ ? ଶାଶୁବୁଢ଼ୀ ସବୁ ତା ହାତରେ ସମର୍ପି ଦେଇଛନ୍ତି । ସେ କୁଆଡ଼େ କୁଳଲକ୍ଷ୍ମୀ । ନିଜ ହାତରେ ସବୁ କରିବା କୁଳଲକ୍ଷ୍ମୀମାନଙ୍କର କର୍ତ୍ତବ୍ୟ ।

ନନ୍ଦିକା ଶାଶୁଙ୍କର କଥା ଅମାନ୍ୟ କରେ ନାହିଁ ।

ଆଖି ବୁଜିଲା ।

ସେ କ୍ଳାନ୍ତ ହୋଇଛି । ଟିକିଏ ଶୋଇବାକୁ ମନହେଉଛି । କିଏ ଜାଣି, ହଠାତ୍ ପାଖ କାହା ଘରର ଝିଅ ବୋହୂମାନେ ବୁଲି ଆସିବେ, ଆଉ ବିଶ୍ରାମ ନେଇ ହେବନାହିଁ । ସମସ୍ତଙ୍କର ସବୁବେଳେ ଅଭିମାନିଆ କଥା, ଆମ ଘରେ କଅଣ କଣ୍ଟା ପଡ଼ିଛି କି, ତମର ପାଦ ପଡ଼ିବ ନାହିଁ ?

ନିଦ ମିଳୁ ନାହିଁ ।

ନେଏଁ ନା ନେଉଁରି ?

ନନ୍ଦିକା ଆଖି ଖୋଲିଲା ।

ଭିତରେ ଛନକା । ନେଏଁ ନା ନେଉଁରି । ନନ୍ଦିକା ଉଠି ବସିଲା । ତାକୁ ନିଦ ହେଉନାହିଁ । ଦକ୍ଷିଣପଟ ଝରକା ଦୁଇଟି ଖୋଲା ଅଛି । ଘର ଭିତରେ ଆଲୁଅ ପଶୁଛି । ଆଲୁଅ ସେ ନିଦର ବଇରୀ । ମଣିଷ ଶୋଇପାରେ ନାହିଁ । ମନ ଖୋଲି ତନ୍ଦ୍ରାରାଇଜରେ ଧାଇଁପାରେ ନାହିଁ । ସବୁ ଆଖିରେ ପଡ଼େ । କେତେ ସ୍ମୃତି ମନରେ ଜାଗିଉଠେ । ସବୁ ସ୍ମୃତି ନିଜ ନିଜର ଇତିହାସକୁ ଜୀବନ୍ତ କରି ଆଖି ଆଗରେ ଠିଆ କରନ୍ତି ।

ସେ କବାଟ କିଳିଛି । ଏଥର ଦକ୍ଷିଣ ପଟର ଝରକା ଦୁଇଟି ବନ୍ଦ କଲେ ଘର ଅନ୍ଧାର ହେବ । ଆଖିକୁ ନିଦ ଆସିବ । ନନ୍ଦିକା ଉଠି ଠିଆ ହେଲା । ଧାରଶ୍ରାବଣ ହେଲେ ମଧ୍ୟ ଏବର୍ଷ ସେତେ ବର୍ଷା ହେଉନାହିଁ । ବାହୁଡ଼ାଦଶମୀ ଦିନ ତମାମ ବର୍ଷା ଲୁଚିଥିଲା, ସେଇଠୁ ବନ୍ଦ । ସେଇ ଗରମକୁ ସେଇ ଗରମ । ଦେହରୁ ଗମ୍ ଗମ୍ ଝାଳ ଫିଟି-ପଡୁଛି । ଝାଳୁଆ ସାଢ଼ୀ ଲଦିହୋଇ ଛଟପଟ ହେବାକୁ ଆଉ ମନ ହେଉନାହିଁ ।

ଆଲମାରି ଉପରେ କାନ୍ଥରେ ଟଙ୍ଗା ହୋଇଥିବା ସ୍ୱାମୀଙ୍କର ବଡ଼କରା ବାଷ୍ଟଫଟୋ ସତେକି ହସି ଉଠୁଛି । ନନ୍ଦିକା କଣେଇ ଚାହିଁଲା । ଆରେ ସତେ ତ, ସେ ମୁରୁକି ହସୁଛନ୍ତି । ପଛକୁ କୁଣ୍ଡାହୋଇଥିବା କେଶରୁ ଦୁଇ ଚନୋଟି ଖିଅ ଆଗକୁ ଝୁଲି ପଡ଼ିଛି । ସରୁ ସରୁ ଭ୍ରୂଲତା ତଳେ ସୁନାଫ୍ରେମ ବନ୍ଧା ଶକ୍ତିଶାଳୀ ଚଷମା । ସୁନାର ଡାଣ୍ଡି ଦୁଇଟି ଦୁଇ କାନକୁ ବେଷ୍ଟନ କରିଛି । ଲମ୍ବ ନାକ ତଳେ ପ୍ରଜାପତିଆ ନିଶ । ମୁରୁକି ହସ ।

ନନ୍ଦିକା ମନକୁ ମନ ଲାଜେଇ ହେଲା । ପୁଣି କଣେଇ ଚାହିଁଲା । ସ୍ୱାମୀ ହସୁଛନ୍ତି । ସାତବର୍ଷ ତଳେ ଏମିତି ସେ ହସୁଥିଲେ । ଏବେ ବି ହସୁଛନ୍ତି । ଲାଜୁଆ ମନ କହି-

ଉଠିଲା, ଦୃଷ୍ଟ, ବୁଝିପାରୁନା କପର ଝାଳବୁହା ଗରମ ? ତମ ମାଆଙ୍କର ପାଦ ଆଉଁସି ଦେଉଥିଲ, ତାଙ୍କୁ ନିଦ ହେଲା, ବିଶ୍ରାମ ନେବାକୁ ଏ ଘରେ ପଶିଛୁ । ନିଘୋଲାରେ ମୁହୂର୍ତ୍ତେ ନିଜର ନିଜେ ହେବାକୁ ମୋର ସ୍ୱାଧୀନତା ନାହିଁ ?

ଦେହ ଉଲ୍‌ସିଲା । ସ୍ୱାମୀ ହସୁଛନ୍ତି :

ନନ୍ଦିକା କହିଲା ଅଭିମାନିଆ କଥା ମନ ଭିତରେ, ଭଲକଲ ହୁଏ । ତମରି ପାଖରେ ଯାହାର ଫଟୋଟି ବଡ଼ କରାଇ ଝୁଲାଇଛ, ତାଆର ଆଡ଼କୁ କଣେଇ ଚାହିଁ, ମନଇଚ୍ଛା, ହସୁଥାଅ । ମୁଣ୍ଡରେ ଅଧ-ଓଢ଼ଣା, ମଝାରେ ଥଳକା, ମୁଣ୍ଡ ଉପରୁଙ୍କୁ, ଆଉ କପାଳ ଉପରେ ଦୁଇ କାନ ଆଡ଼କୁ ଲମ୍ବି ଯାଇଛି ସରୁ ସୁନା ଚେନ୍ । ଦେଖ, ଦୁଇକାନ ମଝିରେ ପଥରବସା ଫାସିଆ । କାନ ବଳିଲରୁ ଝୁଲୁଛି ମାକଡ଼ି, ଝଗ ଲାଗିଛି । ଗୋଟିଏ ନାକରେ ନୋଥ, ଆର ନାକରେ ଫୁଲ, ନାକ ତଳେ ଦଣ୍ଡି । କେମିତି ମାନୁଛି ? ସେଇ ତମର ସାତବର୍ଷ ତଳର ନନ୍ଦିକା । ମୁଁ ଲୁହେଁ, ସେଇ ଅଳକୁଳା ।

ନନ୍ଦିକା ଆଲମାରି ଆଗକୁ ଆଗେଇ ଆସିଲା । କବାଟ ଆଇନାରେ ନିଜକୁ ଚାହିଁଲା । ତୃପ୍ତିର ହସରେ ଉଜଳି ଉଠିଲା ପାନପତ୍ରର ପରି ମୁହଁ । ମଲ୍ଲୀଫୁଲ ପରି ଧୋବ ଫରଫର ମୁହଁରେ ରଙ୍ଗଣୀ ଫୁଲର ରଙ୍ଗ ଚଢ଼ିଥିଲା । ନିଜକୁ ନିରେଖି ନିଘୋଲାରେ ମଧ ନିରମାଣୀର ଆଖିରେ ଲାଖିଲା ସଙ୍କୋଚ ।

ସେ ବଦଳିଛି ।

ଦୁଇ କାନରେ ନୂଆ ଫେସନର ଆଶୋକଚକ୍ର ଡିଜାଇନ୍ କାନଫୁଲ । ନାଆଁକୁ ସୁନାର ଫୁଲ, କନ୍ତୁ ଟିକି ଟିକି, ଚକ ଚକ, ଧଳା ପଥରଗୁଡ଼ିକର ଝଟକ ତଳେ ସୁନାର ଫ୍ରେମ ଲୁଚିଯାଇଛି । ଗହଣା ଭିତରେ ମୁହଁରେ ସେତକ । ଅଛି ସରୁ ଚମକୁଛ ହାରଟିଏ ପାଞ୍ଚସର ହୋଇ ବେକରେ ଝୁଲୁଛି । ହାତରେ ଦି ଦି ପଟ ଡାଇମଣ୍ଡକଟା ସୁନାକାଚ । ଗୋଡ଼ରେ ସରୁ ସରୁ ପାବାଜୁ । ଗହଣା ଦେହରେ ଏତକ । ଏ ଯୁଗର ସାଦାସିଧା ଫେସନ୍ । ସ୍ୱାମୀଙ୍କର ରୁଚି ଓ ଇଚ୍ଛାର ସେ ଅଧୀନ ।

ନନ୍ଦିକା ବଦଳିଛି ।

ବାହାପାଣି ପଡ଼ିଲାରୁ କି କଅଣ, ଦେହରେ ମାଉଁସ ଲାଗିଛି । ଧୀରେ ଧୀରେ ସାନ ଦାରଘରେ, କେଡ଼େ ବଡ଼ ମାଇପିଟାଏ ସେ ହୋଇଗଲାଣି ସତେ ! ଡୋଲିରୁ ଓହ୍ଲାଇ ଏ ଘରେ ସେଉଦିନ ପାଦ ଦେଲା, ଗାଁ ମାଇପେ କଥାଭାଷା ହେଲେ, ସୁନାଖଡ଼ିକା ବୋହୂ ପାଇଛି ସୁନନ୍ଦବୋଉ । ଶାଶୂ କହିଲେ, ରୂପରୁ ମହତ କି ମିଳିବ, ମା ଦୁର୍ଗା ଆଇସ୍ର ନିଦତ ଦେଉନ୍ତୁ, ସୁଖ ଆନନ୍ଦରେ ସେମାନେ ଘର କରନ୍ତୁ । କେମିତି ତା ମା ବଢ଼େଇଛି କେଜାଣି, ଫୁଙ୍କିଦେଲେ ତ ଟଳିପଡ଼ିବ ।

ଛଅବର୍ଷ ପରେ ଯେତେବେଳେ ସେ ପୁଆଣି ହୋଇ ବାପଘରକୁ ଗଲା, ବୋଉଙ୍କ ଆଖିରୁ ଲୁହ ଝରିଲା । ନନ୍ଦକାର ଆଖିରୁ ଲୁହ ପୋଛି ଦେଉଣୁ ସେ କହିଲେ, ମୋ ମାଆର ଅବସ୍ଥା ନାହିଁ । କାମ କରାଇ ପିଲାଟାକୁ କ ସର କରିଛି ସେ ରାକ୍ଷାସୁଣୀ ଶାଶୁ ବୁଢ଼ୀ !

ବାଉଜ ଦାନ୍ତେ ମୁରୁକେଇ ହସୁଥାଆନ୍ତି । ସମ ବୟସ୍କା ହସପେଡ଼ୀ ସାନ ଭାଉଜ ନନ୍ଦକାର ମୁହଁ ଟେକ ନନେ ମୁଣ୍ଡ ଦୋହଲାଇ ଗୁମ ଗୁମ କହିଲେ, ଆହା, ମର-ଯାଉଥାଏଁ ଟି, ନନ୍ଦର କଣ୍ଠା ଦୋହଲୁଛି, ଖାଲ ଗାଲ ଦୁଇଟା ପୁଚୁକା ହୋଇଛି ।

ବାପଘରେ ଚାରିମାସରୁ ଅଧିକ ଶାଶୁ ରଖେଇଦେଲେ ନାହିଁ । କନ ଖବର ପଠେଇଲା, ବୋହୂକୁ ନ ଦେଖି ବୁଢ଼ୀ ଆହାର ଛାଡ଼ିଲେଣି ।

ଶାଶୁଘରକୁ ଫେରି ଆସିଲା । ଚାହିଁଦେଇ, ଲୁହ ଜକେଇଲା ଆଖିରେ ବୋହୂମୁହଁକୁ ଘଣ୍ଟାଏ ଚକେଇ ଶାଶୁ କହିଲେ, ସାବତ ମା କ, ବୋହୂଟାକୁ ମୋର କଳାକାଠ କରି ଛାଡ଼ିଛି !

କନ କହିଲା ନରୋଳାରେ, ଆଗୋ ନୂଆବୋହୂ, ତମେ ଗଲାଦନୁ ନନ୍ଦଭାଇ ଆଉ ଶନିବାରେ ଗାଁକୁ ଆସି ସବାରେ କଟକ ଫେରନ୍ତି ନାହିଁ । କେଉଁ ଛୁଟିରେ ଥରେ ଆଇଲେ ସେ ଘରେ ପଶନ୍ତି ନାହିଁ । ସେଥିପାଇଁ ଜାଣ ତମକୁ ଆସିବାକୁ ମୁଁ ଖବର ପଠେଇଲି । ମୋ ହାତ ରନ୍ଧା ତ ଜାଣି ବୁଢ଼ୀମାଙ୍କ ତୁଣ୍ଡକୁ ରୁଚେ ନାହିଁ ।

ସତେ, ସେ କେଡ଼େ ମୋଟା ହେଲଣି ' ସକାଳୁ ଉଠି ରାତି ଅଧଯାଏ କାମ କଲେ ବି ଦେହ ଝଡ଼ୁନାହିଁ । ସ୍ୱାମୀଙ୍କୁ କହିଲା, ଆଉ ବେଶୀ ମୋଟା ହେଲେ କାମ କରିପାରିବ ନାହିଁ । ମୋତେ ଔଷଧ ଆଣି ଦିଅ ।

ସୁନନ୍ଦ ମୁରୁକେଇ ହସି କହିଲା, ହିଁ, ଟିକିଏ ଚେରେଇଛ, ରଙ୍ଗ ବଦଳିଛି, ଢଙ୍ଗ ବଦଳି ନାହିଁ । ବେଶ୍ ଫୁର୍ତ୍ତି ଅଛି । ତେବେ, ଗୋଟିଏ କାମକର । ଘରର କବାଟ କିଳ ପ୍ରତିଦିନ ଦଣ୍ଡ ବୈଠକ ଅଭ୍ୟାସ କର । ଦେହର ଚର୍ବି ତରଳିଯିବ । ଆସ, ମୁଁ ବତେଇ ଦେଉଛି । ଦଣ୍ଡ ବୈଠକ ଚର୍ବି ଝାଡ଼ିବାର ଅବ୍ୟର୍ଥ ଔଷଧ ।

ଆରେ '

ଆଜ ଶନିବାର ।

ଶୁଭ କାଉପଲ ଘଡ଼ିକ ଘଣ୍ଟ ଆସି ରାବ ଛାଡ଼ ଉଡ଼ିଯାଉଛନ୍ତି । ବାଆଁ ଆଖି ଆଜ ସକାଳୁ ଡେଇଁଛି । ତନ ଥର କି ପାଞ୍ଚଥର, ହାତରୁ ବାସନ ଖସିଲଣି । ଅଜାଣତରେ ମନ ଛନ ଛନ ହେଉଛି ।

ନନ୍ଦିକା ଆଜି ଟିକଏ ଶୋଇପଡ଼ିବ । ସବୁ ଶନିବାରେ ସେ ସାଇକେଲ୍ ଚଢ଼ି ଆସି ପହଞ୍ଚନ୍ତି । କେବେ ସଞ୍ଜ ଆଗରୁ, କେବେ ରାତି ଆଠଟା ହୁଏ । ଯେତେବେଳେ ପଛେ ସେ ଆସନ୍ତୁ, ରାତିରେ ଶୋଇଦିଅନ୍ତି ନାହିଁ । ରାଜ୍ୟଯାକର ଗପ ତାଙ୍କଠି । ସବୁ ଶୁଣିବାକୁ ହେବ । ପ୍ରତି ପଦରେ ହୁଁ କହିବାକୁ ହେବ, ନୋହିଲେ ସେ ଅଭିମାନ କରିବେ । ଘୁମେଇପଡ଼ିଲେ ଚିମୁଟିବେ ।

ନନ୍ଦିକା ମୁଣ୍ଡ ଉପର ଝରକା ବନ୍ଦ କଲା । ଆଉ ଝରକା ବନ୍ଦ କଲାବେଳକୁ ଘର ଚଟିଆ ଚଢ଼େଇ ଦିଓଟି କଡ଼ି ଉପର ବସାରୁ ବାହାରି ଫଡ଼ଫାଡ଼ ହୋଇ ପଦାକୁ ଉଡ଼ି ପଳାଇଲେ । କୁଟାକାଠି ଦେଇ କଡ଼ି ଉପରେ ବାନ୍ଧିଥିବା ବସା ଭିତରୁ ଚିଁ ଚିଁ ଶବଦ ଆଉ ଶୁଭିଲା ନାହିଁ । ଛୁଆ ଦିଓଟି ପୁଣି ବାପମାଆଙ୍କର ଆସିବାକୁ ଅପେକ୍ଷା କରି ରହିଛନ୍ତି । ସେମାନେ ଥଣ୍ଟରେ ଅଧାର ନେଇ ଆସିବେ ।

ନନ୍ଦିକାର ହାତ ଅଟକିଲା । ନା, ନିଦ ପଛେ ନ ହେଉ, ସେ ଝରକା ବନ୍ଦ କରିବ ନାହିଁ । ଛାର ଚଢ଼େଇ ହେଲେ ବି ସେମାନେ ଏ ଘରେ ବସା ବାନ୍ଧିଛନ୍ତି, ଛୁଆ କରିଛନ୍ତି । ଏ ଘରେ ତାଙ୍କର ମଧ୍ୟ ଅଧିକାର ଅଛି । ତାଙ୍କର କର୍ତ୍ତବ୍ୟ ଓ ଆନନ୍ଦର ସେ ଅନ୍ତରାୟ ହେବ ନାହିଁ ।

ନନ୍ଦିକା ଫେରିଆସିଲା । ପଲଙ୍କ ଉପରେ ଲମ୍ବହୋଇ ଶୋଇଲା । ଆଖି ବୁଜିଲା । ବିରକ୍ତ ଲାଗୁଛି ।'ଆଖି ପତା ଭେଦିକରି ଦିନର ଆଲୁଅ ମୁଣ୍ଡରେ ପଶୁଛି ।

ପୁଣି ଚେଁ ଚେଁ ଶବଦ ।

ଆଖି ଖୋଲିଲା । ବାପ ମା ଚଢ଼େଇ ଦିଓଟି ଛୁଆଙ୍କ ପାଟିରେ ଅଧାର ଦେଉଛନ୍ତି । ଉଡ଼ିଗଲେ ପଦାକୁ । ଟିକି ଟିକି କଅଁଳିଆ ଥଣ୍ଟ ଦିଓଟି ବସା ଭିତରୁ ପଦାକୁ ଦିଶିଲା, ଲୁଚିଗଲା ପୁଣି ବସା ଭିତରେ । ପୁଣି ଚିଁ ଚିଁ ।

ନନ୍ଦିକା ଏକା ଆଖିରେ ଅନେଇଁ ରହିଲା । ଛାତି ଥରାଇ ଛୁଟିଲା ଦୀର୍ଘଶ୍ୱାସ । ମନର କେଉଁ କନ୍ଦରେ ଛଟପଟ ହେଲା କାମନା । ଛଟପଟ ହେଲା, ଅସ୍ଥିର ଲାଗିଲା । କାହିଁକି କେଜାଣି, କୋହ ଉଠିଲା । କାନ୍ଦ କାନ୍ଦର ଆକୁଳ ବିକଳ ଭାବ ଛାତି ଥରାଇଲା । ଅଜାଣତର ଅମାନିଆ ଲୁହ ଆଖି କୋଣରୁ ଝରି ଆସିଲା ।

ଛାର ଘରଚଟିଆଠାରୁ ମଧ୍ୟ ସେ ହୀନ !

ନୂଆବୋହୂ ହୋଇ ଏଇ ଘରକୁ ଆସିଲାଦିନ ତା'ର ବୟସ ହୋଇଥିଲା ସତର । ଚବିଶ ପୂରି ପଚିଶ ଚାଲିଲାଣି, ସେ କଷି ଧରିଲା ନାହିଁ ।

ଝରକା ସେ ପାଖେ ଆତ ଗଛରେ ଲଟେଇଛି ଯେଉଁ କଖାରୁ ଲଟା, ସେଥିରେ ଫୁଲ କଷି ଲଦି ହେଲାଣି । ତା ଏପାଖେ ଡାଳିମ୍ବଗଛ, ନାଲି ଟହ ଟହ ଫୁଲଫଳରେ ଲଦି ହୋଇଛି । ସମୟ ଆସିଲେ ସମସ୍ତେ ହୁଅନ୍ତି ଜନନୀ, ଓଜନ୍‌ଦାର । ଅତି ବୁଣାଳିଆ

ହୋଇ ବଢ଼ୁଛି ଯେଉଁ ଭେଣ୍ଡି ଗଛଟି, କାହିଁ ସେଥିରେ ଫଳ କି ଫୁଲ ? ଭୃଙ୍ଗୁଣ୍ଡା ହେଲଣି । ଅଗରେ ଚନ୍ଦ୍ର ପିମ୍ପୁଡ଼ି ମୁଣ୍ଡ ଖାଇଲେଣି ।

ତାର କଅଣ ସେଇ ଭେଣ୍ଡି ଗଛର ଅବସ୍ଥା ହେବ ? କେବଳ ଗଣ୍ଡି ବଢ଼ାଇ ସମସ୍ତ କାଟିବ ? କାହିଁ ସପନ ! ଚଉଦଶ ପୁରୁ ପଚଶ ହେଲା । କାହିଁ ମାତୃତ୍ୱର ଅଦ୍ଭୁମିକା ? ପୁଣି ବଳେଇ, ବ୍ରହ୍ମ ଭୂଇଁଠୁ ସେ ସ୍ଥାନ । ସମସ୍ତ ଆସିଲେ ସେମାନେ ମାଆ ହୁଅନ୍ତି । କାନ୍ଥରେ ଚଢ଼ି ଯେଉଁ ବୁଢ଼ୀ ଝିଟିପିଟି, ପିମ୍ପୁଡ଼ି ଓ ପୋକ ଖୋଜୁଛି, ସେ ବ । ଏକା ମଣିଷ ନୁହେଁ, ବୃକ୍ଷଲତା, ଜୀବଜନ୍ତୁ, ସମସ୍ତେ ଜନନୀ ହୁଅନ୍ତି ।

ମଣିଷ ଜନମ ପାଇ ସେ ଜନନୀ ହୋଇନାହିଁ ।

ଆଜି ମିଞ୍ଚୁଡ଼ା ପଡ଼ିଲା ପରେ ସମସ୍ତ କଟିଯାଇଛି । ଶାଶୂ ଓ ସ୍ୱାମୀଙ୍କର ସ୍ନେହ ଆଦର ତାକୁ ବାନ୍ଧି ରଖିଛି । ସବୁ ସେ ଗ୍ରହଣ କରିଛି । କିଛି ପୁଝାଇ ପାରନାହିଁ । ସେ କେବଳ ଫୁଲରାଣୀ ହୋଇ, ଭଲ ଶାଢ଼ି, ମୂଲ୍ୟବାନ୍ ଗହଣା ପିନ୍ଧି ଏ ଘରର ଶୋଭା ବଢ଼ାଇବାକୁ ଆସିନାହିଁ । ଏ କୁଟୁମ୍ବର ରକ୍ତର ଧାର ଅନନ୍ତ ଭବିଷ୍ୟତକୁ ଛୁଟାଇବାକୁ ସେ ଆସିଛି । ଯୌବନର ଖେଳ ଖେଳିବା କେବଳ ନାରୀଜୀବନର ଉଦ୍ଦେଶ୍ୟ ନୁହେଁ । ସେ ଖେଳର ଅନ୍ୟ ଉଦ୍ଦେଶ୍ୟ ଅଛି । ମାତୃତ୍ୱ ।

ସେ ମାଆ ହୋଇପାରି ନାହିଁ ।

**ସେ ଗୃହଲକ୍ଷ୍ମୀ ।**

ଘରେ ବାହାରେ ସମସ୍ତଙ୍କ ତୁଣ୍ଡରେ ସେଇ ଗୋଟିଏ କଥା । ଗାଆଁ ମାଇପେ ମୁହେଁ ମୁହେଁ ଏଇ କଥା କହନ୍ତି । ସତମିଛ ସେ ଜାଣି ନାହିଁ ।

ମଧ୍ୟବିତ୍ତ କୁଟୁମ୍ବରେ ଜନମ । ବାପ ମା, ଭାଇ ଭଉଣୀ, ଭାଉଜ, ଅଈ, ସାଙ୍ଗ ଝିଅଙ୍କ ମେଳରେ, ଦୂର ମୋଫସଲ ଗାଆଁରେ ସେ ବଢ଼ିଛି । ଗାଆଁ ଝିଅଙ୍କର ଯେତେ ଯାହା ଶିଖିବାର କଥା, ଜାଣିବାର କଥା, ସେ ଶିଖିଛି, ଜାଣିଛି ।

ଗାଆଁ ଦାଣ୍ଡରେ ସାଇପଡ଼ିଶାର ଟିକି ଟିକି ଝିଅପୁଅଙ୍କ ସଙ୍ଗେ ଧୂଳି ଖେଳରେ ଖୁସି ଆନନ୍ଦ, ରାଗରୋଷ, ହସକାନ୍ଦ । ଗାଁ ସ୍କୁଲରେ ପାଠ । ଶିକ୍ଷକମାନଙ୍କ ସ୍ନେହ, ଶାସନ । ସୂତାକଟା, ବଗିଚା ଗଛରେ ପାଣି ଢାଳିବା । ଦଶପୂରି ଏଗାର ବର୍ଷକୁ ବେଳକୁ ଗାଆଁ ସ୍କୁଲର ପାଠ ସରିଲା । ଫ୍ରକ୍ ଗ୍ରାଡ଼ ଶାଢ଼ି ବେଢ଼େଇ ହେଲା ବେଳକୁ ଶାଢ଼ି ସଙ୍ଗେ ସଙ୍ଗେ ସଙ୍ଗେ ସରମ ଗୋଟି ଆସିଲା । ଘର ଭିତରେ ଘର କରଣା ଓ ସଶୁଣା ଶିକ୍ଷା । ସବୁବେଳେ ଖାଲି ଚେଇଁଥାଉଛି ତାକ ।

ଛୁ, ଏ କି ଗ୍ଭଲ୍ ନନ୍ଦକା, ମାଇପି ଝିଅର ଦୁମୁଦୁମୁ ଗ୍ଭଲ ଭଲ ଦଶେ ନାହିଁ ମା ! ଦେଖିଲୁ ତୋର ବଡ଼ ଭାଉଜକୁ, କେମିତି ଗୁଣ୍ଠୁଣୀ ହୋଇ ପଶ ଗ୍ଭଲେ । କେହି ଜାଣିବ ନାହିଁ ଯେ ମାଇପିଟିଏ ଆଉଚ ଯାଉଚ । ପାଦତଳେ ପିମ୍ପୁଡ଼ି ମରିବ ନାହିଁ । ମା ଏଇପରି ସ୍ନେହର ଶାସନ କରନ୍ତି । ଶିଖେଇ ଦିଅନ୍ତି । ଗେଲ୍ହାକର ମୁଣ୍ଡ ଆଉଁସି ଦିଅନ୍ତି ।

ବଡ଼ ଭାଉଜ ଲୁଚି ଲୁଚି କହନ୍ତି ଛୁ, ନନ୍ଦ, ଏ କି ହସ ? ହସିବାକୁ କେହି ମନା କରୁ ନାହିଁ, ତା ବୋଲି ଘୋଡ଼ା ପରି ହିଁ ହିଁ ହୋଇ ପାଟି ଶୁଣେଇବ ଗୁରୁଜନଙ୍କୁ ? କଥା କହିବ ଯେ ଏ କାନରୁ ସେ କାନ ଶୁଭିବ ନାହିଁ । ଛଲ କଲ କି ଏଇ କଥାକୁ ? ମୋ ରାଣ, ସୁନା ଭଉଣୀଟି, ଟିକିଏ ହସିଲ । ଭାଉଜ ମୁହଁ ଟେକନ୍ତି ।

ଦେହମୁଣ୍ଡରୁ ଲୁଗା ଖସିଗଲେ ଆକଟ । ସିଧାସଳଖ କାହା ମୁହଁକୁ ମୁହଁରେ ଚାହିଁଲେ କଏ ଦାନ୍ଥଲଣି । ଅଳସ ହୋଇ ନରେ଼ଲାରେ ବସିଲେ ଆଇମା ଡାଆଉଲେଣି, କାମ ନ କର ବସିବା ଗେଲ୍ହାପଣିଆ ନୁହେଁ ଲେ ନନ୍ଦ ! କଏ କହିବ କାହା କପାଳେ କିହି କଅଣ ଲେଖିଚୁ ? ରାଜାର ରାଣୀ ହେବାକୁ ସମସ୍ତଙ୍କର ମନ । ସମସ୍ତେ କଅଣ ରାଜାର ରାଣୀ ହୁଅନ୍ତି ? ଦେଖିଲୁ ମୋ କଥା, ସାତ ପୁଅରେ ଗେଲବସର ସାନ ଝିଅ ମୁଁ, ଆମ ଖାନଦାନୀ ଘର ସାତପୁରୁଷରୁ ଧନୀ । ଚଉଧୁରୀ ଘର ଖଣ୍ଡ ମଣ୍ଡଳରେ ଡାକ । ସାତ ପୁଅରେ ଝିଅ, ସାତ ଭାଇରେ ମୁଁ ଭଉଣୀ ।

କେବଳ ଛୁ ଗ୍ଭକର, ଆକଟ ଭିତରେ ବେଳ ବଡ଼େ ନାହିଁ । ନିଜ ମେଳରେ ସ୍ୱାଧୀନତା । ଘରେ ବାହାରେ ଧନ୍ୟ ଧନ୍ୟ ପ୍ରଶଂସା । ରଜ, କୁଆଁର ପୁନେଇଁର ଗାଁ ଝିଅଙ୍କ ମେଳରେ ହସଖୁସି, ସରଳ ନିରୀହ ଟାହି ଟାପରା । ଚଟାପକା, ଚନ୍ଦନଘୋରା, ପାନଭଙ୍ଗା, ଜାଠ ଜାଠିକା ପିଠା ପଣାରେ କମକୁଟ ନକ୍ସା କାମ, ଲୁଗାକୁଞ୍ଚ, ଫୁଲଗୁଚ୍ଛା, କାଉଁଶ ଓ ଘାସରେ ବିଭିନ୍ନ ପ୍ରକାର ବଟଣା ଓ ପାଚଆ କରା, ତାଳପତ୍ରର ଝୁମୁକା, କ୍ରସ୍ କାମ, ଉଲ୍‌କାମ ସବୁ ଶିଖିଚୁ ନନ୍ଦକା । ଯେ ଦେଖେ, ସେ କରେ ପ୍ରଶଂସା ।

କାମ ଓ ଶିକ୍ଷାର ଆନନ୍ଦରେ ଝିଅଦିନର ବେଳ କେଡ଼େ ବେଗେ କଟିଗଲା ସତେ ! ପରଘର କଥା କେହି କେହି ମନେ ପକେଇ ଦିଅନ୍ତି । ବାହା ହୋଇ ଫେରି ଆସିଥିଲା ଝିଅମାନେ କେହି ନ ଥିଲା ବେଳେ ନୂଆ ଅଭିଜ୍ଞତା, କେତେ ପ୍ରକାରେ, କେତେ ରଙ୍ଗରେ ଗପନ୍ତି । ତରି ତରି, ତରଙ୍ଗ ତରଙ୍ଗ ହୋଇ ନନ୍ଦକା ଶୁଣେ । କଅଣ ଶୁଣେ, ବୁଝେ ନାହିଁ । ବୁଝିବାକୁ ଆଗ୍ରହ ହେଲେ ବି ସାହସ ହୁଏ ନାହିଁ । ଯେଉଁମାନେ ଥରେ ଘାଗଛଡ଼ା ହୋଇ ପରଘରେ ପାଦ ପକାଇ ଫେରନ୍ତି, ସେମାନେ ଆଉଜାଠିକା ହୋଇଯା'ନ୍ତି ।

ଗାଆଁ ଦାଣ୍ଡରେ କେଳାକେଳୁଣୀ ନାଟ, ସାପ ଖେଳ, ଭାଲୁ ନାଚ, ରାତିରେ ସୁଆଙ୍ଗ, ହାରିବଣ ହରିଣ, ଠିଆପାଲା, ଗାଁ ମାଇପଙ୍କ ମେଳରେ ଦେଖିବାରେ ବାଧା ନାହିଁ । ଅଶ୍ଳୀଳ କବିତାର ଶ୍ଳୀଳ ଅର୍ଥ, ରୂପ ବର୍ଣ୍ଣନା, କେଳସୁର ବର୍ଣ୍ଣନା, ସେ ସବୁ ମଧ୍ୟ

କାନରେ ପଡ଼େ । ଲାଗେ ପ୍ରହେଳିକା ପରି । ଚାରି ଚକ୍ଷୁର ମିଳନ, ହାବଭାବ, ଇଙ୍ଗିତ, ଏସବୁ ଗ୍ରାମବାଳା ପକ୍ଷରେ ଗଳ୍ପ କି ଉପନ୍ୟାସ ପରି । ଦେଖିବାକୁ, ଶୁଣିବାକୁ, ପଢ଼ିବାକୁ ଭଲ ଲାଗେ; କିନ୍ତୁ ସପନ ବି ଦେଖି ହୁଏ ନାହିଁ । ସପନରେ ମା, ଖୁଡ଼େଇ ଆକଟନ୍ତି, କହନ୍ତି, ତେଣେ କାହିଁକି ତବ ତବ କରି ଅନେଇଁଛୁ, ମୁଣ୍ଡରେ ଲୁଗା ନାହିଁ ?

ସପନ ଭାଙ୍ଗେ. ଚାଉଁ କରି ନିଦ ଭାଙ୍ଗେ । ଦେହ ଝିମି ଝିମି ହୁଏ । ଛାତି ଥରେ । ନନ୍ଦିକା ଡରି ଡରି ଚାରିଆଡ଼କୁ ଚାହେଁ । ସତେ କି ସେ ଅନ୍ୟାୟ କରିଛି । କେଉଁ ମୁନି, କି କେଉଁ ବୀର ପୁରୁଷ, ଧୀବର କନ୍ୟା କି ରାକ୍ଷସ, ନାଗ ବା ଦେବକନ୍ୟାର ପ୍ରେମରେ ପଡ଼ିଥିଲା, କାହାର ପିଛା ପଡ଼ିଥିଲେ, କିଏ ବେଦୀ ଉପରୁ କାହାର କନ୍ୟାକୁ ଟେକି-ନେଇଥିଲେ, ଏ ସବୁ ପୁରାଣର ଗଳ୍ପ । ପଢ଼ିବାକୁ ମଜା ଲାଗେ, ଜାଣିବାକୁ ଆଗ୍ରହ ହୁଏ । ଅଭିନୟ, ଗ୍ରାମ ବାଳିକା ପକ୍ଷରେ ସମ୍ଭବେ ନାହିଁ ।

ସାହି ମାଇପିଙ୍କ କଳି । ମାଇପୀ କଳିରୁ ଗୋଟିଏ ଘର ଭାଙ୍ଗି ଦୁଇଟି ହୁଏ । ପ୍ରାଣରୁ ବଳି ଯେଉଁ ଭାଇ ଆଉ ଭାଇକୁ ଭଲପାଏ, ସେମାନେ ମୁହଁ ଚୁହାଁଚୁହିଁ ହୁଅନ୍ତି ନାହିଁ । ଏ ସବୁ ଘଟଣା କାନରେ ପଡ଼େ, ଆଖିରେ ଦିଶେ । କେଜାଣି ବା ଅଜାଣତରେ ମନରେ ଲାଖିଥିବ । ଭାବିବସିଲେ କାବା କାବା ଲାଗେ ।

ନନ୍ଦିକାର ମନ ବିଦ୍ରୋହୀ ହୋଇଉଠେ । ନିଜକୁ ନିଜେ ସେ କହେ, ମୋ ଭାଇମାନେ ସେମିତି ହେବେ ନାହିଁ । ପର ଘରେ ମୁଁ ହେବ ସର୍ବସହଣୀ । ବଡ଼ ଜା ଥିଲେ ଗୋଡ଼ରେ ଶରଣ ପଶିବ, ସାନ ଜା ଥିଲେ କୋଳରେ ବସାଇବ ।

ପୁରୀ ସହରର ଧର୍ମଶାଳା ।

ରଥବେଳ । ଦୋମାହାଲ ଉପର, ପାଖାପାଖି ଦୁଇଟି ଘରେ ଦୁଇଟି କୁଟୁମ୍ବ ।

ସେଇଠି ପ୍ରଥମେ ସୁନନ୍ଦର ଆଖିରେ ତାର ଆଖି ମିଶିଲା । ଚାରୋଟି ଆଖିର ଅବୁଝା ଆଗ୍ରହ ଆଉ ଦୁଇଟି ଆଖିକୁ ଠକି ପାରି ନ ଥିଲା ।

ସେ ଦୁଇଟି ଆଖି କିନିର । କିନି ହସିଥିଲା ।

ସେଇଠି ସମ୍ବନ୍ଧ ସ୍ଥିର ହେଲା । ସର୍ବମଙ୍ଗଳ ଜଗନ୍ନାଥ ପ୍ରସ୍ତାବ ।

ସାତ ବର୍ଷ କଟିଛି ।

ଏ ଭିତରେ ନନ୍ଦିକାର ବାପ ମା ସେପୁରକୁ ଚାଲିଗଲେଣି । ଭାଇ ଦୁହେଁ ଭିନେ ହେଲେଣି । ସିଏ ଯାହାର ପିଲାକୁଟୁମ୍ବ ନେଇ ବିଦେଶରେ ଅଛନ୍ତି, ଚାକିରି ଗାଁରେ । ଜଣେ ପୋଲିସ ସବ୍‌ଇନସପେକ୍ଟର, ଆଉ ଜଣେ ଅବକାରୀ ସବ୍‌ଇନ୍‌ସପେକ୍ଟର । ଯେଝା ହାତରେ ସିଏ ଚଉଦ ପା । କେଉଁଠି କିଏ ଅଛନ୍ତି, ସେ କଥା ନନ୍ଦିକା ଜାଣେ ନାହିଁ ।

ସେ ଏତିକି ଜାଣେ, ବାପଘର ଟାଣ ତା'ର ନାହିଁ । ଶଶୁର ଘରେ ସେ ସର୍ବେସର୍ବା । ବାଦ କରିବାକୁ ଆଉ କେହି ନାହିଁ ।

ସବୁ ଆନନ୍ଦ, ସବୁ ସୁଖର ମଝିରେ ମନ ବିଚଳିତ ହୁଏ । ମନ ପ୍ରଶ୍ନେଇ ଉଠେ, ସେ କଅଣ ବାଞ୍ଝ ?

ନନ୍ଦିକାର ଦୁଇ ଆଖିରୁ ଲୋତକ ଝରେ ।

କେତେ ଜ୍ୟୋତିଷ, କେତେ ଅବଧାନ ପୁଅର ଜାତକ ଦେଖି, ହାତ ଦେଖି, ଗଣନା କରି କହିଲେ, ସୁନନ୍ଦର ତିନି ପୁଅ, ଦୁଇ ଝିଅ ହେବେ । ପିଲାଦିନୁ ସମସ୍ତେ ସେଇ କଥା କହିଆସିଛନ୍ତି । ସମସ୍ତେ କଅଣ ଠିକ୍ ? ଦେଖୁ ଦେଖୁ ସାତ ବର୍ଷ କଟିଗଲା । ସୁବର୍ଣ୍ଣପ୍ରତିମା ଲକ୍ଷ୍ମୀ ବୋହୂ ନିଜେ ବାଛି ଘରକୁ ଆଣିଲେ । ଆଜିଯାଏ କିଛି ଧରିଲା ନାହିଁ ।

ଅଭସ୍ଥା କଡ଼ ମୋଡ଼ିଲେ । ଦିନ ଦୁଇପ୍ରହରେ ଆଖିକୁ ନିଦ ଆସେ ନାହିଁ । ପେଟ ପୂରାଇ ଖାଇଦେଲେ ଅଣକତ ଲାଗେ । ବିଛଣାରେ ଟିକିଏ ପଡ଼ିରହିବାକୁ ମନ ହୁଏ । ବୋହୂ ହୋଇ ନନ୍ଦିକା ଘରେ ପାଦ ଦେଲା ଦିନୁ ଅଭସ୍ଥାଙ୍କର ଏତେ ଦିନର ଅଭ୍ୟାସ ବଦଳିଛି । ସେ ଅଲସୋଇ ହେଲେଣି । ପର ଉପରେ ନିର୍ଭର କରିବା ତାଙ୍କର ଅଭ୍ୟାସ ହେଲାଣି ।

ନ ହେବ କେମିତି ? ନୂଆ ବୋହୂ ନନ୍ଦିକା, ନାକ ଉପର ଓଢ଼ଣା । କପାଳ ଉପରକୁ ଟେକି ସିଧା ସଳଖ ହୋଇ ଚାଲିଲା ଦିନରୁ ଅଭସ୍ଥାଙ୍କର ହାତରେ ପାଣି ଲାଗିନାହିଁ । ନନ୍ଦିକା ସବୁ କାମ ନିଜେ ଆଦରି ନେଇଛି । ଶାଶୁଙ୍କର ସେବାଯତ୍ନ ନେବା ତାର ଧର୍ମ । କି ଦିନ, କି ରାତି, ଗୋଡ଼ରେ ହାତ ନ ଦେଲେ ସେ ନ ଉଠେ ।

ଧନ୍ୟ ତାର ମା ! ଭଲ ଶିକ୍ଷା ତାକୁ ଦେଇଛି । କାମ କାର୍ଯ୍ୟରେ ନିପୁଣ, ଢଙ୍ଗ-ଢାଙ୍ଗରେ ତହୁଁ ବଳି । ରାଗରୋଷ, ମାନଅଭିମାନ ଟିକିଏ ନାହିଁ । ଥିରିଥିର କଥା, ଏକାନରୁ ସେ କାନକୁ ଶୁଭେ ନାହିଁ । ଆଖି ଦିଓଟି ଏଡ଼େ ସୁନ୍ଦର ଯେ ଯେଡ଼େ ବଡ଼ ଶତ୍ରୁ ହେଲେ ଅନେଇଦେଲେ ଶତ୍ରୁପଣିଆ ପାଣି ଫାଟିଯାଏ । ହସିଲା ପରିକା ମୁହଁରେ ତାର କି କମିଆଁ ଅଛି କେଜାଣି, କାହାକୁ ପଦେ କଥା କହିଲେ ତଳେ ପଡ଼େ ନାହିଁ ।

ଭାଗ୍ୟରୁ ମିଳେ ଏମିତିକା ସୁଲକ୍ଷଣୀ ବୋହୂ ।

ଦିଓଟି ଝିଅ ସେ କୋଳକୁ ଆଣିଥିଲେ, ସୁନନ୍ଦ ପଛକୁ ଶୋଷ ଓ ଆଶ୍ର ।

ଗରିବ ଘରର ଝିଅ ଥିଲେ ଅଭସ୍ତା । ବାପଘରର ଗରବ ନ ଥିଲା । ସେଥିପାଇଁ ଖୁସିବାସିଆ ଘରର ମଣିଆଁ ପୁଅଙ୍କ ହାତରେ ତାର ବଡ଼ ଦାଦା ହାତ ଛନ୍ଦିଦେଲେ । କେତେ ଧନ ଆଉ ଘରେ ରଖନ୍ତେ ? ଦେଖୁ ଦେଖୁ କୋଡ଼ିଏ ପୁରି ଏକୋଇଶି ଚାଲିଲା ।

ଯାହାଙ୍କର ହାତ ସେ ଧରିଲେ, ସେ ଦରବୁଢ଼ା । ପ୍ରଥମ ସ୍ତ୍ରୀ ପାଞ୍ଚ ବରଷ ରହି ହଇଜାରେ ଗଲେ । ପେଟରେ ପାଞ୍ଚ ମାସର ପିଲା ଥିଲା । ସ୍ୱାମୀ କୁଆଡ଼େ ବାଇଆ ବାଉଳା ହୋଇ ତିନି ବର୍ଷ ବୁଲିଲେ । ସେଇଠୁ ଆସିଲେ ଦ୍ୱିତୀୟା । ପାଞ୍ଚଟି ବର୍ଷ ତାଙ୍କର ସଂସାର । ପୁଅଟିଏ ହେଲା । ଅନ୍ତୁଡ଼ିଶାଳରେ ସେ ଆଖି ବୁଜିଲା, ଦୁଇ ଦଣ୍ଡ ପରେ ମା ।

ମାସ ଦୁଇଟା ପୁରିନାହିଁ, ବାହାଘର ଯେମିତି ଆସିଲା, ଆଗ ସାହାଡ଼ା ଗଛକୁ ବାହା ହୋଇ ସେଇଠୁ ବାହାହେଲେ ଅଭସ୍ତାଙ୍କୁ । ବୁଢ଼ା ବର ବୋଲି ସଂସାରସାରା ହୁରି ପଡ଼ିଲା । ଲୋକଙ୍କର ଟାହିଟାପରା, ଟିକା ଭାଗବତ ବରପକ୍ଷ କି କନ୍ୟାପକ୍ଷ କେହି ଶୁଣିଲେ ନାହିଁ ।

ଅଭସ୍ତା ହେଲେ ଏ ଘରର ବୋହୂ । ତିନି ବରଷ ପୁରିଲାବେଳକୁ କୋଳକୁ ଆସିଲା ସୁନନ୍ଦା, ବରଷକ ପରେ ଶୋଭା, ପୁଣି ବାରମାସ ନ ପୂରୁଣୁ ଆଭା । ସେଇଠି ପଡ଼ିଲା ଗଣ୍ଠି ।

ଦେଢ଼ଶୁରଙ୍କର ତିନି ପୁଅ, ପାଞ୍ଚ ଝିଅ । ଦିଅରଙ୍କର ପାଞ୍ଚ ଝିଅରେ ଗୋଟିଏ ପୁଅ । ବହୁକୁଟମ୍ବୀ ଘର । ବାପ ଅଜା ଯାହା ସମ୍ପତ୍ତି ରଖି ଯାଇଥିଲେ ସେତିକି । ସ୍ୱାଙ୍କ ଅମଳରେ ସମ୍ପତ୍ତି ଗମେଇଲେ ପଛେ, କମେଇଲେ ନାହିଁ ।

ଦେଢ଼ଶୁର ଗେହ୍ଲାରେ ବଢ଼ିଥିଲେ । ସେଥିପାଇଁ ସେ କୁଟାଖଣ୍ଡିକ ଦିଖଣ୍ଡ କରି ଜାଣନ୍ତି ନାହିଁ । ପୋଥି ପୁରାଣ ପଢ଼ି, ପଶା ତାଆସ ଖେଳି ସେ ବେଳ କଟାନ୍ତି । ଦିଅର ତ ହୁଣ୍ଡା । କଥା କହୁଁ କହୁଁ ହାତ ଉଠାନ୍ତି । ମୃଦଙ୍ଗ ବଜାଇ ତାଳ ପକାଇବା ତାଙ୍କର ବେଉସା । ଶେଷକୁ ସେ ଗଞ୍ଜେଇ ଅଫିମ ଅମଳ ଧରିଲେ ।

ଏକା ଏଇ ନନ୍ଦଆବାପ, ପାଠ ଅଳପ, ହେଲେ, ବିଚକ୍ଷଣ ବୁଦ୍ଧି । ସବୁ କାମ ସେଇ କରନ୍ତି, ଜମିବାଡ଼ିର ହାଲ ହକିକତ ବୁଝାଠୁ ଘରର ହାନିଲାଭ, ଗାଆଁର ମାମଲତ । ସୁଖେଦୁଃଖେ ଚାଲିଯାଉଥିଲା । ପେଟ ସଂଖ୍ୟା ବଢ଼ିଲା । ଛୋଟ ଛୋଟ ପେଟ ବଡ଼ ବଡ଼ ହେଲା । ପୁଅଗୁଡ଼ା ସିନା ଦରପଠୁଆ ହେଇ ବାବନାଭୂତ ପରି ବୁଲିପାରିବେ, ଝିଅଗୁଡ଼ା ତ ପରଘରକୁ ଯିବେ । ଧନ କାହିଁ ? ଗୋଟିଏ ଝିଅର ନିମିତ୍ତକୁ ବିକା ହେଲା ତିନିମାଣ ଜମି । ଆଉ ଗୋଟିଏ, ଆଉ ଗୋଟିଏ—ଚାରିମାଣ, ପାଞ୍ଚମାଣ ସରିଲା ।

ସବୁ ସରିବ !

ଅଭସ୍ତା ଆସିଛନ୍ତି ସବା ପଛରେ । ଦିଅରଙ୍କର ଗୋଟିଏ ପୁଅକୁ ଛାଡ଼ିଦେଲେ ତାଙ୍କର ପିଲା ତିନୋଟି ସବୁଠୁ ସାନ । ସ୍ୱାମୀଙ୍କ ଆଖିକୁ ପୁଅ, ପୁତୁରା, ଝିଅ, ଝିଆରୀ ଏକାପରି ଦିଶିପାରନ୍ତି, ହେଲେ ଅଭସ୍ତାଙ୍କ ଆଖିକୁ ତ ଦିଶିବେ ନାହିଁ ।

ସୁନନ୍ଦକୁ ଯେତେବେଳେ ଆଠ ବରଷ, ଛଅ ଭାଇ ଭିନେ ହେଲେ । ସମସ୍ତେ ଅଭିସ୍ତାଙ୍କର ଦୋଷ ଦେଲେ । କେତେ ଯେ ଛାକର, ନିନ୍ଦା, ଅପମାନ, ଅଭିଶାପ ସେ ସହିଛନ୍ତି । ଘର ପାହିଲେ କଳିକଜିଆ, ପାଟିଗୁଣ୍ଡ । ଛୋଟ କଥାରୁ କନ୍ଦଳ ଉପୁଜେ । ପୁରୁଣା ଘର ଛାଡ଼ି ନୂଆ ଭିଟା କିଣି ଘର ନ କଲେ ଜୀବନରେ ଆଉ ଶାନ୍ତି ମିଳିବ ନାହିଁ । କଜିଆରେ ସବୁ ବେଳ କଟିବ, କାମ କରିବାକୁ ତର ମିଳିବ ନାହିଁ ।

ଗାଁ ମଝିରେ ନୂଆ ଘର କଲେ ।

ରକ୍ଷା ମିଳିଲା ।

ପାଞ୍ଚ ଛ ବର୍ଷ ସଂସାର । ଉଦ୍‌ଯୋଗୀ ପୁରୁଷ । ଗୃହବାସର ତତ୍ତ୍ୱ ନିଅନ୍ତି । ସନ୍ଧ୍ୟାବେଳେ ଛକର ଛୋଟ ଦୋକାନରେ ବସନ୍ତି । ଦୁଇ ପ୍ରାଣୀଙ୍କର ପରିଶ୍ରମ ଦେଖିଲେ ଲୋକେ ଆଖି ଟେକନ୍ତି । ଶତ୍ରୁ କହନ୍ତି, ଅଧର୍ମ ବିତ୍ତ, ଫଳେ ବହୁତ, ଗଲାବେଳେ ଯାଏ ମୂଳ ସହିତ । ଦୂର ଗାଁର ଲୋକେ ଗଲାବେଳେ ଗାଁ ମଝିରେ ବଡ଼ ହତା ଓ ବଗିଚା ଦେଖି ଘଡ଼ିଏ ଚାହାନ୍ତି ।

ଶହେ ଗଛ ନଡ଼ିଆ ଚଅଁର ଢାଳିଲାଣି । କଦଳୀ ବଗିଚା, କାନ୍ଦିମାନ ତଳେ ଲୋଟୁଛି । ଆରେ, ନାହିଁ କଅଣ ? ଆମ୍ବ, ଜାମୁ, କଇଁଆ, କରମଙ୍ଗା, ପିଜୁଳି, ସଜନା, ଡାଳିମ୍ବ, ଯାହା ଖୋଜିବ । ଅପନ୍ତରା ଅରମା ଜଙ୍ଗଲ ହୋଇ ପଡ଼ିଥିଲା ଏ ଖଣ୍ଡ, ସନ୍ଧ୍ୟା ସକାଳେ ଗାଁ ମାଇପେ ନାକରେ ଲୁଗା ଦେଇ ଚିପେଇ ଚିପେଇ ପଶୁଥିଲେ । ସେଇ, ଭଙ୍ଗାହାଣ୍ଡି ଭରା ଟୁଙ୍ଗି ଗାଡ଼ିଆ କେତେ ବଡ଼ ହୋଇଛି । କାଚକେନ୍ଦୁ ପରି ପାଣି । ରୋହି ଭାକୁର ମନଖୁସିରେ ଖେଳୁଛନ୍ତି ।

ସବୁଦିନେ ପାଗ ଭଲ ନ ଥାଏ । ଝର୍-ଝର୍ ଧାର ଛାଟରେ ଅନବରତ ବରଷା ଲୁଟେ, ଅନ୍ଧାର ଘୋଟେ, ବାଆ ବତାସ ଛୁଟେ । ଆକାଶର ମଥାନରୁଆଁ ଦେବଦାରୁର ଡାଳ ଭାଙ୍ଗେ । ସେ ଭୂଇଁରେ ଲୋଟେ । ବାହା ବାହାର ଘର ବୁଡ଼ାଇ, କାଳର କୁହାଟ ଆହା ଆହା ଛାଡ଼ି ଥରାଏ ।

କଅଣ ହେଲା ?

ମୋଟେ ଦିନ ଦୁଇଟା ଜର ।

ନନ୍ଦଆର ବାପା ସଂସାର ଛାଡ଼ିଲେ; ଜୁଇରେ ପୋଡ଼ି ଧୂଆଁ ପାଉଁଶ ହେଲେ । ପର ଦୁଃଖରେ ଯେଉଁମାନଙ୍କର ମନ କାନ୍ଦେ, ଛାଡ଼ି ଡରିଲେ, ସେଇମାନେ ଆଗକୁ ଆସି ସାନ୍ତ୍ୱନା ଦେଲେ—ଜୀବନ ମରଣ ନୂଆ କଥା ନୁହେଁ । କେତେବେଳେ ଆସି

କାହା ଘରେ ପଶେ । କାନ୍ଧ ବୋବେଇ, ମୁଣ୍ଡ କୋଡ଼ି, ବିଛଣା ଧଇଲେ ଝିଙ୍ଗୁଡ଼ି ବାଛୁର ପିଲାଗୁଡ଼ିକ ହତାଶ ହେବେ । ଦବକିବେ । ଉଠ । ଏଥର ଘର ସମ୍ଭାଳ । ଆଜଯାଏ ଏକା ମାଆ ହେଇଥିଲ, ଏଣିକି ତମେ ବାପ ହେବ, ମା ହେବ ।

ଜାଆମାନେ, ସେମାନଙ୍କର ପିଲାଝିଲି, ଦେଢ଼ଶୁର ଓ ଦିଅର ଆସି ଘରେ ଆସ୍ଥାନ ଜମେଇଲେ । ସମସ୍ତଙ୍କ ଆଖିରେ ଲୁହ ।

ଜାଆମାନଙ୍କର ମନ ହସୁଛି । ଭିତରେ ଛପି ଛପି ଛଟପଟ ହେଉଥିବା ହିଂସା, ଅଭିମାନ, ପରଶ୍ରୀ କାତରତା ମୁଣ୍ଡ ଟେକି ଉଠୁଛି । ତୁଣ୍ଡରୁ ନିଆଁ ମୁହାଁ ବଳୁଆ ପରି ତାତିଲା କଥା ଝରୁଛି, ଅଲକ୍ଷଣି, ସ୍ୱାର୍ଥପର, ସବୁ ଏକା ଭୋଗଭାଗ୍ୟ କରିବ ବୋଲି ଭିନେ କରେଇଲା । ନିଅଂଶୀ ଗାଁ, ଅନାବାଦୀ ବଣ, ଯେଉଁଠି ଦିନ ଦିପହରେ ବ୍ରହ୍ମରାକ୍ଷସ, ଭୂତ, ପ୍ରେତ, ସଇତାନ, ଦେବାଦେବୀ ଆତଯାତ ହେଉଥିଲେ, ସେଇଠି ଘର ତୋଳିଲା । ଫଳ ଏବେ ମିଳିଲା । ବାପଠୁଁ ବଳି ବଡ଼ବାପ, ଦାଦି ଓ ଭାଇ ଭଉଣୀ-ମାନେ ଅଛନ୍ତି । ପିଲା ତିନିଟା କଣ ମଣିଷ ନ ହେବେ କି ? କଥା ପଡ଼ିଛି ନା !

ମାସେ କାଳ ବିଛଣାରେ ପଡ଼ି, ଛଟପଟ ହୋଇ, ଲୋକଙ୍କର ଭଲମନ୍ଦ କଥା ମନରେ ଚୋବାଇ, କପାଳକୁ ନିନ୍ଦି, ଆଖିରେ ଯେତେ ଲୁହ ଥିଲା ସବୁ ନିଗାଡ଼ି ଶେଷ କରି ଅଭୟା ବିଛଣା ଛାଡ଼ିଲେ । ଘୁଅଟିଏ ତିନୋଟି କାହା ପରି କେଉଁଠି ହତାଶ ହୋଇ ଠିଆ ହୋଇଛନ୍ତି । ଶୁଖିଶାଖି କଣ୍ଢା ଦୋହଲୁଛି । ଜାଆମାନଙ୍କର ପିଲାଙ୍କ ହସ ଓ ପାଟି କୁହାଟରେ ଘର ଭାଙ୍ଗି ପଡ଼ୁଛି । ଗାଈ ବଳଦଙ୍କ ଭିତରେ ବଦାକାଠି, ଆଖିରେ ପାଣି । ଭିତର କୁକୁରଟା ମୂଷା ପାଲଟିଛି । ମୁଣ୍ଡରେ ଘା । ମାଛି ଭଣଭଣ । ବିଲେଇ ଦିଓଟି ମ୍ୟାଉଁ ମ୍ୟାଉଁ ହୋଇ ଗୋଡ଼ରେ ଘଷି ହେଉଛନ୍ତି । କଅଣ କହୁଛନ୍ତି, କି ଅଳି କରୁଛନ୍ତି ସେମାନେ ?

ଅଭୟା ବାଡ଼ିଆଡ଼କୁ ଆସିଲେ । ଘରଆଡ଼େ ଗୋଦା ମେଲା । ନଡ଼ିଆଗଛରେ ଗୋଟମା ନାହିଁ । ଆଉ ଗଛମାନଙ୍କର ବି ସେଇ ଅବସ୍ଥା । ପୋଖରୀ କୂଳରେ ଠାଏ ଠାଏ କୁଜିଗେଣ୍ଡା ଜମା ହୋଇଛି । ପାଣି ଗୋଳିଆ । ମାଛ କଥା ଛାଡ଼, ଲୋକେ ଗେଣ୍ଡା କଙ୍କଡ଼ା ବି ଚୁଣିନେଇଛନ୍ତି । ଧାନଘର ମେଲା । ଅମାରରେ ଧାନ କାହିଁ ? ଜଣେ ଲୋକ ଆଖି ବୁଜିଲା, ଆଉ ଜଣେ ଲୋକ ତାକୁ ଝୁରି ଝୁରି ବିଛଣା ଧରିଲା, ସବୁ ଉଜୁଡ଼ିଲା ? ଆଖି ଥାଉଣୁ କିଛି ନ ଦେଖିଲେ ଏମିତ ସବୁ ଧ୍ୱଂସନାଶ ହୁଏ । ପିଲା ତିନୋଟି ମଣିଷ ହେବେ କାପରି ? ଜାଆ ଦେଢ଼ଶୁର ଦିଅର କରିବେ ?

କେହି କରିବେ ନାହିଁ । ବଣିଛୁଆ ଦିଓଟିଙ୍କ ପାଟିରେ ସେମାନଙ୍କର ବାପା ମା ଅଧାର ଦେଉଛନ୍ତି । ଜଣେ ନ ଥିଲେ ଆରକ । ଭଅଁରଟା ଭିଁ ଭିଁ ହୋଇ ମୁହଁ ଝୁରପ ଖେ ବୁଲୁଛି । କଅଁଳ ଖରା ପୋଖରୀର ଦରଟଗୋଳିଆ ପାଣି ଉପରେ

ଚକ୍‌ଚକ୍ କରି ସତେ କି ଡାକୁଛି, ଆସୁନୁ ଏଠିକି ! ସାନ ଝିଅ, ମା ମା ହୋଇ ପାଖକୁ ଆସିଲାଣି । ମଝିଆଁ ଟି ଲେମ୍ବୁ ଗଛ ତଳେ ଠିଆ ହୋଇଛି । ନନ୍ଦଆ ମୁହଁ ଶୁଖେଇ ପାଖକୁ ଆସୁଛି ।

ବାପ ସିନା ମରିଛି, ମା ତ ବଞ୍ଚିଛି, ପିଲାଏ ଅନାଥ ହେବେ ?

ନା, ନା, ନା ।

ଅଭାଗ୍ନା ମୁଣ୍ଡ ହଲାଇଲେ । ଲମ୍ବ କେଶ ଫିଟିପଡ଼ିଲା, ପିଠିରେ ଲୋଟିଲା ।

ମୁକୁଳା କେଶ ବନ୍ଧା ହେଲା ନାହିଁ ।

ପାଞ୍ଚାଳୀର ପ୍ରତିଜ୍ଞା । ଯେଉଁ ଘର ସେ ତୋଳାଯାଇଥିଲେ ସେ ଘର ପୁଣି ବସିଉଠିବ । ଯେଉଁ ଅପରାନ୍ତ ଅରମା ବଣକୁ ହାତରେ ତାଡ଼ି, ମୁଣ୍ଡରୁ ପୋଷ ପୋଷ ଝାଳ ନିଗାଡ଼ି, ସେ ନନ୍ଦନ ବନ କରାଯାଇଥିଲେ, ସେ ପୁଣି ଯତ୍ନ ଅଭାବରୁ ଅରଣ୍ୟ ପାଲଟିବ ନାହିଁ । ଆଉ, ଏଇ ପିଲା ତିନୋଟି, ଯାହାଙ୍କୁ ଦୁନିଆକୁ ଆଣିବାକୁ ଲୋକ ଅପବାଦକୁ ଭ୍ରୂକ୍ଷେପ ନ କରି ସେ ଉଭୟ ସଂସାର କରିଥିଲେ, ସେମାନେ ମଣିଷ ହେବେ ନାହିଁ ? ସେ ସିନା ମରିଛନ୍ତି, ତାଙ୍କର ଉଦ୍ଦେଶ୍ୟ ବଞ୍ଚି ରହିଛି । ସେ ସିନା ହଜିଯାଇଛନ୍ତି, ଯାହା ସେ ସମ୍ପାଦ ରଖି ଯାଇଥିଲେ ସବୁ ସେମିତି ଅଛି ।

କଏ କରିବ ? ସଂସାରରେ କଏ କାହା ପାଇଁ କରେ ?

ଯେବେ କରିବ ଘର, ଅଧେ ଆପଣା ଅଧେ ପର । ଆଖିରେ ଲୋତକ ଭରି, ଦୁନିଆ ଉପରେ ଅଭିମାନ କରି, କର୍ତ୍ତବ୍ୟ ପାଖରୁ ଅପସରି, କେହି କେବେ ସଂସାରକୁ ଜିତି ପାରି ନାହିଁ । ଗୋଟିଏ ମାସର ଅଭିଜ୍ଞତା ତାଙ୍କ ମନରେ ବାରମ୍ବାର ଚଆଁ ଦେଇ ଏଇ କଥା ତାଙ୍କୁ ଶିଖାଇଯାଇଛି । ଲାଜ, ଭୟ, ସଂକୋଚ, ଆଳସ୍ୟ, ଅପାରଗତା ଓ ଛଳ, ସବୁ ଦୂରେଇଯାଉ ।

ଲୋକେ ଛି-ଛୁକର କରିଛନ୍ତି । ଦେଖେଇ ଦେଖେଇ କହୁଛନ୍ତି, ହଁ, ନନ୍ଦଆ ମା, ଗୋଟାଏ ପିଶାଚୁଣୀ ପରି ଦିଶେ । ବାଳ ମୁକୁଳା, ମଇଳା ଲୁଗା, ଦେହରେ ମୁଣ୍ଡରେ ତେଲ ଟିକେ ମାରେ ନାହିଁ, କେଡ଼େ ଅପରିଚ୍ଛନ । ମାଇପିଟାଏ ହୋଇ ନିଜେ ବଗିଚାରେ କାମ କରିବ, ପିଲାଙ୍କୁ କରାଇବ, ଗୁଳର ମୂଲିଆଙ୍କୁ ଖଟେଇବ । ଏ ଗାଁରେ ଏମିତିକା ଅଣ୍ଡିରୀ ଅଭିଲା ବୋଲି ଆଉ କେହି ନ ଥିଲା, କି ନାହିଁ ।

ଆଉ, ଶୁଣିବ କଅଣ ? ବଲର ଧାନ, ମୁଗଠୁ ଆରମ୍ଭ କରି ବଗିଚାର କଦଳୀ ପଣ, ନଡ଼ିଆ ବାହୁଙ୍ଗା ଯାଏ ସବୁ ସେ ବିକେ । ପଇସାକୁ ଚନ୍ଦ୍ରେ ଏକା । ଛି ଛି । ଗୁଳର

ଲେମ୍ବୁ କସିଟାଏ, ପୋଖରୀକୂଳର କଳମ୍ବଲତା ସେ ବି ହୁଏ ବଡ଼ା । ହଉ ଦେଖିବା, କେତେ କଅଣ ସେ ସାଙ୍ଗରେ ବାନ୍ଧି ମଶାଣିକୁ ନେବ ।

ଉପକାର ପାଇଲା ଲୋକେ କହନ୍ତି, ହେଲେ, ନନ୍ଦଆ ମାଆର ମନରେ ଆହା ପଦ ଅଛି । ଯାହାର ଯେବେ ଯେଉଁ ଚିଜ ଲୋଡ଼ା ହେଲା, ମୁହଁ ଖୋଲି ମାଗିଲେ ସେ କେବେ ମନା କରିନାହିଁ । ଶାଗପତର ଗୁହର କଥା, ଧାନଚାଉଳ, ଗଛର ଫଳ, ପୋଖରୀର ମାଛ । ଧନ ଦେଲେ ଭଲ, ନ ଦେଲେ ତାର ମୁହଁ ନେଫଡ଼ା ନାହିଁ । ମାଗିବ ନାହିଁ । ହେଲେ, ଜଳ ଦରବ ସେ ବିନା କାରଣରେ କାହାରିକୁ ଦେବ ନାହିଁ । ଉଜାଡ଼ିବ ନାହିଁ । କାହାର ଲୋଡ଼ା ନ ଥିଲେ ସେ ଗୁରୁ ବ୍ରହ୍ମାଙ୍କ କଥା କାନକୁ ନେବ ନାହିଁ ।

ଯୋଗୀ ଭିକାରୀ ଦୁଆରୁ ତାର ହତାଶ ହୋଇ କେବେ ଫେରନ୍ତି ନାହିଁ । ଯିଏ ମାଗେ, ମୁଠିଏ ପାଏ, କେବଳ ମୁଠିଏ । ଝଲା କର ଝ କଟାଳ କର, ଆଉ ନାହିଁ ରେ ବାବା ! ଘୁଙ୍କରବାଙ୍କରଙ୍କୁ ଖଟାଏ ଯେତିକି, ସ୍ନେହ କରେ ତହିଁ ବଳି । ସେମାନେ ଆଗ, ନିଜ ପିଲା ପଛ । ଆଗରେ ବସି ଖୋଇବ ପେଇବ । ସେମାନଙ୍କ ଘରର ହାନିଲାଭ ବୁଝିବ । କେହି ବାଧକା ପଡ଼ିଲେ ନିଜେ ଧାଇଁଯିବ । ଭାରି ହୁସିଆର୍ । ସେମାନେ ବି ସେମିତି ମାନି ଚଳନ୍ତି । ନନ୍ଦଆ ମାଆର ପଦେ କିଏ ନିନ୍ଦା କଲେ ତଣ୍ଟିରେ ମୁହଁ ଲଗାଇଦେବେ ।

ବଡ଼ ପୁଅ ସୁନନ୍ଦ, ଝିଅ ଦଉଟି ଶୋଭା ଓ ଆଭା, ସତେ କି ପାଠ ପିଇଯାଉଛନ୍ତି । ଗାଁ ମାଇନର ସ୍କୁଲରୁ ପାଠ ଶେଷ କରି ବୃତ୍ତି ପାଇ ସୁନନ୍ଦ ଗଲା କଟକରେ ପଢ଼ିବାକୁ । ଝିଅ ଦିହେଁ ଗାଁ ଇସ୍କୁଲରେ ପାଠ ପଢ଼ିଲେ । ଆଖିବୁରୁଶିଆ ହେଲାରୁ, ସ୍କୁଲରୁ ନାଁ କଟେଇ ଝିଅ ଦୁହିଁଙ୍କୁ ଘରେ ରଖିଲେ ଝଭସ୍ଥା । କଡ଼ା ଶାସନ ! ସ୍ନେହ ଥାଉ ମନରେ, ବାହାରକୁ ଦେଖେଇହେଲେ ପିଲା ଖରାପ ହେବେ ।

କି କାମ ସେ ଝିଅ ଦୁଇଟାଙ୍କୁ ନ କରାନ୍ତି ! ରାଧନମନାରୁ ଗୁହାଳ ପୋଛା, ସେସିଇ ବାସରୁ ପୁରାଣ ପାଠ, ହିସାବ ଲେଖା । କେତେ ଉପଦେଶ ଦିଅନ୍ତି । ସଂସାରର ଭଲମନ୍ଦ, ହାନିଲାଭ କଥା ଶିଖାନ୍ତି । ଦାଣ୍ଡ ମାଇପେ ଘରକୁ ଆସି ପଦାରେ ଯାଇଁ ଗପନ୍ତି, ଝିଅଗୁଡ଼ାଙ୍କୁ ପୋଇଲା କରି ରଖିଛି ସେ ନନ୍ଦଆ ମାଆଟା । ଭଲ ଶାଢ଼ୀ ଖଣ୍ଡେ ନାହିଁ; ଭଲ ଗହଣା ଖଣ୍ଡେ ନାହିଁ । ବାପ ନ ଥିଲାରୁ ସିନା ଏଇଆ !

ଲେଖାଯୋଖାରେ କନ ଝିଆସୀ ହେବ ।

ଅପରୂଛନ ରୂପ । ଜଣକୁ ଦେଖେଇ ଜଣକୁ ତାର ମାମୁଁ ଯାହାକୁ ବାହା କରେଇଦେଲେ, ଚଉଠି ରାତିରେ ଜଣକୁ ଦେଖି ଉତ୍ସାହୀ ବର ଘର ଭିତରୁ ବାହାର

ଆସିଲେ ମୁହଁ ଆମ୍ବିଳା କଣ । ମଦାଙ୍କୁ ଖବର ମିଳିଲା, ବାଉଶୀବନ୍ଧ ଘର ଛାଡ଼ିଛୁ । ଦୁଇ ମାସ ପରେ କଲିକତାରୁ ତାଙ୍କ ପାଖରୁ ଚିଠି ଆସିଲା, ବାପା, ଯେଉଁ ଜନ୍ତୁଟିକୁ ବୋହୂ କରି ଆଣିଛ, ସେ ଘରେ ଥିବାଯାଏ ମୋର ଦେଖା ପାଇବ ନାହିଁ ।

କାହିଁକି ଶଶୁରେ କନକକୁ ତା ମାମୁଁଘରେ ଛାଡ଼ିଦେଇ ଗଲେ, ସେ କଥା କନକ ବୁଝିଲା ଦୁଇମାସ ପରେ, ଯେତେବେଳେ ଖବର ପାଇଲା, ତାଆର ବର ଆଉ ଠାଆକରେ ଭୁବନମୋହିନୀ କନ୍ୟା ବାହା ହୋଇଛନ୍ତି । କାନ୍ଦି ବୋବେଇ ରହିଲା । ଆଗ ମଲେ ମାମୁଁ, ସେଇଠୁ ମାଇଁ । ମାମୁଁ ପୁଅ ଭାଇ ଦୁହେଁ ପିଠାପିଠି ହୋଇ ଭିନେ ହେଲେ । କଟକକୁ ଧାଇଁଲେ ।

କନକକୁ ଆଶ୍ରା ଦେବ କିଏ ?

ଦୁଃଖରେ ଜୀବନ କଟିଛି । ବାପମାଙ୍କୁ ପିଲାଦିନୁ ଖାଇ ସେ ମାମୁଁ ଘରେ ବଢ଼ିଥିଲା । କହନ୍ତି, ବାପ ଓଳି ନେଇ ଜନମ ଲଭିଲେ ଝିଅ ସୁଖରେ ରହେ । ଦେଖନ୍ତୁ କନକର ସୁଖ ! ଯାହା ହେଉ, ବାଡ଼ୁଅ ଦୋଷ ତାର କଟିଯାଇଛି, ଏଇ ବଡ଼ ଭାଗ୍ୟ !

ସାତ ବରଷ ବାଡ଼ୁଅ ଦୋଷ କାଟି, କେଜାଣି କେମିତି ଦଇବ ଦଉଡ଼ରେ ଓଟାଣ ହୋଇ ଆସି କନକର ଭାଗ୍ୟ ବନ୍ଧା ହେଲା ଅଭୟାଙ୍କ ଘରେ । ଦେଖୁ ଦେଖୁ ଚାରି ବରଷ କଟିଲାଣି । କନକକୁ କେବେ ଅଳସ ହୋଇ ବସିବାର ଦେଖିଲେ ଅଭୟା ପଛେ ଆଖି ଫେରାଇଦେବ, ଝିଅମାନେ ଅଳସ ହେଲେ ସେ ଗରଜି ଉଠିବେ ।

ଆରେ, ମାଇପିଟା କୋଠା ତୋଳୁଛି, ମାମଲତକାର ହୋଇଛି ଗନ୍ଧିଆ । ସେ କାଠ ପର ପଥର, ଚୂନଇଟା । ବାଡ଼ି ଧନ କନ ଜଗି ବସିଛି । କିଏ ଖଣ୍ଡେ ଇଟା କି ପଥରରେ ହାତ ଦେଉ ତ ଦେଖି ! କଟକରୁ ରାଜମିସ୍ତ୍ରୀ ଆସି କାମ କରୁଛନ୍ତି । ସୁନନ୍ଦ କଲେଜ ପାଠ ଛାଡ଼ି ବେଳେ ବେଳେ ଧାଇଁଆସୁଛି ।

ତିନି ବଖରା ଭବ୍ୟ ସୁନ୍ଦର କୋଠା ଘର । ଧନ୍ୟ ମାଇପିଟାର କରାମତି !

ବଡ଼ ଝିଅ ଶୋଭାର ବାହାଘର । କେତେ ମଧ୍ୟସ୍ଥ ଗାଁ ଗାଁ ବୁଲି ପାତ୍ର ଖୋଜି ହଟିଲେ । ଶେଷକୁ ସୁନନ୍ଦ ସମ୍ବନ୍ଧ ସ୍ଥିର କଲା । ଦୂର ଗାରେ ଘର ।

ଭାଗବତ ଯୋଗ୍ୟ ପାତ୍ର । ବେଶି ପାଠରୁ ମିଳିବ କଅଣ ? ଧନୀଘର ପୁଅ । ଜମି, ଜମିଦାରୀ, ମହାଜନୀ, କାହିଁରେ ଊଣା ନାହିଁ । ରଙ୍ଗ ଟିକେ ଊଣା । ରୂପ ଗୁଣ ଲକ୍ଷଣ । ଝିଅକୁ ଯାହା କହନ୍ତି, ସୁନାର ଖୋଳରେ ପୁରାଇ ଶଶୁର ଘରକୁ ବିଦା କଲେ ।

ଏ ଗାଁରେ ଧନ୍ୟ ଧନ୍ୟ ପ୍ରଶଂସା କଥା ପଚାରେ କିଏ, ଝିଅର ଶାଶୁଘର ଆଡ଼ୁ ଯେଉଁ ପ୍ରଶଂସା ଖବର ଶୁଣନ୍ତି, ସେଥିରେ ଅଭୟାଙ୍କର ମନ ହୁଲୁସି ଉଠେ । ଆଖିରୁ ଲୁହ ଝରେ । ଆହା, ବାପେ ଯଦି ଥାଆନ୍ତେ, ଶୁଣି କେତେ ଉଷତ ହୋଇଥାନ୍ତେ । ହଁ, ବାପ ନ ଥିଲରୁ, ପୁଣି ବଡ଼ବାପ ବଡ଼ମାଙ୍କ ପଛରେ ଗୋଡ଼ାଇ ସରଗଧାମକୁ ଚାଲିଯାଇଥିବାରୁ, ଭିନେହେଲା ଦାଦି ଶୋଭାକୁ ବାହାକରେଇଲେ ।

ଆଗ୍ଭର ବାହ୍ୱାଘରକୁ ସେତକ ବ ହେଲ ନାହିଁ । ଡଅର ସେପୁରକୁ ଗ୍ଭଲଯାଇଥିଲେ । କର୍ତ୍ତା ହେଲେ ବଡ଼ ପୁରୁଷ । ଲକ୍ଷ୍ମୀ ନୃସିଂହ ପର ସୁନର୍ଣ୍ଣପ୍ରତମା ଆଷ ପାଖରେ ଦବ୍ୟ ଗୌରବର୍ଣ୍ଣ ଦୋଲଗୋବନ୍ଦକୁ ଯିଏ ଦେଖୁଥାଏ, ପ୍ରଶଂସା କରୁଥାଏ । ସେ ଜଣେ ବଡ଼ ଡାକ୍ତର । ଦୂର ଗାଁ ନୁହେ, ଦୂର ଜିଲ୍ଲ ବଲଙ୍ଗୀରର ମୋଫସଲରେ ଦୋଲଗୋବନ୍ଦଙ୍କ ଘର । ହଇହେ, ଆଜକାଲକା ଯୁଗରେ ରେଲ, ମଟର, ଉଡ଼ାଜାହାଜ ଚଲପ୍ରଚଲ । ଦୂର ହୋଇ କୋଉ ଜାଗାଟା ରହୁଛ ? ସବୁ ପାଖ । ନଗଦ ନାରାୟଣ ପଇସା ଥିଲେ, ଶହେ କୋଶ ଶହେ ପଦକା ।

ଆଗ୍ଭର ବାହ୍ୱାଘରକୁ ଶୋଭା ଆସି ପାର ନ ଥିଲ । କୋଲରେ ତାର ଦଶ ଦନର ପୁଅ । କାନ୍ଦ ବୋବେଇ ସେ ଚଠି ଲେଖିଥିଲ । ଦଇବ ଯୋଗ, ହାତ କାହାର ଅଛ ?

ସୁନନ୍ଦର ବାହ୍ୱାଘରକୁ ସଭିଙ୍କର ମେଳ ହେଲ, ଆଗ୍ଭର ବାହ୍ୱାଘରର ପାଞ୍ଚ ବରଷ ପରେ । ଶୋଭା ତାର ଦୁଇ ପୁଅ ଓ ସାନ ଝିଅକୁ ସାଙ୍ଗରେ ନେଇଆସିଲ । ଲେଖାରେ ନଣନ୍ଦ ହେବ, ଶଶୁରଘର ଝିଅଟିଏ, ତାଆ ନାମ ଲଳତା, ନଅ ବରଷର ସୁନ୍ଦର ଓ ଢଙ୍ଗର ପିଲଟି, ତାକୁ ବ ଆଣିଥିଲ ସଙ୍ଗରେ, ପିଲଙ୍କୁ ଟିକେ ଦେଖିବ ବୋଲ । ଆଗ୍ଭ ଅସିଥିଲ ଝିଅ ଦିଓଟିଙ୍କୁ ସଙ୍ଗରେ ନେଇ ।

ଏକା ସେଇ ଆଗ୍ଭ ବଦଳଛ । ନାକରେ ଚଷମା, ହାତରେ ଘଡ଼ି, ଗୋଡ଼ରେ ଚପଲ, ଲୁଗା କେମିତ ଆଉ ଜାତକା କର ପିନ୍ଧୁଛ ।

ବାହ୍ୱା ହେଲ ଝିଅ, ଡାକ୍ତରଙ୍କର ଘରଣୀ, ଆକଟ କର କହହେବ ନାହିଁ । ସହବାକୁ ପଡ଼ିବ ।

ଦୁଇମାସ ରହ ଯିଏ ଯୁଆଡ଼େ ଗଲେ । ସପନ ପର ଲଗେ ଅଭସ୍ତାଙ୍କୁ ।

ସାତ ବରଷ ହେଲ ଯାହାକୁ ବୋହୂ କର ଘରକୁ ଆଣିଛନ୍ତ, ତା ମୁହଁକୁ ଅନେଇଦେଲେ, ଝିଅମାନଙ୍କୁ ପର ଘରକୁ ପଠେଇବାର ଦୁଃଖ ସେ ଭୁଲନ୍ତ ।

କାଲପର ଲଗୁଛ, ସାତ ବରଷ କଟିଗଲ ।

ଗତ କଥା ସବୁ କାଲ ପର ଲଗେ । ମୁହୂର୍ତ୍ତକରେ ମନ ଧାଇଁଯାଏ ଅତୀତକୁ । ହେଉ ପାଇଲଦନୁ ଯାହା ଯେବେ ଘଟିଥାଏ, ମନ ଓ ଜୀବନକୁ ଅସ୍ତଇଥାଏ, ସବୁକୁ ସେ ମନ ଅନେଇଁଦେଇ ଫେରେ । ମନର ଆଖିକୁ ସବୁ ଦଶେ ଜଳଜଳ, ହେଇଟି ଦଶିଯାଉଛ ପର ! ଆଉ, ପରକ୍ଷଣରେ କଅଣ ଘଟିବ, କଏ କହବ ? ଆଖିକୁ ଦଶେ ନାହିଁ, ମନ ଅନ୍ଧାରହେଇ ଫେରେ ।

ଯେଉଁମାନେ କର ଓ କପାଳ ଦେଖି, ରାଶି ଓ ନକ୍ଷତ୍ର ଗଣି, ଦେବାଦେବୀଙ୍କ ନାମ ଧରି, ଆଗତ ଭବିଷ୍ୟ କଥା କହନ୍ତି, ସେମାନେ ଅନ୍ଧାରରେ ବାଡ଼ି ବୁଲାନ୍ତି । ଗୋଳିଆ ପୋଖରୀରେ ପଙ୍କ ଚପି ଚପି ମୀନ ଅଣ୍ଡାଳିବା ପରି ହୁଏ । ଦଶ କଥାରୁ ଦି କଥା ଲାଗିଲେ ଲାଗିଲା, ନୋହିଲେ ନାହିଁ । ଜମାରୁ ନ ଘଟିଲେ, କହିଲା ମଣିଷ ଓ ନ ରହିଲା କଥା ମନକୁ ଆସେ ନାହିଁ । ବାଏଁ ବାଏଁ ଉଡ଼ିଯାଏ । କଥାଟିଏ ଯଦି ଘଟେ, ମନ କହେ ହଁ ଫଳିଲା ତ !

ଗୋଳେଇହୁଏ ଅଭୟାଙ୍କ ମନ । ଯିଏ ଯାତକ ଦେଖିଛି, ସେ କହିଛି ନନ୍ଦିଆର ଛଅ ପୁଅରେ ସୁନାନାକୀ ଝିଅ ହେବ । କାହାରି କଥା ଏବଯାଏ ଫଳିଲା ନାହିଁ । ଦେବାଦେବୀଙ୍କର ଆଶ୍ରା ନେଇ, ଉପାସ ବ୍ରତ କରି ସୁବର୍ଣ୍ଣ ପ୍ରତିମା ବୋହୂ ନନ୍ଦିକାର କୋଳରେ ପିଲା ବକଟେ ଝୁଲିଲା ନାହିଁ । ତେବେ କଣ ନନ୍ଦିକା··· ?

ମନରେ ବି ସେଇ ଅଶୁଭ ଭୟଙ୍କର ଶବ୍ଦଟା ଆଣିହୁଏ ନାହିଁ । ଛାତି ଥରି ଉଠେ । ହଁ, କଥା ସାତ ବରଷର ବୋହୂ, ଆଜିଠୁଁ କାହିଁକି ସେ ଚିନ୍ତା ? ପନ୍ଦର ବରଷ ବାଞ୍ଝରହି ଅନୁଆ ଝରଯା ଚମାର ଦିବ୍ୟ ସୁନ୍ଦର ପୁଅ ହେଇଚି । ଅଭୟାଙ୍କ ଆଖି ଆଗରେ ଏମିତି କେତେ ମାଇପେ ଆସି ଠିଆ ହେଲେ । ସମସ୍ତେ ମା ହେଇଛନ୍ତି । ଆରେ, ନ ହେଲା ବେଳକୁ ଭୁବନେଶ୍ୱର, ହାଟକେଶ୍ୱର, ଗୁପ୍ତେଶ୍ୱର, ଚନ୍ଦ୍ରଭାଗା ଯାଇ ମାନସିକ କରିବେ ।

କିଏ କହିବ କାଲି କଅଣ ହେବ ? ପାଚିଲା ପତର ସେ, ବେଳକାଳ ସରିଆସିଲା । ମୁଣ୍ଡବାଳ ଧୋ ଧୋ ହୋଇଆସିଲା । ରହିଲାବେଳକୁ ଦେହ ଥରୁଛି, ଛାତି କଅଣ ହେଉଛି । ଏମିତି କେତେ ଲୋକ ଟଳିପଡ଼ିଛନ୍ତି । ହାକୁଟି ମାରୁ ମାରୁ ଯୁଆନ୍ ଟୋକା ବଶି ବାରିକ ଟଳିପଡ଼ିଲା । ପୁରାଣ ପଢ଼ୁ ପଢ଼ୁ ଗୋକୁଳି ଦିହାଡ଼ୀ ଢଳିପଡ଼ିଲେ । ଦେଖି ଗୁଡ଼ାଏ ବିଶ୍ୱାସ ତ ହୋଇ ନ ଥିଲା । ରାଧିମା ତେଲୁଣୀ, ରୋଗ ବଇରାଗ ନାହିଁ, ପଖାଳ କଂସାଏ ଖାଇଦେଇ ଶୋଇଛି ତ ଶୋଇଛି । ଡାକିଲେ, ବୁଢ଼ୀ ଆଉ ନ ଶୁଣେ ।

କିଏ କହିବ କାଲିକା କଥା ?

ଅଭୟା ଛଟପଟ ହେବାକୁ ଲାଗିଲେ । ମନ କହିଲା, ଆସିଥାଉ ତ ଯିବାକୁ, ଆଜି ନୋହିଲେ କାଲି । ହେଲେ, ନାତି ମୁହଁ ନ ଦେଖି ସେ ମରିବେ ?

ଅଭୟା ଡବ ଡବ କରି ଓରାକୁ ଚାହିଁ ରହିଲେ । ଭାବନା ଅଟକି ରହିଲା ।

ଝୁମୁଝୁମୁ ନୂପୁର ବାଜେଣି । ଚମ୍ପାଫୁଲଖେଇ କବରୀର ମଧୁର ମହକ । ଥରି ଥରି ଗୋଡ଼ର ଆଭାସ । ହଁ, ନନ୍ଦିକା ଆସୁଛନ୍ତି । ଅନ୍ଧାର ଘର । କେତେ ଡେରି ସେ କରନ୍ତି ।

ସବୁ ପାଇଁ ଶେଷ କରିଆସିବେ । ମାଆଙ୍କର ପାଦସେବା, ସେଇଠି ହୁଏ ଶେଷ । ସାତ ବରଷର ଘରଣୀ, ତଥାପି ଲାଜପାଣି ମୁହଁରୁ ଶୁଖିନାହିଁ ! ରାତି ଅଧ ନ ହେଲେ ଏ ଘରେ ପାଦ ପକାଇବେ ନାହିଁ ।

ଆଜି ସୁନନ୍ଦ ଅଭିମାନ କରିବ । ସେ ଛଳନା କରି ଶୋଇବ । ଘୁଙ୍ଗୁଡ଼ି ମାରିବ, କଥା କହିବ ନାହିଁ । ଆଗ ନନ୍ଦିକା କଥା କହନ୍ତୁ । ଚଉଠି ରାତିରେ ସୁନନ୍ଦ କଥା କହି କହି ଥକିଗଲା, ନନ୍ଦିକାର ତୁଣ୍ଡରୁ ପଦେ ବାଣୀ ଆଣିପାରିଲା ନାହିଁ । ମୁହଁରେ ହସ ଫୁଟାଇପାରିଲା ସିନା, ତୁଣ୍ଡରୁ ଭଙ୍ଗା ଟୁଟିଭ ପାରି ନ ଥିଲା । ଆଲୁଅଟା ବଇଶ । ସେ ଲିଭୁ । ଲିଭିଲା । ରାତି ପାହି ପାହି ଆସୁଛି । ନନ୍ଦିକା ଅବଶ୍ୟ କଥା କହିବେ । ଦେଖିବା, କେମିତି ଓଠରେ କୋଲପ ପକାଇ ରହିବେ ?

କୋଲପ ଫିଟିଲା । କଥା ବାହାରିଲା, ଆରେ—, ଛି— ।

ରହ, ଆଜି ନନ୍ଦିକାର ପାଳି । ସେ ସୁନନ୍ଦକୁ କଥା କୁହାଇବ ।

ସୁନନ୍ଦ ଘୁଙ୍ଗୁଡ଼ି ମାରିବ । ସେ କଟକରୁ ସାଇକେଲ ଚଢ଼ି ପନ୍ଦର ମାଇଲ ବାଟ ଧାଇଁଆସିଛି । ବଡ଼ ରାସ୍ତା, ଗ୍ରେଟ ରାସ୍ତା, ନଈବନ୍ଧ, ନାଳବନ୍ଧ, ଶଗଡ଼ଦଣ୍ଡା, ଗଛରିବଳର ହୁଡ଼, ଗାଁ ଗୋହିରୀ ଡେଇଁ ଧାଇଁଆସି ସେ ଥକା ହୋଇଛି । ଗୋଡ଼ରେ ବଥା । ସେ ଶୋଇବ, କଥା କହିବ ନାହିଁ । ରାତି ପାହୁ ।

ଝୁମୁଝୁମୁ ନୂପୁର ବାଜେଣି । ଚମ୍ପାଫୁଲର ମଧୁର ମନପୁଲକା ମହକ । ଧୀର ଚାଲି । କାହିଁ, ସବୁନାହିଁ ତ ! ଖୋଲିଦେହରେ କଅଁଳ ଦେହର ମନଭୁଲା, ଅମୃତ ପରଶ ଲାଗୁନାହିଁ ତ ! ଥର ଥର ନିଶ୍ୱାସର ଉଷ୍ମ ସୁଷମା ଲାଗୁନାହିଁ ଦେହରେ ।

ଫେରିଗଲେ ନନ୍ଦିକା, ଅଭିମାନିନୀ, ନା ଦୂରେଇ ବସିଲେ ?

ଅଣ୍ଡାଳିଲେ ହାତରେ ବାଜୁଛି ଟାଣ କାଠ । ଆରେ, ଏଇଟା କଅଣ ?

ସ୍ୱିଚ ।

ବିଜୁଳି ଆଲୁଅ ଝଟକି ଉଠିଲା, ଆଲୋକିତ ହେଲା କୋଠରୀ । ଆଖି ଝଲସିଲା । ସୁନନ୍ଦ ଆଖି ଖୋଲିଲା । ଅବାକ୍ ହୋଇ ସେ ମୁହୂର୍ତ୍ତେ ଚାହିଁଲା । ଟେବୁଲ ଉପରେ ଗ୍ରେଟ ଜାକ୍ ଘଣ୍ଟା ଟିକ୍ ଟିକ୍ ହୋଇ ଚାଲିଛି । ରାତି ଗୋଟାଏ । କାନ୍ଥରେ ଝୁଲା ହୋଇଥିବା କ୍ୟାଲେଣ୍ଡରର ରମଣୀ ମୂର୍ତ୍ତି ହସିଉଠୁଛି । ହିମାନୀ ସ୍ନୋର ସେ ନିଜା ବିଜ୍ଞାପନ । ନିର୍ଲଜ୍ଜ ଅଭରଣ, ଅର୍ଦ୍ଧ ନିର୍ଲଜ୍ଜ ଚାହାଣି ଓ ହସ ।

ଟେବୁଲ ଉପରେ ନନ୍ଦିକାର ଫଟୋ । ମୁହଁ ଶୁଖେଇଛି, ସତେ କି କାନ୍ଦୁଛି ।

ସୁନନ୍ଦ ବିଚଳିତ ହେଲା । ଉଠି ବସିଲା । ନନ୍ଦିକା କାନ୍ଦୁଥିବ । ଆଜି ଶନିବାର । ମୋଟେ ପନ୍ଦର ମାଇଲ ବାଟ । ହେଇଟି ପରି ଲାଗୁଛି । ସେ ଯାଇପାରି ନାହିଁ । ଉହୁଁ, ସେ ଯାଇନାହିଁ ।

କାହିଁକି ?

ସ୍ତୁଡରେ ଛନକା ପକ୍ଷିଲ୍ଲ । ନିଜ ପାଖରେ ସେ କୈଫିୟତ ଦେଇପାରିବ ନାହିଁ । ନାକରେ ଚମ୍ପା ଏସେନ୍ସର ମହକ ଏବେ ବି ଲାଖିରହିଛି, ଦେହରେ କଅଁଳ ମାଂସର ପରଶ ।

ତାଙ୍କର ନାମ ହିମାନୀ । ଏଇ କ୍ୟାଲେଣ୍ଡରର ଛବି ସଦୃଶ ତାଙ୍କର ରୂପ ଓ ବେଶ ।

ଶନିବାର !

ବର୍ଷା, ତୋଫାନ, ଘଡ଼ଘଡ଼ି । ମେଘମାନ ଦୁଲୁକି ଉଠୁଛି । ଗସ୍ଥାର ବିଲରେ ପାଣିସୁଅ । ଗଛରୁ ଡାଳ ଭାଙ୍ଗି ତଳେ ଲୋଟୁଛି । ସଞ୍ଜ ଅନ୍ଧାର ।

ପାଣି କାଦୁଅରେ ଦେହ ଜୁଡ଼ୁବୁଡ଼ୁ । ଶୀତରେ ଦେହ ଥରୁଥରୁ । ମୁହଁରେ ଖାଲି ସାହସିଆ ଗଡ଼ଜିତା ହସ ।

ନନ୍ଦିକା ଆଖିରେ ଲୁହ । ଭୟରେ ଦେହ ଥରୁଛି । ଲାଜ ସରମ ଦୂରେଇ ପାଖକୁ ସେ ଧାଇଁଆସିଛି । ନିଜ ଅଞ୍ଚଳରେ ଓଦା ଦେହ ପୋଛିଦେଇ କହୁଛି, ଏମିତିକା ଦୁର୍ଦ୍ଦିନରେ ଘରୁ କେହି ପଦାକୁ ଗୋଡ଼ ବଢ଼ାଏ ନାହିଁ ।

ପଦାରେ ଥିବା ଲୋକେ ଉନ୍ତ୍ରବୁଡ଼ି ଘରକୁ ଧାଇଁ ଆସନ୍ତି, ନୁହେଁ କି ନନ୍ଦିକା ? ପନ୍ଦର ମାଇଲ ମତେ ପନ୍ଦର କୋଶ ପରି ଲାଗିଲା ନାହିଁ ।

ଦୁର୍ଯୋଗରେ ପଡ଼ିଲା ପରି କାହିଁକି ଧାଇଁଆସିଲ ?

ତମରି ପାଇଁ ।

ମତେ ମରଣ ହେଉ ।

ରାତି ଗୋଟାଏ ।

ଘରକୁ ଯିବ ନାହିଁ ବୋଲି ସେ ଆଗରୁ ଖବର ପଠାଇନାହିଁ । ହଁ, ବେପାର ବଣିଜ କଥା, ଅତି ଆବଶ୍ୟକ ପଡ଼ିଲେ କେବେ କେବେ ଶନିବାର କି ରବିବାର ଦିନ ଗ୍ରାମକୁ ଯାଇପାରେ ନାହିଁ । ଆଗରୁ ଲୋକ ପଠାଇ ଖବର ଦିଏ, ନୋହିଲେ ଘରେ ସେମାନେ ଦକଦକ ହେବେ । ଆଜି ସେ ଖବର ପଠାଇ ନାହିଁ । ବୁଢ଼ୀ ମା ବ୍ୟସ୍ତ

ହେଉଥିବେ । ନନ୍ଦକାର ଆଖିକୁ ନିଦ ଆସୁ ନ ଥିବ । ସେ ଛଟପଟ ହେଉଥିବ । ଗୁମି ଗୁମି କାନ୍ଦୁଥିବ ।

ମନ ପଚାରୁ ଥିବ ଭାମିନୀ ସ୍ୱପନାକୁ, କଅଣ ହେଲା, କାହିଁକି ଆସିଲେ ନାହିଁ ।

କିନ୍ତୁ ସୁନନ୍ଦ କି ଏଇ ପ୍ରଶ୍ନ ଦଉଟିର ଉତ୍ତର ଦେଇପାରିବ ନାହିଁ । ସେ ସାହସ ତାର ନାହିଁ । ବେପାର ତାକୁ ଅଟକାଇ ରଖିନାହିଁ । ସେ କେତେକାଂଶରେ ସ୍ୱାଧୀନ । ପର ପାଖରେ ମୁଣ୍ଡ ବିକିନାହିଁ ।

ଅଳ୍ପ ବୟସରେ ବହୁ ଅବସ୍ଥା ଓ କେତେ ଜୀବନର ଅଭିଜ୍ଞତା ସେ ଅର୍ଜନ କରିଛି । ସେ ଗେହ୍ଲା ପୁଅ । ପିତୃବିୟୋଗ ପରେ ଗ୍ରାମ୍ୟ ଜୀବନର ଦୁଃଖ । କଲେଜ ଛାଡ଼ି ବର୍ଷଟିଏ କିରାଣୀଗିରି । ଚାରିପାଞ୍ଚ ମାସ ସ୍କୁଲ ମାଷ୍ଟରୀ । ସେଇଠୁ ବେକାର ଜୀବନ ।

ନା ବେକାର ବୋଲି କହିହେବ ନାହିଁ । ଘରର ଚଳିବା ବଳ ବଗିଚାର କାମ, ଗାଁ ମାମଲତ, ଟିକିଏ ରାଜନୀତି, ଏସବୁ ତ ପୁଣି ମଣିଷକୁ ମଣିଷ ଚିହ୍ନାଏଁ । ପୋଲା ମଣିଷକୁ ବନ୍ଧା ମଣିଷ କରେ । ଉପାୟର ଫନ୍ଦି ଦେଖାଏ । ଚାରି ପଇସା ରୋଜଗାର ବାଟ ଦେଖାଏ । ମନରେ ବଦ୍ଧମୂଳ କରେ ଧାରଣା—ଆଗେ ପଇସା, ଜଗତ ପଇସା, ଆଉ ସବୁ ମିଛ । ଧନ ଅର୍ଜିଲେ ଧର୍ମ କର, ଧର୍ମେ ପ୍ରାପତ ନରହରି ।

ଆଉ ତେବେ ଧନ ?

ସୁନନ୍ଦ ଇତିହାସରେ ସମ୍ମାନ ପାଇ କଲାରେ ବିଶ୍ୱବିଦ୍ୟାଳୟର ଓଅର ହୋଇଛି । ମୁହଁରେ କଳା ଦାଗ ବୋଲିଥିଲା, କଳାବଜାରରେ ଆଖି ପଡ଼ି ନ ଥିଲା । ଏବେ ପଡ଼ିଲା ।

ଆଉ ଧନ !

କଟକ ସହର ।

ବଡ଼ ରାସ୍ତାର ଦୁଇପାଖରେ ଶୋଭି ରହି, ଆକାଶର ମଥାନ ଛୁଆଁ କୋଠାମାଳ । ରାସ୍ତା ଉପରକୁ ଖୋଲିଥିବା ଦୋକାନମାନଙ୍କରେ ଧନକୁବେର, ଅମୃଲ ଶେଠ । କଳା ବଜାରକୁ ସେଇମାନେ ଚଳାନ୍ତି । ଧନ ଅର୍ଜିଛନ୍ତି । ଧର୍ମଶାଳା ତୋଳି, ବନ୍ୟା, ଦୁର୍ଭିକ୍ଷ, ସ୍ମୃତିମନ୍ଦିର ପାଣ୍ଠିକୁ ଭିକ ଦେଇ ଧର୍ମ ଅର୍ଜିଛନ୍ତି । ନର ଦେହରେ ଅବତୀର୍ଣ୍ଣ ହରିମାନଙ୍କୁ ସେମାନେ ପ୍ରାପତ ହୋଇଛନ୍ତି । ସେମାନେ ଶ୍ରେଷ୍ଠ, ଉଦାସୀନ, ଚଣ୍ଡିକଣ୍ଠ ଲୁହର । ସେମାନେ ସାଧୁ, ସେମାନେ ସାବଧାନ ।

ସୁନନ୍ଦକୁ ସିଧା ସଳଖ ବାଟ ଦିଶିଲା । ଏକ୍ସ୍ ପେରମେଣ୍ଟ କରିବାକୁ ଆଗ୍ରହ ହେଲା । ଭେଲା ସେ ଅବଶ୍ୟ ଭସାଇବ । ପାରି ହେଲେ ଭଲ, ଅଧ ନଈରେ ବୁଡ଼ିଲେ, ପହଁରି ପହଁରି, ଓଦା ସରସର ହୋଇ କୂଳରେ ଲାଗିବ । ପହଁରା ମଧ ଜାଣିବା ଭଲ । ଶିଖିବ ।

ମା, ମୁଁ ବେପାର କରିବି, ପର ପାଖରେ ମୁଣ୍ଡ ବିକିବି ନାହିଁ ।

ତୋର ଇଚ୍ଛା, ବାପ '

ଟଙ୍କା ?

ଅଭୟା ଗୁବମୁଠିକ ବଢ଼ାଇଦେଲ । କହିଲେ, ଦେଖ କ'ଣ ଅଛି । ଯାହା କମେଇବୁ ତୋରି ହେବ । ଯାହା ଗମେଇବୁ ତୋରି ଯିବ । ତୋ ସଙ୍ଗେ ହିଂସାବାଦ ସାଧିବାକୁ ଆଉ କେହି ନାହିଁ, ବାପ ! ଗୋଡ଼ ଚପିଚପି ଚାଲିଲେ, ଗୋଟିଏ ପାଦ ଟାଣି କରି ଆରପାଦ ଟେକିଲେ, ଖସଡ଼ା ବାଟ ପଡ଼ିଲେ ବି ଗୋଡ଼ ଖସିବ ନାହିଁ । ନେ ।

ମାଆଙ୍କର ଉପଦେଶ ସେ ମାନିଛି । ଗ୍ରୋଟ କାରବାରରୁ ସେ ଆରମ୍ଭ କଲା । ଯାହା ପାଇଲା ଲାଭ ଅଧେ ରଖି ଆର ଅଧକ ସେ ବିତରଣ କଲା । ଗଛମୂଳରେ ସେ ପାଣି ଢାଳିଛି । ଗଛ ଅଗରେ ସେ ବାନା ବାନ୍ଧିନାହିଁ । ଚିହ୍ନିବା ଲୋକେ ତାକୁ ଚିହ୍ନିଛନ୍ତି । ସେମାନଙ୍କର କଥା ତଳେ ପଡ଼େ ନାହିଁ । ସେମାନଙ୍କର ଆଜ୍ଞାକୁ ଅବଧାନ । ଆରେ, ପିଉନ ନ କଲେ କିରାଣୀ କରିବ, ସେ ନ କଲେ କରିବ ହାକମ । ସେ ମୁହଁ ଶୁଖେଇଲେ, ତା ଉପରକୁ, ମେଷ୍ଟର୍ ତା ଉପରକୁ, ଯେଉଁଠି ମୁଣ୍ଡି ମାରିଛି । ସବା ଉପରେ ତ୍ରିଶୂଳ, ସେଇଠି ଫରଫର ହୋଇ ଉଡ଼େ ପତିତପାବନ ବାନା !

ସୁନନ୍ଦ ପତିତଟିଏ କହିଲେ ଚଳେ । ଆଗେଇ ଚାଲିଛି । ପାଦ ଚପିଚପି, ଗୋଡ଼ ଟାଣି କରି । ଗ୍ରୋଟ କଣ୍ଟ୍ରୋଲ ଦୋକାନ । ବଡ଼ କଣ୍ଟ୍ରୋଲ ଦୋକାନ ।

ମାଆଙ୍କ କଥା ତାର ମନେ ଅଛି । ସେ ଚପିଚପି ପାଦ ପକାଉଛି । ମନ୍ତ୍ର ଶିଖିଲାଣି— ଦେବ, ଦିଆଇବ, ଦେ ପଦ ବୋଲାଇବ ।

ସେଥିପାଇଁ ଅବଶ୍ୟ ନେବାକୁ ପଡ଼ିବ । ନେବ ଓ ଦେବ । କେବେ କେବେ ଓଲଟା ସ୍ରୋତରେ ବେପାର ଚଳେ, ଦେବ ଓ ନେବ । ସୁନନ୍ଦକୁ ଉନଖୁଣ ମାଫ୍ । ଯେଉଁମାନଙ୍କ ତାର ଡରିବାର କଥା, ସେମାନେ ତାର ହାତମୁଠାରେ । କାହା ଘରେ ରେଡ଼ିଓ ବାଜୁଛି । କାହାର ଘରଣୀ ସପନ ନ ଦେଖିଲା ଶାଢ଼ୀ ପିନ୍ଧି ଅପ୍ସରୀ ସାଜି ସ୍ୱାମୀର ମନ କିଣୁଛି । କାହାର ଟିକି ଝିଅର ବେକରେ ହାର ।

ସମସ୍ତେ ସେମାନେ ସୁନନ୍ଦକୁ ମନେ ପକାନ୍ତି । ସେମାନେ ଆଖି ବୁଜିଲେ ସୁନନ୍ଦକୁ ଗୋଳିପାଣିର ସୁଯୋଗ ମିଳେ । ମିଳିଛି । ସେ ସୁବିଧା ହାସଲ କରିଛି । ଟଙ୍କା ଅର୍ଜନ କରିଛି । ଚାନ୍ଦା ଦେଇ ସୁପାରିସ୍ ପାଇଛି । କାମ ହାସଲ କରିଛି । ସେଇ-ମାନଙ୍କଠାରୁ, ଯେଉଁମାନେ ସେବାର ଆଦର୍ଶକୁ ଲଙ୍ଘନ କରି, ଉପରକୁ ଉଠିଲେ,

କିଛି ପାଚିଲା ଫଳ ଚୁଣ୍ଟାଇ ଖାଇଲେ, ନିମନ୍ତ୍ରଣ କରି ଆଣିଲେ ଦୂର ଦେଶର ବାଦୁଡ଼ି । ଗଛ ସେପିକି ଲୋକଙ୍କ ଭାଗ୍ୟକୁ ଖଣ୍ଡିଆ ପୋକଡ଼ା ଫଳ । ଉପରକୁ ଚାହିଁବା ହିଁ ସାର ।

ସୁନନ୍ଦର କି ଥାଏ ?

ସେ ଟଙ୍କା କମେଇଛି । ଯାହା ଆଣିଛି, ଅଧେ ଯାଇଛି ଆହୁରି ଅର୍ଜନର ଫନ୍ଦରେ । ବାକିତକ ବୁଣିଦେଇଛି ବଢ଼ିଲା କ୍ଷେତରେ । କଟକରେ ଗ୍ରେଟ ଘରଟିଏ ସେ ତୋଳି-ପାରିଛି । ପାଖକୁ ଲାଗି ଭଡ଼ା ଘର । ସେଇଠି ତାର ଗୋଦାମ ଓ ଦୋକାନ । କର୍ମୀ ରଖିଛି, ଗୁମାସ୍ତା ରଖିଛି ।

ଗାଆଁରେ ଜମି କିଣିଛି । କାଲେ କେତେବେଳେ ଡଙ୍ଗା ବୁଡ଼ିବ, ଏହି ଭୟରେ ନୂଆ ନୂଆ ଗହଣା ଆକାରରେ ଓ ସୁନା ମୋହର, ନଗଦ ଟଙ୍କା, ମାଆଙ୍କ ପାଖରେ ଥୋଇଦେଇ ନିଶ୍ଚିନ୍ତ ହୋଇଛି ।

ସୁନନ୍ଦ ହସିଥାଏ ।

ଗାଆଁ ଯାକର ଲୋକ ତାର ହାତରେ । ଗ୍ରାମର ସବୁ ଦିଗରେ ଉନ୍ନତି କରିବାକୁ ସେ ମନ ବଳାଇଛି । ଶିକ୍ଷା, ସ୍ୱାସ୍ଥ୍ୟ, ଆର୍ଥିକ ଅବସ୍ଥାର ଉନ୍ନତି । କେବଳ ଧନ ଢାଳି ଦେଲେ ହେବ ନାହିଁ, ଲୋକଙ୍କର ମନ ଏକାଠି କଲେ ହେବ । ଧୀରେ ଧୀରେ, ଅତି ସତର୍କତାରେ । ଧୀରେ । ସାତ ଦିନରେ ଗୋଟିଏ ଦିନ ରବିବାର । ସେଇଦିନ ସେ ଗ୍ରାମରେ କଟାଏ । ସବୁ କାମରେ ହାତ ଦିଏ ।

ଅତି ସାଧାସିଧା । ବଡ଼ଲୋକି ସେ ଜାଣେ ନାହିଁ । ମନରେ ଗର୍ବ କି ଅଭିମାନ ନାହିଁ । ନ ଜାଣିଲା ଲୋକେ ଭ୍ରମରେ ପଡ଼ନ୍ତି ।

ଆରେ ହେ, ସୁନନ୍ଦବାବୁ ଅଛନ୍ତି ?

କହନ୍ତୁ, ମୋର ନାମ ସୁନନ୍ଦ ।

ଏପରି ଭ୍ରମ ବହୁବାର ଘଟେ । ଏହିପରି ଗୋଟିଏ ଭ୍ରମ ଅତନୁବାବୁଙ୍କୁ ସୁନନ୍ଦର ବନ୍ଧୁ କରିଥିଲା ।

ଅତନୁ କେଉଁ ରାଜବଂଶର ଦାୟାଦ । ରାଜ୍ୟ ଗଲା ପରେ ରାଜା ଓଡ଼ିଶା ବାହାରେ ଅନ୍ୟ କେଉଁଠି ରହିଲେ । ଦ୍ୱିତୀୟ ରାଣୀ ସଞ୍ଚିତ ଧନର ସୁଧରେ ନିର୍ଭର କରି ତୀର୍ଥ-କ୍ଷେତ୍ରରେ ମାଳା ଗଡ଼ାଇ ନାମ ଜପି ଧର୍ମ ଅର୍ଜନରେ ମନ ଦେଲେ । ସେହି ବଂଶର କେହି ଜଣେ ଅତନୁ, ମନ ବଳାଇଲେ ବେପାରରେ ।

ସୁନା ଚଢ଼େଇ ବସିଆ । ଅତନୁ ଚାହିଁଲେ ସୁନନ୍ଦାକୁ ।

ମୋତେ ଛଅ ମାସର ଘନିଷ୍ଠତା ।

ଅତନୁବାବୁ ବହୁଦିନେ ଗୋଟିଏ ନୂଆ ଧରଣର ହୋଟେଲ ଖୋଲିବାକୁ ମନ ବଳାଇଥିଲେ । ସେ ଧନ ପ୍ରଧାନ ନାହିଁ, ତାଙ୍କର ଲୋଡ଼ା ପରାମର୍ଶ । ପରାମର୍ଶ ଦେବାକୁ ସୁନନ୍ଦାହିଁ ଏକମାତ୍ର ଲୋକ । ଅତନୁବାବୁ ଆସନ୍ତି, ଅଥବା କେବେ କେମିତି ଉଚ୍ଚଅମଲାର ମଟର ଗାଡ଼ିଟି ପଠାଇଦିଅନ୍ତି ସୁନନ୍ଦାକୁ ନେବାକୁ । ସୁନନ୍ଦା ନାହିଁ କରିପାରେ ନାହିଁ । ଅତନୁବାବୁଙ୍କର ଟିକିଟିକି ପିଲା ଦୁଇଟିଙ୍କୁ ସେ ଅତ୍ୟନ୍ତ ସ୍ନେହ କରେ । ସେମାନେ ନେପାଳୀ କନ୍ୟାର ପୁଅ ଝିଅ । ନେପାଳର କେଉଁ ଶ୍ରେଷ୍ଠ ଜମିଦାର ବା ଜାଗିରଦାରଙ୍କ ଦୁହିତା ଶ୍ରୀମତୀ ବନ୍ଦନା ଦେବୀ ଅତନୁଙ୍କର ପତ୍ନୀ ।

ତାଙ୍କର ବଡ଼ଭଉଣୀ ହିମାନୀ । ବଙ୍ଗ ପାକିସ୍ଥାନର କେଉଁ ଜମିଦାର ପୁତ୍ରର ସେ ପାଣି ଗ୍ରହଣ କରିଥିଲେ । ଆତ୍ମରକ୍ଷା ଓ ଇଜ୍ଜତ ରକ୍ଷା କରିବାକୁ ସେମାନେ ଭାରତ ପଳାଇ ଆସୁଥିବା ଅବସ୍ଥାରେ କଣ ଘଟିଲା ହିମାନୀ ଜାଣିଲେ ନାହିଁ । ମୂର୍ଚ୍ଛା ଭାଙ୍ଗିଲା ପରେ ସେ ନିଜକୁ ଦେଖିଲେ ଜଣେ ବିଧର୍ମୀଘରେ ବନ୍ଦିନୀ । ତାଙ୍କ ଉଦ୍ଧାର କରାଗଲା । ଯବନ ଆଶ୍ରିତାକୁ ନିଜ ଘରେ ସ୍ଥାନ ଦେବାକୁ ତାଙ୍କର ବାପ ପ୍ରସ୍ତୁତ ହୋଇପାରିଲେ ନାହିଁ, ହେଉପଛେ ସେ କୁଟୁମ୍ବର ଝିଅ, ସାନଭଉଣୀ ।

ଅଗତ୍ୟା ଭଉଣୀଘରେ ଆଶ୍ରା ।

ଦୁଇବର୍ଷ କଟିଗଲାଣି ।

ଶାଶୁ, ଶଶୁର, ସ୍ୱାମୀ, ଦେବର ଓ ଛଟୋଟି ସନ୍ତାନଙ୍କର କୌଣସି ଖବର ସେ ପାଇନାହାନ୍ତି । ହୁଏତ ଭୁଲିଗଲେଣି । ଅନ୍ୟମାନଙ୍କର ଶୁଭ କାମନା ଅଛି, ଅନନ୍ତତ ଦିନେ ଖବର ମିଳିବ । କେଜାଣି ବା ସମସ୍ତେ ଦିନେ ଆସି ପହଞ୍ଚିବେ । ଆସନ୍ତୁ ବା ନ ଆସନ୍ତୁ, ହିମାନୀ ସେମାନଙ୍କ କଥା ଭୁଲିଯିବାକୁ ଚେଷ୍ଟା କରନ୍ତି । ସେଥିପାଇଁ ବନ୍ଧୁତା ଲୋଡ଼ା, ବନ୍ଧୁ ଲୋଡ଼ା, ଯେଉଁ ବନ୍ଧୁ ଦୁଃଖର କଥା ମନେ ପକାଇବ ନାହିଁ, ସୁଖର କଥା ହିଁ ଆଗରେ ବାଢ଼ିବ । ଆଖିରେ ଲୋତକ ଆଣିବ ନାହିଁ, ଓଠରେ ଆଣିବ ମନଖୋଲିକା, ପ୍ରାଣମତାଣିଆ ହସ ।

ସେପରି ବନ୍ଧୁ ହୋଇପାରିଛି ସୁନନ୍ଦା ।

ମୋତେ ଛଅଟି ମାସର ଘନିଷ୍ଠତା ।

କାହିଁକି ଏ ପରିବର୍ତ୍ତନ ? କିପରି ସେ ଆସିଗଲା ?

ସୁନନ୍ଦ ବିଚଳିତ ହୋଇ ଭାବିବାକୁ ଲାଗିଲା । ଅତନୁବାବୁଙ୍କର ପାଞ୍ଚ ବରଷର ପୁଅ ମଳୟ ଓ ତିନି ବର୍ଷର ଝିଅ ଛବିଳା । ପିଲା ଦୁଇଟି ଦିଶନ୍ତି ଦେବଶିଶୁ ପରି । ଅବିକଳ ରୁହିନାଙ୍କର ରୂପ । ହିମାଳୟ ରାଜ୍ୟର କନ୍ୟା ସେ, ତାଙ୍କୁ ଦେଖିଲେ ପାର୍ବତୀଙ୍କ ରୂପର ଧାରଣା କରିବାକୁ ସାହସ ହୁଏ । ତାଙ୍କର ଅଙ୍ଗରୁ ଉତ୍ପନ୍ନ ମଳୟ ଓ ଛବିଳା । ଦେଖିଲେ ଖୁସି ଲାଗେ । ସ୍ନେହ କରିବାକୁ ମନ ହୁଏ ।

ପ୍ରଥମେ ସେମାନେ ଦୂରେଇ ରହୁଥିଲେ । ଧୀରେ ଧୀରେ ସଙ୍କୋଚ କମିଲା । ପିଲା ଦୁଇଟି ପାଖକୁ ଆସିଲେ । ଏବେ ସୁନନ୍ଦକୁ ଦେଖିଲେ ଆଗ ସେମାନେ ଧାଇଁ-ଆସନ୍ତି । କୋଡ଼ରେ ବସନ୍ତି, ଦାଦା ବୋଲି ଡାକି ଅଳି କରନ୍ତି । ରୁହିନା କହନ୍ତି, ହିମାନୀ ତାଙ୍କୁ ସ୍ନେହରେ ଆକୃଷ୍ଟ କରନ୍ତି, ଆରେ, ସୁନନ୍ଦବାବୁଙ୍କୁ ବସେଇ ଉଠେଇ ଦେବ ନାହିଁ କି ?

ସୁନନ୍ଦ ପ୍ରତିବାଦ କରେ ।

ପିଲା ଦୁଇଟିଙ୍କର ଯତ୍ନ ନିଅନ୍ତି ନିଜେ ହିମାନୀ ।

ଜାଣନ୍ତି ସୁନନ୍ଦବାବୁ, ମୁଁ ପିଲାଙ୍କ ଜଞ୍ଜାଳରୁ ରୁହିନାକୁ ମୁକ୍ତ କରିଦେଇଛି । ତିନୋଟି ସନ୍ତାନ ମତେ ସେ ଦେବ । ତା ପରେ ଯେତେ ଆସିବେ ସେମାନେ ହେବେ ତାଆର । ନୁହେଁ, ରୁହିନା ?

ରୁହିନାଙ୍କ ମୁହଁରେ ସରମରଙ୍ଗା ହସ ।

ତୁନି ରହିଲୁ ଯେ ? ଆଚ୍ଛା, ତମେ କହ, ଅତନୁ !

ଅତନୁଙ୍କର ସମ୍ମତିସୂଚକ ହସ ଓ ମୁଣ୍ଡହଲା ।

ହିମାନୀ କହନ୍ତି, ଦେଖନ୍ତୁ ସୁନନ୍ଦବାବୁ, ମଳୟ ଓ ଛବିଳା କାହାର ପିଲା ପରି ଦିଶନ୍ତି ? ମୋର, କି ତାର ?

ସୁନନ୍ଦ ଉତ୍ତର ଦିଏ, ଦୁଇ ଭଉଣୀ ଆପଣ ନିଶ୍ଚୟ ଯାଆଁଳା ।

ରୁହିନା ମୋଠାରୁ ପୂରା ପାଞ୍ଚବର୍ଷ ସାନ ।

ଏକା ଗ୍ରହରେ ଆପଣ ଦୁହିଁଙ୍କୁ ଷଠୀ ଗଢ଼ିଛି ।

ହିମାନୀ ଖୁସି ହୁଅନ୍ତି ।

ସୁନନ୍ଦ ସତେ କି ସେହି କୁଟୁମ୍ବର ଜଣେ । ଅସୁବିଧାକୁ ସୁବିଧା କରିବାପାଇଁ ଅତନୁଙ୍କର କେବେ କେମିତି ବ୍ୟସ୍ତଭାବ ଦେଖି ସୁନନ୍ଦ ଚେକ୍ କାଟି ଟଙ୍କା ଦେଇଛି । ଦୁଇ ହଜାର ଟପିଗଲାଣି । ଲେଖାପଢ଼ା କିଛି ହୋଇନାହିଁ । ସାହାଯ୍ୟ ନୁହେଁ, ଧାର

ନୁହେଁ, ଦାନ ବି ନୁହେଁ । ତେବେ ସେ କଣ ? ମୋଟକରେ ହିସାବ ନାହିଁ । ଭଲ ଦିନ, ପୁଣ୍ୟ ପର୍ବ, ଜନ୍ମ ତିଥିରେ ପିଲା ହଉଛି, ସେମାନଙ୍କର ଜନନୀ ଓ ତାଙ୍କର ଭଉଣୀଙ୍କୁ ଉପହାର ଦେଇ ଆସିଛି । ସେ ସବୁର ହିସାବ ନାହିଁ ।

ବିନିମୟରେ ସୁନନ୍ଦ ପାଇଛି ସ୍ନେହ, ଆଦର, ଆତିଥ୍ୟ, ବ୍ୟାକୁଳତା । ସେ ଋଣୀ ହୋଇଯାଇଛି, ପାଇଛି ଅତନୁବାବୁଙ୍କର ସୌହାର୍ଦ୍ଦ୍ୟ, ନୃହିନା ଦେବୀଙ୍କର ସମ୍ମାନ ପିଲା ହଅଟିଙ୍କର ସ୍ନେହ ଓ ହିମାନୀ ଦେବୀଙ୍କର ସହାନୁଭୂତି । ସହାନୁଭୂତିର ଅନ୍ତରାଳରେ ଯେ ତାର ମନରେ କେଉଁ ଅଜଣା କନ୍ଦରେ ଲୁଚି ଲୁଚି କ୍ରୀଡ଼ା କରୁଥିଲା ଆଉ କଅଣଟିଏ, ଜାଣି ମଧ୍ୟ ସେ ଜାଣିବାକୁ ଚାହିଁ ନ ଥିଲା ।

ସାନ୍ନିଧ । ନୀଳାସ୍ମିତ ଗନ୍ଧ । ପ୍ରଜ୍ୱଳିତ ବହ୍ନି ପରି ହସ । ଅତି ସାବଧାନତାର ଆଳରେ ଉହନଧବଳ, ପଶ୍ଚପୃଷ୍ଠ, ଆବୃତ ଦେହର ଅସାବଧାନ ଚଳନ । ଖନେଇଁ ଖନେଇଁ କୁହା ଓଡ଼ିଆ-ବଙ୍ଗଳା-ଇଂରେଜି ମିଶା ଭାଷା । ଭ୍ରୂଲତା ଟେକା ଖରଚୁଟା ଚାହାଣୀ । ସୁବାସିତ ଆଗମନ । ମୁକୁଳା ଲମ୍ବିକା, କଜ୍ଜ୍ୱଳକଳା କେଶର ଦୋହଲ ପ୍ରସ୍ଥାନ ।

ତିନୋଟି ହଜିଲା ସନ୍ତାନର ଜନନୀ ସେ, ତୋଫାନଛୁଡ଼ା ଉତ୍କ୍ଷିପ୍ତା କୁସୁମ ? କେଜାଣି ? ସନ୍ଦେହ ହୁଏ । ସେ ଗୋଟିଏ ପ୍ରହେଳିକା । ଜାଣିବାକୁ ଆଗ୍ରହ ହୁଏ ପଚାରି ହୁଏ ନାହିଁ । ଯେତିକି ସେମାନେ କହନ୍ତି, ସତ ବୋଲି ମାନିନେବାକୁ ପଡ଼େ ।

ତିନୋଟି ସନ୍ତାନର ଜନନୀ ସେ !

ସିନେମା ଫେରନ୍ତା ।

ଅତନୁବାବୁଙ୍କର କେଉଁ କାଳର ପୁରୁଣା କାର୍ । ଶବ୍ଦରେ ତିନିପୁର କମ୍ପେ । ନିଜେ ସେ ଡ୍ରାଇଭ୍ କରୁଛନ୍ତି । ସାନ ଶୋଇଲା ପିଲାଟିକୁ କୋଳରେ ଧରି, ପାଖରେ ବସିଛନ୍ତି ରୁହିନା ଦେବୀ । ପଛରେ ବସିଛନ୍ତି ହିମାନୀ, ମଳୟ ଓ ସୁନନ୍ଦ । କ୍ୟାପିଟାଲ ସିନେମାରୁ ଅତନୁବାବୁଙ୍କର ବସାଘର ମୋଟେ ତିନି ଚାରି ମିନିଟ୍‌ର ଡ୍ରାଇଭ୍ । ପିଲାଙ୍କୁ ଆଗ ଘରେ ଛାଡ଼ି ଅତନୁ ପୁଣି ସୁନନ୍ଦକୁ ଛାଡ଼ିବାକୁ ଯିବେ ।

ରାତି ସାଢ଼େ ନଅଟା ।

ହିମାନୀ ମଳୟକୁ କୋଳକୁ ନେଲେ, ଗେଲ କଲେ । ପଚାରିଲେ, ଘୁମଉଛୁ ମଳ , ନିଦ ଲାଗୁଛି ? ଏଇ ଦେଖ୍, କେତେ ଲୋକ, କେତେ ଦୋକାନ ଆଲୁଅ —

ମଳୟକୁ କଡ଼ରେ ବସାଇଲେ । ନିଃସଙ୍କୋଚରେ ଘୁଞ୍ଚିଆସିଲେ ସୁନନ୍ଦ ଆଡ଼କୁ । ଶୁଭ୍ରନବଧବଳ କୋମଳ ଦେହର ଅଯାଚିତ ନିଃସଙ୍କୋଚ ପରଶ । ଚମ୍ପକଏସେନ୍‌ସବୋଳା ମୁକୁଳା ଲମ୍ବିଆ କେଶର ମଧୁର ମହକ । ଦୋହଲା କାର୍‌ର ମୃଦୁ ଆଘାତ ।

ବାଟ ପ୍ରାୟ ସରିଆସିଲା ।

ଭଲ ଲାଗିଲା ଶୋ'ଟା ସୁନନ୍ଦ ବାବୁ ?

ଟିକିଏ ଅଶ୍ଳୀଳ ନୁହେଁ କି ?

ହୋ, ହୋ, ହୋ ! ଜୀବନରେ ଶ୍ଳୀଳ ଓ ଅଶ୍ଳୀଳ କଅଣ ଅଛି ? ଏଓଟି ଅବସ୍ଥା ମଝିରେ କଅଣ ବିଭେଦକ ?

ବସନ ?

ମୁଁ ଯଦି କହେ, ମନ ?

ଢଳିଆସିଲା ହେମାଙ୍ଗୀଙ୍କର ପ୍ରଶ୍ନପଚରା ମୁହଁଟି, ସୁନନ୍ଦର ସ୍କନ୍ଧ ଉପରକୁ । ଦେହରେ ବିସ୍ତ ହୋଇ ପଡ଼ିଲା ମହକିଲା କେଶରାଶି । ପ୍ରଶ୍ନର ଉତ୍ତର ପାଇବାକୁ ସେ ଆଗ୍ରହୀ । ବାଟ ସରିଆସିଲା । ଏଇ ସେ ମେଟ୍ର । ମଟରହର୍ଣ୍ଣ ବାଜିଲା । ଆଉ ଅଧମିନିଟର ବାଟ ।

ପ୍ରଶ୍ନର ଉତ୍ତର ସେ ଦେବ ।

ନାକ ପାଖରେ ଚମ୍ପାଫୁଲର ମହକ ।

ନନ୍ଦକାନ ସେଇ ଫୁଲରେ ସ୍ନେହ । ଝରଣା ସେପାଖେ ଧାଡ଼ିଏ ଗଜା ଗଛ । କେତା କେତା ଫୁଲ ଫୁଟେ, ମହକ ଛୁଟେ, ଧଇର୍ଯ୍ୟ ଲୁଟେ । ମହକ ମାଝିରେ ନନ୍ଦକା ପଣେ ମନରେ । ଶ୍ଳୀଳ ଓ ଅଶ୍ଳୀଳ ମଝିରେ 'ଓ'ଟି ନୁହେଁ ବସନ । ମନ, କେବଳ ମନ ।

ଆନତ ହୁଏ ଲଜ୍ଜାଭୁଲ ସମ୍ମୁଗ୍ଧ ଆନନ । ଘୋଟିଆସେ ସପନପୁରୀର ମାୟା । ସୁନନ୍ଦର ମନ ଓ କାୟା ଏକାକାର ହୁଏ ।

ସ୍କନ୍ଧ ଉପରେ କାହାର ସୁବାସିତ ମସ୍ତକ ଦୋହଲୁଛି । ବିସ୍ତ ହୋଇ ପଡ଼ୁଛି ଦୋହଲା କେଶ ।

ନଇଁଆସୁଛି ସୁନନ୍ଦର ଅଶାନ୍ତ ଓଠ, ଥରକୁ ଥର । ମନ ହିଁ କଥା କହୁଛି, ନୀରବ ସେ ଭାଷା, କେବଳ ମନ, ବସନ ନୁହେଁ ।

କାର୍ ଥମିଲା ।

ରାତି ଦୁଇଟା ।

ସୁନନ୍ଦର ମନ ଭ୍ରମିଲା । ହେମାଙ୍ଗୀ ସ୍ନୋର ନାଇଟ୍‌କ୍ଲବ ବିଜ୍ଞାପନ ନାଗମୂର୍ତ୍ତି ଉପହାସ କରୁଛି, କହୁଛି, ମୁଁ ବି ମନର କଳ୍ପନା ମହାଶୟ, ତଥାପି କିଏ କହିବ ମୁଁ ନଗ୍ନା'ବ ?

ହାତ ମାରି ମୋତେ ଅନୁଭବ କର । ଆଖି ବୁଜ । ମୁଁ ନାହିଁ । ମୁଁ ଶୂନ୍ୟ । ଆଖି ଖୋଲ । ଚିତ୍ରକରର ମୁଁ କଳ୍ପନା । ତାର ମନର ରଙ୍ଗ ଓ ଧାରଣା ମୋତେ ଜୀବନ ଦେଇଛି । କଳଙ୍କିତ କରିଛ, ଅଶ୍ଳୀଳ କରିଛ, ତମର ଆଗନ୍ତୁକଙ୍କୁ ଟାଣିଛ ମୋ'ଦେହ ଅଙ୍ଗକୁ । ଘୃଣ୍ୟ କରି ମୋତେ ଟାଙ୍ଗିଛ, ଅଲଗ୍ନ ଖାଉଛ, ଦୃଷ୍ଟବର୍ଣ୍ଣ କରିଗଲଣି ।

ସୁନନ୍ଦ ଆଖି ମଳିଲା । କେଶ ଟାଣିଲା । ମନଦୁଃଖ କଲା । ସେ ବାଟ ଭୁଲିଛି । ଅନ୍ୟାୟ କରିଛି । ତାର କର୍ମ ନନ୍ଦକାର ଅଙ୍କିକୁ ଦର୍ଶିବ ନାହିଁ । ସ୍ୱାମୀ ତାର କୃତଘ୍ନ ଏହା ସେ ସ୍ୱପ୍ନରେ ସୁଦ୍ଧା ଭାବିପାରିବ ନାହିଁ ।

ଆଜି ସେ ମନଦୁଃଖ କରିଥିବ, ଆଖିରୁ ଝରୁଥିବ ଲୋତକ । ନିଜକୁ ନିଜେ ପଚାରୁଥିବ, ଆସିଲେ ନାହିଁ ? ଖବର ପଠାଇଲେ ନାହିଁ ? କାହିଁକି ? ଦେହପା ଭଲ ଅଛି ତ ?

ସୁନନ୍ଦ ଟେବୁଲ ଉପରୁ ନନ୍ଦକାର ଫଟୋଟି ଉଠାଇ ଧରିଲା ।

କେଉଁ ଗୁଣରେ କିଏ ତମଠାରୁ ସୁନ୍ଦର ? ଏମାନେ ସଂସ୍କୃତିକୁ ଜଳାଞ୍ଜଳି ଦେଇଛନ୍ତି, ସଭ୍ୟତାର ନୂଆ ଅର୍ଥ ପ୍ରକାଶ କରୁଛନ୍ତି । ନାରୀ ଦେହରେ ନଗ୍ନତା ଘୋଡ଼େଇବାକୁ ଏମାନେ ବସନ ବ୍ୟବହାର କରନ୍ତି ନାହିଁ । ନଗ୍ନତାକୁ ପରିସ୍ଫୁଟ କରି ଆଦିମାନବ ଯୁଗକୁ ମନକୁ ଓଟାରିନେବାକୁ ଚାହାନ୍ତି । ଆଜି ତାହା ହିଁ ହୋଇଛି । ମୋତେ କ୍ଷମାକର ନନ୍ଦକା, ମୁଁ ପଥରଯୁଗକୁ ଓହ୍ଲାଇଯାଇଥିଲି ।

ସୁନନ୍ଦ ଛପଟେ ନନ୍ଦକାର ଫଟୋ । ଆଖିରେ ଛଳ ଛଳ ଲୋତକ ।

ତୁମେ ସ୍ୱର୍ଣ୍ଣଯୁଗର ଦେବୀ, ଯେଉଁ ଯୁଗରେ ପତ୍ନୀ ଆସି ଆଗରେ ଉଭାହୁଏ ଜନନୀ ପରି, ସ୍ନେହ କରେ, ଆକଟ କରେ, ଭଲମନ୍ଦ ବତାଇଦିଏ । ଭଗିନୀ ପରି କ୍ରୀଡ଼ା କରେ, କଳିଆ କରେ, ଅଭିମାନ କରେ । କନ୍ୟା ପରି ଅଳି କରେ, ଆଦର ଲୋଡ଼େ ।

ତୁମେ ବନ୍ଧୁ । ତୁମେ ପ୍ରିୟା । ମୁଁ ଅନୁତପ୍ତ !

ସୁନନ୍ଦର ମନ ଲୋଡ଼ିଲା, ସେ ନିଜ ଆଗରେ ନିଜେ କୈଫିୟତ୍ ଦେବ । ଅତନୁବାବୁଙ୍କର ଘର ସଙ୍ଗେ ଛଅ ମାସର ଘନିଷ୍ଠତା । ସେଥିପାଇଁ ସେ ତଣ୍ଡ ଦେଇଛି । ଉତ୍ସର୍ଗ କରିଛି । କାହିଁକି ? କିଏ ତାକୁ ଟାଣିନିଏ ?

ହିମାନୀ ନୁଦେଁ, ମଳୟ ଓ ଛବିଳା । ଟିକିଟିକି ମଣିଷ ଚଉଟି । ସୁନନ୍ଦକୁ ଦେଖିଲେ ଖୁସି ହୁଅନ୍ତି ସେମାନେ । ସେମାନଙ୍କର ହସଖୁସି, ଆନନ୍ଦ, ଅଳି, ଅଝଟପଣିଆ, ହୁମଦୁମ୍ ଦେଖିବାକୁ ସୁନନ୍ଦ ଧାଇଁଯାଏ ।

ଆଉ ସେ ଯିବ ନାହିଁ । ପରପିଲାଙ୍କୁ ଆପଣାର କଲେ ବି ସେମାନେ ଆପଣାର ହେବେ ନାହିଁ । ଡହଳ ବିକଳ ହିଁ ସାର । ତା'ଆର ସାଥିରେ ମନର ବଦଳଭାବ ଓ ଯାବତୀୟ ଜଟିଳତା । ଦୁର୍ବଳତାକୁ ସେ ପ୍ରଶ୍ରୟ ଦେବ ନାହିଁ ।

ନନ୍ଦିକାର ଫଟୋକୁ ଉଠାଇ ନିରେଖି ଚାହିଁଲି । ସେ ହସୁନାହିଁ, କାନ୍ଦୁନାହିଁ, ସରମରେ ସଙ୍କୁଚିତ ହୋଇଛି । ନନ୍ଦିକା ଅବଶ୍ୟ ଜନନୀ ହେବ । ଆଉ ସେ ଗନ୍ତବ ମଲୟ, ସେଇଠୁ ଛବଳା, ସେଇଠୁ—

କନକକୁ ଚାଳିଶି ଡେଇଁଲଣି । ରୂପ ଅସୁନ୍ଦର, ହେଲେ ଗୁଣ ସୁନ୍ଦର । ଜହ୍ନି ମଞ୍ଜି ପରି କଳା ମିଚ ମିଚ ରଙ୍ଗ, ସବତ କ ଅପ୍‌ଅପ୍ ହୋଇ କଳାପାଣି ନିଗିଡ଼ି ପଡ଼ିବ । ଗୋଟିଏ ଆଖି ଟେରା । ଚାପିଦେଲା ପରି ନାକ । ଗୁମୁଦାନ୍ତ ଦିଓଟି ଅଧେ ଅଧେ ପଦାକୁ ଦିଶେ ବୋଲି ଉପର ଓଠକୁ ଟାଣି ତଳ ଓଠରେ ଲଗାଇବାକୁ ସବୁବେଳେ ସେ ଚେଷ୍ଟା କରେ । ଦେହଟି ମୋଟାସୋଟା ହେଲେ ବି ଗାଲ ଦୁଇଟି ପଟା । ଉଚ୍ଚ କପାଳ ମଝିରେ ଟିପ ଆକାରର ସିନ୍ଦୂରବିନ୍ଦୁ ଶୋଭାପାଏ ।

କନକ କୁଆଡ଼େ ଅସୁନ୍ଦର । ପିଲାଦିନୁ ସମସ୍ତେ ସେ କଥା କହନ୍ତି । କନକର ପରତେ ହୁଏ ନାହିଁ । ଯେଉଁଦିନ ସେ ବାଡ଼ିଅପାଣି ଗାଧୋଇଥିଲା ସେ ଭଲକରି ବୁଝିପାରିଲା· ସେ ଅସୁନ୍ଦର ନୁହେଁ । ଯେଉଁଦିନ ପୁଣି ଜାଣିଲା, ତାର ହାତଧରିଲା ବର ତାକୁ ପରିତ୍ୟାଗ କରିଛନ୍ତି, ସେଇଦିନ ସେ ସତ କଥାଟି ବୁଝିପାରିଲା । ଦୁନିଆରେ ତାର କଣ ଅଛି ସମ୍ବଳ, କଅଣ ବା ଅଛି ସ୍ୱାର୍ଥ ?

କପାଳର ଏଇ ସିନ୍ଦୂରଟୋପାଟି, ହାତର ରୂପା କାଚ ଦି ଦି ପଟି । ଯାହା ପାଇଁ ସେ ଏତକର ଯତ୍ନ ନେଇଛି, ସେ ସୁଖରେ ରହୁ, ଆନନ୍ଦରେ ଥାଉ । ତାର ଭଲ ଖବର କାନରେ ପଡ଼ୁ । ଏତିକି । ଯାହାଙ୍କ ଘରେ ଆଶ୍ରା ପାଇ ସେ ଅଇଆନ ହୋଇଛି । ବର୍ଷ ପରେ ବର୍ଷ କଟାଇ ଦେଇଛି, ସେମାନେ ଭଲରେ ରହନ୍ତୁ । ଅଧିକରୁ ଅଧିକ ହେଉ । ଏ ଘରର ସେ କିଛି ନୁହେଁ, ପୁଣି ଏ ଘରର ସେ ସବୁ, ଝିଅ, ଘରଣୀ, ଚାକର ।

ସବୁ ଚାଲିଛି ଭଲରେ । ଧନଧାନ୍ୟ ପୂରିଉଠିଛି । ଘର ହସୁଛି । ହସ ଭିତରେ କେଉଁଠି ଛପି ରହିଛି ବିଷାଦ । ଭାଉଜର କୋଳରେ ପିଲା ଟିକଟେ ନାହିଁ । ସେ ନ କହିଥିଲେ ନନ୍ଦିକା ଏଘରର ବୋହୂ ହୋଇ ଆସି ନଥାନ୍ତା । ସାତ ପୁରି ଆଠ ବରଷ ଚାଲିଲା । କେହି ନ ଜାଣନ୍ତୁ, ସେ ଜାଣେ ସୁନନ୍ଦଭାଇ ବାହାଗଣ୍ଠିରୁ ଆଜଯାଏ ନନ୍ଦିକାକୁ କେତେ ଭଲ ପାଏ । ଯେଉଁ ନନ୍ଦିକାକୁ ସଜେଇ ସାଜେଇ ଅଧରାତିରେ ନେଇ ଶୋଇଲା ଘରେ ଛାଡ଼େ, ସେଇଆକୁ ପୁଣି ସଢ ନ ପାହୁଣୁ ନିଜ ହାତରେ ଘଷିମାଜି ଗାଧୋଇ ଦେଇ, ଠାକୁର ଘରେ ଛାଡ଼େ ।

ଏତେ ସେବା ତାର ବ୍ୟର୍ଥ ହୋଇଛି ।

ବୁଢ଼ୀ ଏବେ ମୁହଁ ଖୋଲି ମନର ଜଳିଲା ଦୁଃଖ ପଦାକୁ କାଢ଼ିଲେଣି, ତୋ'ର ପାଇଁ ଲୋ ସବାଖାଇ !

ତୁମ ହୁ ମାଉସୀ, ଖାଉଚ ଏଣେ ଆଉଚ ।

ଅସରନ୍ତି ଲୋ ! କଥାରେ କହନ୍ତି, ବାଞ୍ଝ ମାଇପିର ମୁହଁ ଦେଖିଲେ ଝାଡ଼ା ଗଡ଼ ନାହିଁ, ହେଉନ୍ତୁ ପଛକେ ସେ ବୋହୂ ।

ତମ ଗୋଡ଼ ଧରୁଚ, ତୁମ ହୁ ।

ଗୋଇଠା ମାଡ଼ ସେ ଖାଉ ପଛେ, ବୁଢ଼ୀଙ୍କର ତୁଣ୍ଡ ବନ୍ଦ କରେ । ଧନସ୍ତ୍ରୀ ସ୍ତବେ । ଦେବାଦେବୀଙ୍କୁ ଡାକେ । ତାର ଆଉ କି ଦୃଷ୍ଟି ଅଛି ? ନନ୍ଦକା କି ସୁନନ୍ଦର ବେଲ ବୟସ ଗଡ଼ି ଯାଇ ନାହିଁ । ବୁଢ଼ୀ ଖାଲି ହମ ହମ ହେଲେ ହେବ ? କାହାର ହାତର କଥା ହେଇଚ ? ତାଙ୍କର ମରଣକାଳ ପାଖେଇ ଆଇଲା କି କଅଣ, ନୋହିଲେ ନନ୍ଦକା ପର ବୋହୂ ଉପରେ ଏତେ ଚଢ଼ ଚଢ଼ ହୁଅନ୍ତେ ?

ସୁନନ୍ଦ କାହିଁକି ସବୁ ଶନିବାରେ ଘରକୁ ଆସୁନାହିଁ ? ଚିଠାଉ ଲେଖି ପଠାଉଛି ଯେ ଭିଡ଼କାମ, ବ୍ୟବସାୟ ବଢ଼ାଉଚ । ସେଥିପାଇଁ ବୁଢ଼ୀ ଅଧିକ ଚଢ଼ୁଛି ନନ୍ଦକା ଉପରେ । ବ୍ୟବସାୟ ବଢ଼ାଇବା ଯେପରି ନନ୍ଦକାର ଦୋଷ । କେଉଁ ସିଅରେ କେଉଁଠିକି ପାଣି ଗଡ଼ି ଯାଉଛି, ବୁଝିବା କାହାର ବୁଦ୍ଧିର ଅଗମ୍ୟ ।

କିଏ ବା ଏମିତିକା କୋହଲି ପାଟରେ ? ଧନ ଧପଦ୍ୱରେ ଟିକିଏ ଶୁଆଇ ଦେବ ନାହିଁ ? ରହ, କାହିଁକି କବାଟ ବାଡ଼ାଉଚ ? ବାର୍ ସହୁନାହିଁ ?

କନ୍ଦ କବାଟ ଖୋଲିଲା ।

ଦାଣ୍ଡଘର ଭିତରକୁ ପଶିଆସିଲେ ସୁମିତ୍ରା । ସଙ୍ଗରେ ଦିଓଟି ପିଲା । କୋଳ ପିଲାଟି ଛାତିରେ । ତା ଉପରେ ତିନି ବର୍ଷର ପିଲା, ବାଙ୍କୁଲି ପରି ପଛରେ ଗୋଡ଼ାଇଚି । ଆସିଚନ୍ତି ସିନା । ଏଇ ଦିଓଟି, ସେଥିକିରେ ସରିଲାନାହିଁ । ତା ଉପରେ ଆଉ ତିନୋଟି । ସ୍କୁଲକୁ ଯାଇଥିବେ ।

ଧନ୍ୟ ଏ ସୁମିତ୍ରା ! ସୁନା ଖଡ଼ିକା ପରି ଧଡ଼ିଆ ଧେଡ଼ଙ୍ଗ ମାଇପିଟିଏ । ରୂପ, ହାଡ଼ ଗୁଣ୍ଡଖଣ୍ଡି । ଫୁଙ୍କିଦେଲେ ଟଳିପଡ଼ିବ । ପାଞ୍ଚ ପୁଅର ମା ! ପିଲା ଥିଲି ତଳେ ଶୋଇ କୁଆଁ ରାବ ଛାଡ଼ିଲେ ଘରଲୋକେ ଜାଣିବେ, ସଞ୍ଜୀବର କଅଣଟିଏ ହେଲାଣି ।

କଅଣଟିଏ ଆଉ ?

ସେଇ କାଠଫଳରୁ ଗୋଟାଏ ତ, ପୁଅ ମ !

ରାଜୀବଲୋଚନ ସୁନନ୍ଦର ଧାଡ଼ପୁଅ ଝିଅ ।

ବୟସଘରେ ସାନ । ଗାଆଁ ସ୍କୁଲରୁ ମାଇନର ପାସ କରି ଘରେ ବସିଥିଲେ । ଅଳସ ବେଳ କଟିବ କେମିତି ? ନାଳ ପୋଖରୀରେ ମାଛ ଧରା, ତାଆସ ଖେଳା, ପରବାଡ଼ିରୁ କଦଳୀ କାନ୍ଧି ଚୋରି, ଭଲ ମଣିଷଙ୍କୁ ମିଛ କଥା ବାଟରୁ ନେଇ ଅବାଟରେ ଛାଡ଼ିବା, ଏଇ ସବୁ ତ କାମ ! ବାପ ବଡ଼ବାପ ଭିନେ ହେଲା ପରେ ଅଭାବ ଗୃହଆଡ଼ୁ ମାଡ଼ିଆସିଲା, ଅବସ୍ଥା ହେଲା ବାରଣ୍ଡା ଦ କଣ୍ଡା, ଯାହା କହନ୍ତି ଠକ୍ ଠକ୍ ମଦନ ଗୋପାଳ । ବୁଝିବାର ବୟସ ହେଲାରୁ ପିଲାର ମନ ଘର ଧରିଲା ।

ରାଜୀବ ବଦଳିଲା ।

ସବୁ କାମ ମେ ହାତରେ କଲା । ଲୋକେ ଆବା କାବା ହେଲେ । ରାଜୀବ ଏମିତି ବଦଳିଲା କପରି ? ବାପା ମା'ଙ୍କ କଥା ନଆସୁ, ବଡ଼ମା ଓ ସୁନନ୍ଦଭାଇଙ୍କର କଥା ସେ ତଳେ ପକାଏ ନାହିଁ । ଅତି ଅନୁଗତ । ସେମାନଙ୍କର ବୋଲହାକ କରେ । ସାହାଯ୍ୟ ଦିଏ । ସାହାଯ୍ୟ ପାଏ । ଅଳ୍ପ ବୟସରେ ବାପ ମା ତାକୁ ସୁମିତ୍ରାର ହାତ ଧରାଇଦେଲେ, ବୋହୂଟିଏ ଆସିଲେ ଘର ସମ୍ଭାଳିବ ।

ଦିନ ଭଉଣୀଙ୍କ ବାହା ନମିତ୍ୟକୁ ଭିନେ ହେଲା ସମ୍ପତ୍ତି ପ୍ରାୟ ସରିଆସିଥିଲା; ଯେତେକ ଥିଲା, ସେତକ ଗଲା ବାପ ମା'ଙ୍କ ଶ୍ରାର୍ଦ୍ଧରେ । ସ୍ତ୍ରୀ ପିଲା ଚଳନ୍ତେ କେମିତି ?

ଚଳେଇନେଲା ସୁନନ୍ଦ । ଏବେ ସେ ସୁନନ୍ଦର ଡାହାଣ ହାତ । ଅତି ବିଶ୍ୱାସୀ । ସୁନନ୍ଦ ବାହାର କାମରେ ଧୁରନ୍ଧର, ଅସଲ ବେଉସା ଚଳେଇବା ଲୋକ ରାଜୀବଲୋଚନ । ଭାଇ ହାତ ଟେକ ନ ଦେଲେ ସୁନାମୁଣ୍ଡା ହେଲେ ବି ରାଜୀବ ନଛୁଏଁ । ହିସାବରେ ଚଢ଼ାଇବ, କାରବାରରେ ଲଗାଇବ ।

ଅଭିଭାବକଙ୍କର ସେ ବିଶ୍ୱାସୀ, ନିର୍ଭରକାରୀ ବି ।

କଟକର ବ୍ୟବସାୟ ଛାଡ଼ି ଘଣ୍ଟାଏ ପାଇଁ ଗାଁକୁ ମେ ଆସିବାକୁ ଅମଙ୍ଗ । ଘରର ଖବର ଅନ୍ତର ବୁଝିବାକୁ କମ୍ବା ଚିଠି ଓ ଟଙ୍କା ମାଆଙ୍କୁ ଦେବାକୁ ସୁନନ୍ଦ ତାକୁ ବେଳେ ବେଳେ ବରକ୍ତ ହୋଇ ତଡ଼ିକରି ଘରକୁ ପଠାଏ ।

ଭାଇଙ୍କର ବରକ୍ତର ଫଳ ସୁମିତ୍ରାର ପାଞ୍ଚଟି ସନ୍ତାନ । ଏ ଦୁଃଖ କାହାକୁ ନ କହିଲେ ବି ମଝିଙ୍କ ଆଖିକି ଜଳଜଳ ହୋଇ ଦିଶୁଛି ।

ସୁମିତ୍ରାର ପେଟରେ କଥା ରହେ ନାହିଁ । ତାକୁ ଭଲକରି ନ ଜାଣିବା ଲୋକେ ନାକ୍ଟି ବୋଲି ମନେ କରନ୍ତି; କିନ୍ତୁ ସେ ନାକ୍ଟି ନୁହେଁ । ଯାହା ଦେଖିଥାଏ, କି ଶୁଣିଥାଏ, ଅବା ଅଙ୍ଗେ ନିଭାଇଥାଏ, କହୁ କହୁ ସେ ଅନ୍ୟ ଆଗରେ ଖୋଲିଦିଏ । କହିଲା କଥାର ଫଳାଫଳ କ'ଣ ହେବ, ସେ ବିଷୟ ସେ ଭାବିବାକୁ ପାରେ ନାହିଁ ।

ଘରଘରେ କଳିଆ ଲାଗିଲେ କଳେ ସେ ଅଧ ବ୍ୟସ୍ତ ହୁଏ, କାହିଁକି ମୁଁ କଥାଁ ଲାଗି ତା ଆଗରେ କହୁଛନ୍ତି ? ଆଉକ ଯେ ମିଛ କହୁଥିଲା, ଏହା ମୋତେ କେହି କହୁନାହିଁ ! ମିଛ କଥାର ପ୍ରଭାବ ସେ ପାଉଛୁ । ହେଲେ, ମୁଁ ତାଙ୍କିକ କହୁ ମଲିଛି ?

ସୁମିତ୍ରା କାନ ମୋଡ଼ି ଗୁପୁଡ଼ା ମାଗଛୁଏ ।

ଗାଁ ମାଇପେ ଘାଟମେଲ ହୋଇ ଖୁସି ଅନନ୍ଦରେ ପରଘର ଘଟଣା ଚର୍ଚ୍ଚା କଲାବେଳେ ଅକସ୍ମାତ୍ ସୁମିତ୍ରାର ଆବିର୍ଭାବ ହେଲେ କାହିଲା ଲୋକର ଭୁଣ୍ଡ ଖଣ୍ଡ ବାଜେ । ସେ ତୁନି ହୁଏ । ମାଇପି ସ୍ୱଭାବ, ପାଞ୍ଚ ଦେଖିଲେ କଥା କହୁସରେ ସେ ଅଜାଣତରେ ପଚଣ ବଖାଣେ । ସୁମିତ୍ରାର କାନରେ ପଡ଼ିଲେ, ପଥରରେ ଗାର ଖୋଦିଲା ପରି ସେ ରହିବ, ଯେବେ ହେଲେ ସେ ବାହାରିବ । ସବୁଠୁଁ ଭଲ ତୁନି ରହିବା ।

ରାଜୀବଲୋଚନ ମନଖୁସିରେ ଘରଣୀଙ୍କ ଆଗରେ ଦୁନିଆର ଭଲମନ୍ଦ ଘରକଥା କହିବାକୁ ପଛାନ୍ତି । ଦୁଃଖସୁଖ ହେଲେ ଘରର ହାନିଲାଭ, ପିଲାଙ୍କ ପାଠ, ଜମିର ଭାଗ, ଗାଈ ବଳଦଙ୍କ ଚନ୍ଦ୍ର କଥା ପଡ଼େ ।

ସ୍ତ୍ରୀକୁ ସେ ପର ବୋଲି ମଣନ୍ତି ନାହିଁ, ତେବେ ଆଉ ସାତଟା ମାଇପିଙ୍କ ସାଙ୍ଗେ ଜଣେ ବୋଲି ଗଣନ୍ତି ନାହିଁ । ମୂର୍ଖ, କଳିହୁଡ଼ିଆ, ସରଳବିଶ୍ୱାସୀ ବୋଲି ଜାଣନ୍ତି । ତେବେ, ବେଳେବେଳେ ଯେ ଭୁଣ୍ଡରୁ ମନଖୁସିଆ ଗପ ଖସି ନ ପଡ଼େ ତାହା ନୁହେଁ, କହିସାର ଅନୁତାପ ଆସେ, ଆରେ, କହିଦେଲି ?

ରାଜୀବଲୋଚନ ଘରକୁ ଆସିଥିଲେ, ଦିନଟିଏ ରହି ଫେରିଲେ ।

ଶୁଣିଲଣି ଗୋ କହ, ସାଆନ୍ତଙ୍କର ଏ କି ଢଙ୍ଗ ବା ?

କହଣ କି ଭାଉଜ ?

ଯେ ପରି କହୁଥିଲେ, କେଉଁ ରଜାଘର କୁଅଁର ଯେ, ତାଙ୍କର ଶଙ୍ଖ କଣ୍ଢେଇ ପରି ଟିକିଟିକି ପୁଅ ଝିଅ ଦିଓଟି, ସାଆନ୍ତେ ତାଙ୍କୁ କଳତ ପୁଅଝିଅ ପରି ସ୍ନେହ କରୁଛନ୍ତି ।

ଭଲ ସୁନ୍ଦରିଆ ପିଲା ଦେଖିଲେ ସମସ୍ତଙ୍କର ସ୍ନେହ ଶ୍ରଦ୍ଧା କରିବାକୁ ମନ ହୁଏ ଭାଉଜ, ଦେଖୁନ, ତୁମ ପିଲାଙ୍କୁ ଆମ ନୂଆବୋହୂ କେମିତି ସୁଖ ପାଆନ୍ତି ?

ତା ବୋଲି କଅଣ ପିଲାଙ୍କର ମା ମାଉସୀଙ୍କୁ ସୁଖ ପାଇବ ? କାମ ଧାମରେ ମନ ନ ଦେଇ ପିଲା ବୁଢ଼ିଙ୍କ ମାଉସୀ, ଝୋଙ୍କାଝାଏ ମ, ମେଏମ୍ ପରିକା, ତାଙ୍କ ସଙ୍ଗେ, ବେଳ ନାହିଁ, ଅବେଳ ନାହିଁ, ବୁଲି ବାହାରିବ ?

ଜନ ଜାବା ହୋଇ ସୁମିତ୍ରାର ମୁହଁକୁ ଚାହିଁରହିଲା । ସୁମିତ୍ରା କଅଣ ସଜ ମାଛରେ ପୋକ ପକାଉଛୁ ?

ସେ ପସ୍ତ କହୁଥିଲେ !

ନନ୍ଦଭାଇ ତୁମ ଦେଢ଼ଶୁର, ନା ଦିଅର ଗୋ ?

ବୟସ ଗଣିଲେ ଦେଢ଼ଶୁର । ମୋର ସାତ ପଛରେ ନନ୍ଦଅପା ଆଇଚନ୍ତି । ଏବେ ବି ସେ ମୋ ଆଖିରେ ପିଲା । ପାଞ୍ଚ ପିଲାର ମା ମୁଁ । ସେହି ହିସାବ ଧରିଲେ ସାଆନ୍ତେ ମୋ:ଓର ଦିଅରଠୁଁ ସାନ । ତାଙ୍କର ପିଲାପଣିଆ ଯାଇନାହିଁ । କଟକ ସହର, ଡାଆଣୀ ମାଲ ମାଲ, ନନ୍ଦଅପା କଟକ ଯାଉଛନ୍ତି ।

କି କଥା ତୁମେ କହୁଛ ?

ସତ କଥା କହୁଛି, ଭଲ କଥା କହୁଛି । ଆଲୋ ହେ, ବର ମୁହଁ ତ ଦେଖିନ, କୋଳରେ ପିଲା ବକଟେ ଖେଳେଇନ, ପୁରୁଷ ସ୍ୱଭାବ କେମିତି ଜାଣିବ ? ତିନି ବରଷ, ପାଞ୍ଚ ବରଷ ଅତି ଭଲ ମଣିଷ ହେଲେ ସାତ ବରଷ । ସେଉଠୁ ? ଚମ ଚହଟ ମିଣିପଙ୍କୁ ବାନ୍ଧି ରଖିପାରେ ନାହିଁ । ଦେହଦଶା ହେଲେ ଘରର ଘରଣୀ ନଢ଼ପିନ୍ଧା ଲୁଗା ଜାମା ପରି ହେଇଯାଏ ଲୋ ! ହଁ, ପିଲାଛୁଆ କୋଳକୁ ଆଇଲେ ନଆସ !

ପସ୍ତରଲା ଆଖିରେ ଜନ ଅନେଇଲା ।

ବୁଝିପାରିବ ନାହିଁ ତୁମେ, ଜନ ! ଟିକି ପିଲାଟିର ଲୋଭ, ତାର ଖେଳ କୌତୁକ, ହସ, ଦରୋଟି କଥା, ରୋଗ ବାଇରାଗ, ସବୁ ମିଶି ଦେପରୁଆ ମଣିଷକୁ ଖୁଣ୍ଟରେ ବାନ୍ଧେ । ଘରର ଘରଣୀ, ହେଉ ପଛେ ସେ ନଢ଼ପିନ୍ଧା ପୁରୁଣା ଲୁଗା ଜାମା, ସେଇଥିରେ ଏ ମିଣିପେ ବାନ୍ଧିହୋଇ ରହନ୍ତି । ପଥୁରିଆ କି ବାଲିଆ ଜମିରେ ଫଳ ନ ଫଳିଲେ ଚଷାପୁଅ ଉର୍ବର ଜମିକୁ ଚାହେଁ । ପାଇବାକୁ ମନ କରେ, ଚେଷ୍ଟା କରେ । ଯେଉଁ ଚଷାର ଜମି ସରସ, ସେ କଅଣ ଗୋଟିଏ ଫସଲ ଫଳେଇ ତୃପ୍ତିହେଇ ବସେ କି ?

ଜନ ତୁନି ହେଇ ଖାଲି ଶୁଣିଲା ।

ସାଆନ୍ତେ କଟକରେ କେଉଁ ଧନୀ ଝିଅଟିକୁ ଶ୍ରଦ୍ଧା କରୁଛନ୍ତି । ତାଆଁକୁ ଆସିବାକୁ ବି ବେଳ ମିଳୁନାହିଁ । ସେଇକଥା ସେ ମତେ କହୁଥିଲେ । ନନ୍ଦଅପାଙ୍କୁ ମୁଁ ସେଇଆ କହିବାକୁ ଆସିଚ । ଡାହା କଥାରୁ ତାଙ୍କୁ କଅଣ ମିଳିବ ? ସେ କଟକ ଯାଉଛନ୍ତି । ହଁ, କହିଦେଉଛି, ହାତରୁ ଖସିଲେ ଅଣବାହୁଡ଼ା ଟି ! ମିଣିପଙ୍କର ସେମିତି ଖୋଇ ।

ଜନ ଆଖିରୁ ଲୁହ ଝରିଆସିଲା ।

କାନ୍ଦୁଛ ଯେ ?

ନନ୍ଦଆ ଭାଇ ?

ହଁ, ସେ କହୁଥିଲେ ।

ଯାଉନ !

କହୁନୁ, କାନ୍ଦୁଛ କାହିଁକି ?

ତୁମ ଗୋଡ଼ ଧରୁଛି, ତୁନି ରହ । ନୂଆବୋହୂକୁ ଏସବୁ କଥା କହିବ ନାହିଁ । ତୁମକୁ ରାଣ ଅଛି । ଆଉ କାହାକୁ ବି ଏସବୁ କଥା କହିବ ନାହିଁ । ତୁମେ ଭଲ ବିଚାର କହୁଚ, ଫଳ ମନ୍ଦ ହେବ । ନୂଆବୋହୂ ଶୁଣିଲେ ନିଶ୍ଚେ ସେ ଜୀବନ ହାରିଦେବ ।

ଏଁ, କଅଣ କହୁଛ ?

ସତ କହୁଛି । ମତେ କହିଲ ଭଲ କଲ । ତୁମର ବିଚାର ଯେ ଠିକ୍ । ସେତିକି ଯେମିତି ହୁଏ, ସେଥିର ଚେରେଷ୍ଟା ମୁଁ କରିବି । ତୁନି ରହ, ହେଇଟି, ସେ ଉଠିଲେଣି କି କଣ, କବାଟ ଖୋଲିବାର ଶବଦ ହେଲା । ଯିବଟି ଏଠୁଁ ।

ମାଡ଼ ମାରିଲା ପରି ସୁମିତ୍ରା ପିଲାଟିଏ କାଖରେ ଧରି, ଆଉପିଲାଟିର ହାତ ଧରି ଟାଣି ଘୋଷାରି ସେଠାରୁ ଚାଲିଗଲେ । ଛାତି ଦାଉଁ ଦାଉଁ ପଡ଼ୁଛି । ସତେ, ନଢ଼ାଅପା ଶୁଣିଲେ ଜୀବନ ହାରିଦେବେ ? ଜଣ ଜଣ କରି ଏକଥା ଯେ କେତେ ମାଇପିଙ୍କୁ କହି-ସାରିଛି । କି ବୁଦ୍ଧି ସେ କରିବ ? ଯିବ ସେମାନଙ୍କ ପାଖକୁ ? ଜଣ ଜଣ କରି ସେମାନଙ୍କ ହାତଗୋଡ଼ ଧରି, ନେହୁରା ହୋଇ ମନା କରିଦେଇ ଆସିବ, ତମ ବାପ-ଭାଇଙ୍କ ରାଣ, ଆଉ କାହାକୁ କହିବ ନାହିଁ ।

କି ବୁଦ୍ଧି ସେ କରିବ ସୁମିତ୍ରା ?

କାଠ କି ପାଷାଣ ପ୍ରତିମା ପରି ଅଭସ୍ଥା ପାଲୁଣୀର କଥା ଶୁଣିଲେ ।

ଭଣ୍ଡାରୁଣୀଟା, ଗାଆଁର ଘର ଘର ବୁଲି ଗାଆଁ ମାଇପିଙ୍କ ନଖ ଫିଟାଏ । ଗୋଡ଼ରେ ଅଳତା ମଣ୍ଡେ । ସମସ୍ତଙ୍କ ପେଟର କଥା ଶୁଣେ । ନିଜର ପେଟରେ ସାଇତି ରଖେ । ବୋହୂଦିନରୁ ପାଲୁଣୀକୁ ସେ ଦେଖିଆସୁଛନ୍ତି । ସେ ଏବେ ଦରବୁଢ଼ୀ ହେଲାଣି ।

ତେର ବରଷରେ ସେ ବୋହୂ ହେଇ ଏ ଗାଆଁକୁ ଆଇଥିଲା । ସେ କାଳ ଥିଲା ଦୋସର । ଏବେ ଆଇନ ହେଇଚି, ଚଉଦ ନ ପୂରିଲେ ଝିଅ ବାହାଘର ହେବ ନାହିଁ, କି ଷୋଳ ନ ପୂରିଲେ ଝିଅ ଶାଶୁଘର ଯିବ ନାହିଁ । ଆଇନ ନ ମାନି ପାଲୁଣୀର ବର ତେର ବରଷର ଝିଅର ବାହାଘର କଲା । ମକଦ୍ଦମାରେ ପଡ଼ି ଅଚ୍ଛା ପରସ୍ତେ ହାଲପଟା ହେଇ ନିସ୍ତାର ପାଇଲା, ଜୋରିମାନା ଦେଇ ।

ବାଘ ନେବା ଯେତେ ନ ବାଧେ, ବାଘ ଘୋଷରା ସେତେ ବାଧେ । ପାଲୁଣୀ ଯେଉଁଠି ବସେ ଆଗ ସେଇ କଥା କହେ । ଆହା, ଏତେ ହୋଇ କଣ ସୁଖ ବହିଲା ? ପନ୍ଦର ବର୍ଷର ପିଲା, ଗୃହଦହନ କଷ୍ଟ ପାଇ ଶେଷକୁ ମେସ୍ପୁଲକୁ ଗଲା । ଦଶ ମାସର ଛୁଆ ପେଟରେ ମଲା । ଓହୋ, ସେ କି କଦର୍ଥ !

ପାଲୁଣୀ ଭୁଲି ପାରନାହିଁ । ସେଇଆ ସେ କହେ । ଆଖିରୁ ଲୁହ ଧାର ଗଡ଼ାଏ । ସେଇଠୁ ଶୁଣେ ଅନ୍ୟତ ବଚନ, ଖାଲି ଶୁଣେ । ମନ ହେଲେ ଭଲ କଥା ପଦେ କହେ । ଶୁଣିଲେ ଶୁଣ, ନ ଶୁଣିଲେ ନାହିଁ ।

ସେ ମିଛ କହେ ନାହିଁ । କଥାରେ ଲଥା ଲଗାଇ ଲଗାଇ ଜାଣେ ନାହିଁ, ସାତଘରେ କଳିକଥା ଭିଆଏ ନାହିଁ । ସମସ୍ତେ ତାଆର ସାଆନ୍ତାଣୀ । ସମସ୍ତଙ୍କର ପାଦ ସେ ଧରିବ । ଗଲି ଆଇଲି, ଯାହା ଦେଖିଲି, ଯାହା ଶୁଣିଲି, ତାହା କହିଲି । ଏଇ ତାର ନୀତି । ସେ କାହିଁକି ମିଛ କହିବ ?

ପାଲୁଣୀ ଯାହା କହିଲା, କଅଣ ସତ ? ଗାଆଁରେ ଗପ୍ପ ହୋଇଛି । ଭଟାର ହସୁଛନ୍ତି । ସାତ ପାଞ୍ଚ ମାଇପେ ବସି ଚର୍ଚ୍ଚା କରୁଛନ୍ତି ।

ସୁନନ୍ଦ ମୋର ଶେଷକୁ ଏଇଆ ହେଲା ? କେଉଁ ଅଜାତ ଡାଆଣୀକୁ ଦେଖି ମାଆ ଓ ସ୍ତ୍ରୀକୁ ତୁଚ୍ଛ କଲା ? କାହାର ସେ ଛୋଟ ଛୋଟ ପିଲା ଦି'ଟି, ତାଙ୍କୁ ସେ ନେହ ଶରଧା କରି ଧନଗତ. କୋଳକାଖ କରି ଭୁଲିଲା ? ସେଇଥିପାଇଁ ମାସେ ହେଲା ଘରକୁ ଆସୁନାହିଁ ? ଚିଠି ଲେଖି ଖାଲି ଜଣେଇଦେଉଛି, କାର୍ଯ୍ୟବ୍ୟସ୍ତ ଅଛି । ଏଇ କାର୍ଯ୍ୟ ।

ଅଭାଗୀ ନାଗେଶ୍ୱରୀ ଆଖିରେ ଦୂରଅଡ଼କୁ ଅନାଇଁଲେ । ଛୁଇନେଇଛି ବେଳା । ଆଜିଏ ମଗୁଶିର । ଦେହ ଶୀତେଇ ଆସିଲଣି । ଆଗରେ ବଡ଼ ପୋଖରୀର କାଚକେନ୍ଦୁ ପରି ପାଣି । କୂଳପାଖେ ନାନା ଜାତିର ଗଛ । ସମସ୍ତେ ଯେପରି ପାଲୁଣୀର କଥା ଶୁଣି ଥକ୍କା ହୋଇ ଗୁହିଁରହିଛନ୍ତି । ବର୍ଷାପ କିଛି ଧାରୁ ନାହାନ୍ତି ।

ସୁନନ୍ଦ ଏଇଆ ହେବ ? ଏ ଘର, ଏ ସମ୍ପତ୍ତି, ବାଡ଼ିବଗିଚା କାହାପାଇଁ ?

ଅଭାଗୀ ମଣିଲେ, ଦୁନିଆରେ ସତେ କି ସେ ଏକା, ଆଉ ତାଙ୍କର କେହି ନାହିଁ । କାହିଁକି ସେ ଅଲକ୍ଷଣୀ ପାଲୁଣୀ ତାଙ୍କୁ ବାଗଆଡ଼ ବଗିଚାକୁ ଡାକନେଇ ଏ ସବୁ କହିଲା ? ଗାଆଁରେ ଗପ୍ପ ହେଲଣି, କିଏ କଣ ଜାଣି ନ ଥିବ ? କହୁନାହିଁ କାହିଁକି ?

ସତ କଥା ଲୁଚେଇ, ବାଆଁରେଇ ହୋଇ କିଏ କେତେଥର ପ୍ରବର୍ତ୍ତାଇଲଣି, ଅପା ମ, ତମେ ଆଉ ସହଜ କଟକ ଯାଇ ବୁଲିଆସିଲେ ହୁଅନ୍ତା ନାହିଁ ? ମୁଁ ଘର ଜଗି ରହିବି ।

କଲେ କଣ, କାହିଁକି ? କଟକ କଣ ଆମେ ଯାଇନୁ ନା କଟକରେ ରହିନୁ ? ମଗୁଶିର ମାସରେ ଘର ଛାଡ଼ି କିଏ ପଦାକୁ ଗୋଡ଼ ବଢ଼ାଏ ?

କଟକରେ ବ ଡମର ଘର ଅଛୁ ।

ମଗୁଣିର ମାସ କଷ୍ଟ ।

କନ ଜାଣିଛୁ, ଭୁମା ରହୁଛୁ । ବୋହୁ ? ନା, ତାର ଗୁଲଚଳନ, ଢ଼ଙ୍ଗ ଢାଙ୍ଗ, କଥାଦ୍ୱାରାରୁ କଛୁ ବୁଝି ହେଉ ନାହିଁ । କେଜାଣି, ଶୁଣିକର ହସରେ ଉଡ଼ାଇ ଦେଇଥିବ ' ମାସେକାଳ ଘରକୁ ନ ଆସିବା ସୁନନ୍ଦର ନୂଆ ଢ଼ଙ୍ଗ ନୁହ । କାମ ପଡ଼ିଲେ ଏପର ଘଟେ । ଆଜ ଅସମ୍ଭବ କଥା ଶୁଣିଲାରୁ ନୂଆ ପର ଲାଗୁଛୁ ।

ସତ ହେଉ, କ ମିଛ ହେଉ, ମନ୍ଦଗୁଜବ ଦୁନଆରେ ପ୍ରସଟିଲା । ସତ ନ ହୋଇଥିଲେ, ସତ ହେବାକୁ କେତେବେଳ ? ରାଜୀବ ବୟସରେ ସୁନନ୍ଦଠାରୁ ସାନ, ପାଞ୍ଚ ପୁଅର ବାପା ହେଲଣି । ସୁନନ୍ଦର କଛୁ ନାହିଁ !

ନାତଟିଏ କୋଳରେ ଧରବାକୁ ମନ ହାଇଁ ପାଇଁ ହେଉଛୁ । ସାତ ଆଠ ବରଷ ସସାର କର ପିଲା ମୁହଁ ଦେଖିବାକୁ କାହାର ମନ ନ ହେବ ? ଯେଉଁ ସ୍ତ୍ରୀ କୋଳରେ ପିଲା ବକଟେ ନ ଧରଲା ସେ ସ୍ତ୍ରୀରେ ଲେଖା ନୁହେଁ ।

ନନ୍ଦକା ବାଞ୍ଝ !

ଦେହ ସହୁ ନାହିଁ ବୋଲ ସତ କଥା ନଜ ପାଖରେ ଲୁଗ୍ଯଇଲେ ମନ ମାନବ ନାହିଁ । ନାତ ମୁହଁ ନ ଦେଖି ସେ ଅଖି ବୁଜବେ । କାହିଁକ ? ନନ୍ଦକା ତାଙ୍କର କଅଣ ? ବୋହୁଟାଏ ତ । ସେ ନଆସି ସିଏ ଏ ଘରକୁ ଆସିଥିଲେ ବୋହୁ ହୋଇଥାନ୍ତା । ସେ ପେଟରୁ ଜନମିନାହିଁ । ଏ ବଂଶର ପିଲା ପେଟରେ ଧରନାହିଁ । କାହିଁକି ଆଉ ଲୋଭ ? ସିଏ ହାତ ଧରଥିଲା ସେ ସଦ ରୁଚୁ କରଛୁ, କାହିଁକ ତା ଠେଇଁ ଆଶା ?

ଦେଖେଇ ଦେଖେଇ କେତେ ଲୋକ କହିଲେଣି, ଖବର ପଠେଇଲେଣି, ସୁନନ୍ଦ ପୁଅ କରୁ । ଝିଅ ଭଦେହିଁ ଚଠି ଲେଖି ଜଣାଇଛନ୍ତି, ବୋଉ ମ, ପୁଅ କଏ ଭଣଜା କଏ ? ଗାଆଁ ଲୋକେ କୁହାକୁହି ହେଲେ ସୁନନ୍ଦର ପୁଅ ନ ଥାଇ ପାଞ୍ଚ ପୁଅ । ରାଜୀବକୁ ସେ ମଣିଷ କରଛୁ, ନୂଆ ଘର ତୋଳେଇ ଦେଇଛୁ । ପିଲାଟିମାନଙ୍କର ଭଲମନ୍ଦ ବୁଝିଛୁ, ପାଞ୍ଚ ପୁଅରୁ ବାଛୁ ବାଛୁ ଗୋଟିଏ ପୁଅ ସେ ନେବ । ପୁଅ କଏ, ପୁରୁଷ କଏ ?

ଗାଈଆ ଶହରର ବୁଢ଼ୀମା ଦନେ କଥାର ମରମ କହିଲା, ସାଆନ୍ତାଣୀ ମ,ଦାଣ୍ଡକୁ ଘଦ ହାତ ଧାଡବ, ଅଂଶବଂଶରୁ ନୁହେ । ବଡ଼ ପ୍ରମାଦ । ଆଣିବ ତ ଏକାଥରେ ପଦାରୁ, ଯାହା ସଙ୍ଗେ ମୋଟେ ସମ୍ପର୍କ ନ ଥିବ । ସେ ଯେ ତଟିବ । ଆଉ କେହ ନୁହେ ।

ଗଢ଼ଆ ଖୁରପା ଅମଳ କଥାଟି କହୁଥିଲା, ନାଇଁ ଗୋ ମାଆ ରାଣୀ, ପୋଷାପୁଅ ଗୁଣ୍ଡାରୁଅ । ବାଘ ଘରେ ବିଲୁଆ ଛୁଆର ନାଟ ହେବ । କାହିଁକି ବା, ଆମେ ସମସ୍ତେ ଠାକୁରଙ୍କୁ ଡାକୁଛୁ, ନୂଆ ସାଆନ୍ତାଣୀଙ୍କର ପୁଅ ହେବ, କୁଳ ଉଜ୍ଜ୍ୱଳ କରିବ ।

ସେଇ ଆଶାରେ ବର୍ଷ ବର୍ଷ କଟିଯାଇଛି ।

ଆଉ ସେ ଅପେକ୍ଷା କରିପାରିବେ ନାହିଁ । ସୁନନ୍ଦ ଦାଣ୍ଡରୁ ପୁଅ ଆଣିବ, ଏ କଥା ବଞ୍ଚିଥାଉଣୁ ସେ କରେଇଦେବେ ନାହିଁ । ସୁନନ୍ଦକୁ ସେ ପୁଣି ବାହା କରେଇବେ । ବୟସ ବଳେଇ ଯାଇ ନାହିଁ । ସୁନନ୍ଦ ହୁଏତ ସେଇଆ ଚାହେଁ । ମନର କଥା ସେ କହିପାରୁ ନାହିଁ । ମା ହୋଇ ତା ମନର କଥା ସେ ନ ବୁଝିଲେ ଆଉ କିଏ ବୁଝିବ ?

ସୁନନ୍ଦ ପିଲା ଚାହେଁ । ସେଇଥିପାଇଁ ସେ ପର ପିଲାଙ୍କୁ ସ୍ନେହ କରୁଛି । ନନ୍ଦିକା ପରି ଲକ୍ଷ୍ମୀ ବୋହୂକୁ ପାଇ ମଧ୍ୟ ତାର ଆଖି ପଡ଼ୁଛି ଅନ୍ୟ କାହା ଉପରେ । ସିଏ ପଛେ ସେ ହେଉ, ରୂପରେ ଗୁଣରେ ନନ୍ଦିକାଠାରୁ ଅବଶ୍ୟ ନ୍ୟୂନ ହେବ । ଆଠ ବରଷର ଘର କରଣା ଭିତରେ କେବେ ସେ ପୁଅବୋହୂଙ୍କର ମୁହଁ ଶୁଖାଶୁଖି ଭାବ ଦେଖିନାହାନ୍ତି । ଲକ୍ଷ୍ମୀ ନୃସିଂହ ପରି ଦିଶନ୍ତି ସେ ଦିହେଁ । ଚାହିଁଦେଲେ ଆଖି ଆଗରେ ସ୍ୱର୍ଗପୁର ଉଭା ହେଲାପରି ଲାଗେ । ମନ ପୂରିଉଠେ । ପ୍ରାଣରେ ଉଠେ ପୁଲକର ଜୁଆର ।

ହଁ, ଏଇ ଦିହେଁ ମୋର ଦୁଇ ଆଖି, ପରାଣ କାରଣ ।

ଅଭୟାଙ୍କର ଦୁଇ ଆଖିରେ ଲୁହ ଛଳ ଛଳ ।

ଅଭୟା ମୁହଁ ଫେରାଇ ପଛକୁ ଚାହିଁଲେ ।

ଆରେ, ନନ୍ଦିକା କେତେବେଳୁ ଆସି ପଛରେ ଠିଆ ହୋଇଛି ! କଅଣ ସେ ଶୁଣିଲେ, କଅଣ ସେ ଭାବୁଥିଲେ, ସବୁ ଭୁଲିଗଲେ । ଏମିତି ବୋହୂର ପଦେ ଡାକ ଶୁଣିଲେ, ବୋହୂ ମୁହଁକୁ ମୁହୂର୍ତ୍ତେ ଚାହିଁଦେଲେ, ସବୁ ଦୁଃଖ ସେ ପାସୋରିଯାଆନ୍ତି । ତାର ପଦଟିଏ ଡାକ 'ବୋଉ' ଭିତରେ ଝିଅ ଓ ପୁଅର ସବୁ ଡାକ ସତେକି ଛପି ରହିଥାଏ । ଦିନୋଟି ପିଲା ତାଙ୍କର ଏଇ ସୁବର୍ଣ୍ଣ ପ୍ରତିମାରେ ଏକାଠି ଠୁଳ ହୋଇଛନ୍ତି ।

ହସହସ ସଜଫୁଟା ମଲ୍ଲୀଫୁଲ ପରି ଗୋରା ମୁହଁଟି ହଠାତ୍ ମଉଳା ଦିଶିଲା କାହିଁକି ? ଦୁଃଖ, ଉଦ୍‌ବେଗ ଓ ଅଜଣା ଭୟ, ପ୍ରମାଦ ମିଶା ଥରିଲା ସ୍ୱର, ଓଠରୁ ଝରିଲା, ବୋଉ, ତୁମେ ଏଠି କାହିଁକି ?

ଅଭୟା ଉତ୍ତର ଦେଇପାରିଲେ ନାହିଁ ।

ତୁମେ,—ତୁମେ କାନ୍ଦୁଛ ?

ନନ୍ଦକାର ଆଖିରେ ଲୋତକ ।

କେବେ ସେ ଦେଖି ନ ଥିଲେ । ସେ କେବେ ଶୁଣିଛ, ଜାଣିଛ, ସୁନନ୍ଦ ତାକୁ ଅବହେଳା କରିଛି ? ସବୁ ମିଛ । ଦେଖି ନ ପାରି ଲୋକେ କହୁଛନ୍ତି । ହିଂସା ବାଦ । ଲୋକେ ସହିପାରିଲେ ନାହିଁ । ଘର ଭାଙ୍ଗିବାକୁ ବସିଛନ୍ତି । ସତେ ? ଏତେ ବଡ଼େଇ ତାଙ୍କର ?

ଗତ କଥା ମନେ ପଡ଼ାଅ, ମା '

ଘରକୁ ଆସ ବୋଉ, ଏଥର କାକର ପଡ଼ିବ ।

ଚାଲ ।

ଟଳିଲା ପରି ଅଭସ୍ୱା ଆଗେ ଆଗେ ଚାଲିଲେ । ପଛରେ ଗଲା ନନ୍ଦିକା । କାହାରି ତୁଣ୍ଡରୁ କଥା ବାହାରିଲା ନାହିଁ । ଅଭସ୍ୱା ବୁଝିଲେ, ବୋହୂ ତାଙ୍କର କଥାକୁ ସତ ବୋଲି ଗ୍ରହଣ କରିପାରିନାହିଁ ।

ନନ୍ଦିକା ମନେ ମନେ ଗୁଣିହେଲା, ବୋଉ ମନକଥା ଲୁଚେଇଲେ କାହିଁକି ? ବାଜେ ଲୋକଙ୍କ ଆଲୋଚନା କଅଣ ତାଙ୍କର କାନରେ ପଡ଼ିଛି ? ପେଟରୁ ଜନମିଲା ପୁଅ, ଜୀବନରୁ ବଳି ଯାହାକୁ ଅଧିକ ସ୍ନେହ କରନ୍ତି, ତାଙ୍କ ଉପରେ ସନ୍ଦେହ ? ଯିଏ ପବିତ୍ରତାର ପ୍ରତୀକ, ଯାହାଙ୍କ ମନରେ କଳଙ୍କର ଦାଗ ପଡ଼ିନାହିଁ, ଯିଏ ଶୁଦ୍ଧ ସୁବର୍ଣ୍ଣ, ତାଙ୍କ ଉପରେ ଅବିଶ୍ୱାସ ?

ରାତି ନଅଟା ।

ଯା, ମା, ଏଥର ଶୋଇବୁ । କେତେବେଳଯାଏ ଗୋଡ଼ ଆଉଁସୁଥିବୁ ? ରାତି ବେଶି ହେଲାଣି ।

ବୋଉ !

କହ ।

ତୁମ ମନରେ ସୁଖ ନାହିଁ କାହିଁକି ?

ଅଭସ୍ୱାଙ୍କ ଛାତିରେ କଣ ଯେପରି ଅଟକିଗଲା । ସେ ଛେପ ଢୋକି ଗଲା ସଫା କରି କହିଲେ ପାଗଳୀ !

ଆଜି ଅଳପ ଖାଇଲ କାହିଁକି ?

ଦେହ ଭଲ ଲାଗୁନାହିଁ, ମା !

କବାଟ ଦରମେଲା କରି କିଏ ଡାକିଲା, ନୂଆ ବୋହୂ !

କଅଣ କି ?

କେତେବେଳେ ଆଉ ଖାଇବ ?

ଏଁ, ବୋହୂ ମୋର ଖାଇନାହିଁ ।

ଅଭୟା ପଲଙ୍କ ଉପରେ ଉଠି ବସିଲେ । ସକାଳେ' ନନ୍ଦକା ଖାଇନାହିଁ । କୁଳଲକ୍ଷ୍ମୀ ଉପାସ ରହୁଛି । ଏ ଘରକୁ ଦୁର୍ଯୋଗ ଘୋଟିଆସିଲା ? ସବୁ ସେ ଶୁଣିଛି ? ସବୁ ସେ ଜାଣିଛି ? ସେଇଥିପାଇଁ ତା ମନ କଳବଳ ହେଉଛି ?

କାଲି ସକାଳୁ କଟକ ଯିବା, ବୋହୂ !

ମାର୍ଗଶିର ମାସ, ଘରେ ମାଣ ବସିଛି ।

ବସିଥାଉ ।

ବୋଉ,— !

ତୁ ଆଗ ଖାଇବୁ, ଗୁଲୁଲୁ । ମୋତେ ମରଣ ନ ହେଲା ଯାହା । କାନ ମୋର ଶୁଣିଲା, କୂଳର ଲକ୍ଷ୍ମୀ ମୋର ଉପାସ ରହୁଛି । ଆ, ମା !

କେତେ ବର୍ଷପରେ କେଜାଣି' ଅଭୟା ବୋହୂର ହାତ ଧରି ଶୋଇବାଘରକୁ ନେଲେ । ମନା ମାନିଲେ ନାହିଁ । ସତମିଛ ପାଞ୍ଚ କଥା ଶୁଣି ନନ୍ଦକା ମନ ମାରୁଛି । ବୋହୂକୁ ଆଜି ସେ ନିଜେ ବସି ଖୁଆଇବେ ।

ଘରେ ମାଣ ବସିଛି । ଲୋକଙ୍କର ବାଜେ କଥା ଶୁଣି ମନ ଖରାପ କରୁଛୁ, ବୋଉ ? ପର ପିଲାଙ୍କୁ ଶରଧା କରିବାକୁ ସମସ୍ତଙ୍କର ମନ ହୁଏ ।

ସତ ଲୋ, ମା !

ଅଭୟାଙ୍କର ମୁହଁରେ ହସ ।

ନନ୍ଦକାର ଶୁଖିଲା ମୁହଁ ତୋରା ଦିଶିଲା । ଶାଶୁଙ୍କର ଗୋଡ଼ଧୂଳି ମୁଣ୍ଡରେ ମାରି ସେ ଗଲା ନିଜର ଶୋଇବା ଘରକୁ । ରାତି ଅଧରେ ନିଜେ ଶାଶୁ ପାଖରେ ବସି ଭାତ ଜସ୍ମ ପକାଇ ପେଟେ ଖୁଆଇଛନ୍ତି । ପେଟ ପୂରୁଛି, ମନ ପୂରୁଛି ।

ଖାଲି ହସ ମାଡୁଛି, ସ୍ୱେ କୁଆଡ଼େ— !

ଅତି ଆନନ୍ଦରେ କି ମଣିଷର ଆଖିରୁ ଲୋତକ ଝରେ, ଆଉ ଅତି ଦୁଃଖରେ ଓଠକୁ ଆସେ ହସ ।

ସେ ଦୁଃଖରେ ହସିଥିଲା, କି ଆନନ୍ଦରେ, ବୁଝିପାରିଲା ନାହିଁ । ସେ ସୁଖରେ କାନ୍ଦୁଛି, କି ଦୁଃଖରେ, ଏହା ବି ଜାଣି ପାରୁ ନାହିଁ । ଆଖିରୁ ଲୁହ ଝରୁଛି, ତକିଆରେ ପଡୁଛି । ଆଜି କାହିଁକି ନିର୍ଜନତା ଖେଞ୍ଚି ଉଠୁଛି । ଘଣ୍ଟାର ଟିକ୍ ଟିକ୍ ଶବ୍ଦରେ ମୃଦଙ୍ଗର ପିଟୁଛି । ଆଲୁଅଟା ଦେହରେ ଶର ବିନ୍ଧିଲା ପରି ଲାଗୁଛି ।

ନିଦ ଆସୁନାହିଁ । ମନ ଧାଇଁଯାଉଛି କଟକ । ଦେଖୁଛି, ଗୋଟ ଗୋଟ ପିଲା ଦୁଇଟି, ଝିଅଟିଏ, ପୁଅଟିଏ, କେଡ଼େ ସୁନ୍ଦର । ଲହୁଣୀ ପରି ଦେହ, ଚନ୍ଦ୍ରମା ପରି ମୁହଁ, କି ଶୋଭା ହସ ! ଗୁଡ଼ୁରୁ ଗୁଡ଼ୁରୁ ଚାଲି, ଗୁଲୁରୁ ଗୁଲୁରୁ କଥା । ସ୍ନେହ କରିବାକୁ କାହାର ମନ ନ ହେବ ? କୋଳ କରି ଗାଲରେ ଚୁମା ଦେବାକୁ କାହାର ପ୍ରାଣ ନ ଡାକିବ ? ନିଜର ପିଲା ଥାଉ ବା ନ ଥାଉ । ପିଲା ସେ ସଭିଙ୍କର ଯାହାର ମନରେ ପର ଆପଣା ଭାବ ପଶିନାହିଁ, ସେ ତ ସମସ୍ତଙ୍କର । ସ୍ନେହ କରିବା ପାପ ନୁହେଁ, ଅନୀତି ନୁହେଁ ।

ଆଉ, ସେ ଝିଅ ଜଣକ ?

ବଙ୍କଳିଆ କଳା ଚକଚକ ବାଡ଼ରେ ହାତଭରା ଦେଇ ମୁହଁ କୁ ମୁହଁ ଯୋଡ଼ି ସେ ଝିଅ ଠିଆ ହୋଇଛି । କେଶରାଜି ଉପରେ ଚକ୍ ଚକ୍ ଦିଶୁଛି,—ସେଇଟା କଅଣ ? ନୂଆ ଝିଲାଚନ୍ଦ୍ର ସୁନା ହାରଟିଏ । ରଙ୍ଗବେରଙ୍ଗର ପଥର ବସିଛି ।

କେଡ଼େ ଖୁସିରେ ସେ ଝିଅଟା ସିଧା ହୋଇ ଠିଆ ହେଲା ।

ଛି ଛି, ଏ କି ଢଙ୍ଗ ! ଏଡ଼େ ନିର୍ଲଜ୍ଜ, ପାତଳା ଶାଢ଼ୀ ଦେହରୁ ଦିଶି ଅଧ ଖସିପଡ଼ୁଛି । ଏଡ଼ିକି ବେହିଆ !

ପିଲା ଦୁଇଟିଙ୍କର ମାଉସୀ ସେ, ଦୁଇଟି ପିଲାର ମା ! ସମସ୍ତଙ୍କୁ ହସାଇ ଆଶ୍ରା ନେଇଛି ପର ଘରେ । ତାର ପୁଣି ଏମିତିକା ଢଙ୍ଗ ?

ହାତରେ ହାରଟି ଧରି ସେ ସପନାବତୀ ଉଠିଲେ । ହସୁଛନ୍ତି । ଏଁ, ଇଏ କଅଣ କଲେ ? ହାରଟି ତାଆରି ପାଇଁ, ନନ୍ଦିକା ପାଇଁ ନୁହେଁ ? ଏଁ, ଇଏ କଅଣ କଲେ—?

ନନ୍ଦିକା କାନ୍ଦିଉଠିଲା । ଉଠି ବସିଲା । ଆଖିରୁ ବରଷା ଧାର ପରି ଲୁହ ଛୁଟିଛି । କୋହ ଉଠୁଛି ଗ୍ରୀବା ଥରୁଛି ଜଣା ଗର୍ଜୁଛି ।

ନା, ସହି ହେବ ନାହିଁ । ପନ୍ଦର ମାଇଲ ବାଟ ପନ୍ଦର ଖେପା କରି ଧାଇଁଯିବାକୁ ମନ ହେଉଛି । ସେଇ ଅଲଣା ଡାହାଣୀ ସପନାବତୀ ଆଗରେ ଠିଆ ହୋଇ ଗର୍ଜି ଉଠିବାକୁ ମନ ହେଉଛି, କହେ, କିଏ ତୁ ? କାହାର ମୋ ଘରୁ, ବାହାର ଯା— ।

କାହା ନେଇ ଟାଣ, କହେ, କହୁନୁ ? ପଚାରୁଛି ସେ ଅଧଲଙ୍ଗୁଳୀ ।

ସ୍ୱାମୀ ଠିଆ ହୋଇ ଗୁହାଁ ରହିଛନ୍ତି କଟମଟ କରି । ତାଙ୍କର ଢଙ୍ଗ ହିଁ ପଚାରୁଛି, କାହା ନେଇ ଏ ହଟାଣ ? ମୋର ସବୁ ସ୍ନେହ, ସବୁ ସୋହାଗର ବିନିମୟରେ କଅଣ ତମେ ମତେ ଦେଇଛ, ନନ୍ଦିକା ? କାହିଁକି ମୋର ଏ ଜୀବନମୂର୍ଚ୍ଛ । ପରିଶ୍ରମ, ଅର୍ଜନ ? କିଏ ଭୋଗ କରିବ ? ଗୁହାଁ ଦେଖ ଏ ପିଲା ଦିଓଟିଙ୍କୁ । ଦେଇପାରିଲ ? ନା ତମେ ମୋର ମଣିଷ ଜୀବନକୁ ବ୍ୟର୍ଥ କରିଛ, ମୁଁ ହୋଇଛି—

ରକ୍ଷସ ! ନା, ନା । ତମେ ମୋର ଦେବତା, ତମେ ମୋର ସର୍ବସ୍ୱ । ମୋର ଆଉ କିଛି ଲୋଡ଼ା ନାହିଁ, କେବଳ ତମ ପାଦର ଟିକିଏ ଧୂଳି । ତମର ସୁଖ ହିଁ ମୋର ସୁଖ, ତମର ଆନନ୍ଦ ମୋର ଆନନ୍ଦ । ତମର ଇଚ୍ଛା ଓ ଆଗ୍ରହ ମୋର ଆଦେଶ । ମୁଁ ଆଉ କାନ୍ଦିବି ନାହିଁ । ତମର ଅଭିଳାଷ ଆଗରେ ପ୍ରତିବନ୍ଧକ ହୋଇ ଠିଆ ହେବାକୁ ଧାଇଁଆସିବି ନାହିଁ । ମତେ କ୍ଷମା କର ।

ନୂଆବୋହୂ, ନୂଆବୋହୂ !

ନନ୍ଦିକା ମନ ଭିତରକୁ ଫେରିଆସିଲା । ଆରେ, କିଏ ଡାକୁଛନ୍ତି, କବାଟ ବାଡ଼ଉଛନ୍ତି । ତା ମନର ଭାବନା ପଦ୍ମାକୁ ଛୁଟିଗଲା । କଅଣ ସେ କରିବ ?

ନୂଆବୋହୂ !

ଆଖିରୁ ଲୁହ ପୋଛି ଅସ୍ତବ୍ୟସ୍ତ ହୋଇ ନନ୍ଦିକା ପଲଙ୍କ ଉପରୁ ତଳକୁ ଓହ୍ଲାଇଲା । ଆଲୁଅ ଜାଳି କବାଟ ଖୋଲିଲା । ସାରା ଦେହ ଥରଉଠୁଛି । ଘର ଭିତରକୁ ପଶି କିଏ ବଲବଲ କରି ଚାରିଆଡ଼କୁ ଗୁହାଁଲେ । ନନ୍ଦିକାର ମୁହଁକୁ ଅନେଇ ପଚାରିଲେ, କାନ୍ଦୁଥିଲ ?

ନାହିଁ ତ ।

ସପନ ଦେଖିଲ କି, କଉଁ କଉଁ କୋହ ଶୁଭିଲା ଯେ ?

ଜଳେ ତମେ ସପନ ଦେଖି ରାତି ଅଧରେ ଡାକି ଉଠୁଛ, କିଏ !

ମୁଁ ମୋଟେ ଶୋଇନାହିଁ । ଏଇ ଝରକା ତଳେ ବସିଥିଲି ।

ତେବେ ମୁଁ ସପନ ଦେଖିଥିବି ।

ହୋଇଥିବ । ଅଧଘଣ୍ଟାଏ ହେବ ମୋତେ ରୁନି ରୁନି କାନ୍ଦ ଶୁଭୁଛି । ତମେ ତେବେ ବଲବଲଉଥିଲ ?

ହୋଇଥିବ ।

କେବେ ତ ବନ୍ଦବଲାଅ ନାହିଁ, ଆଜ କାହିଁକ ?

ନନ୍ଦକା ହସି ହସି ଖଟ ଉପରେ ବସିଲ । ଉତ୍ତର ଦେଲ, କେମିତ କହବ ?

ମୁଁ କହବ, ନୂଆବୋହୂ, ଦାଣ୍ଡଲୋକଙ୍କ ମିଛ ପ୍ରଗ୍ଭର ଶୁଣି ତମେ ମୋ ଝଇ ଉପରେ ଅବଶ୍ବାସ କଲ । ଚନ୍ଦ୍ରରେ କଳଙ୍କ ଅଛ, ମୋ ଝଇ ମନରେ କଳଙ୍କ ନାହିଁ ।

କନ୍ନର ଆଖିରେ ଲୁହ ଢଳଢଳ ।

ନନ୍ଦକା ଚମକଉଠିଲ । ଗୁଣ୍ଡରୁ ବଚନ ବାହାରିଲ ନାହିଁ । ହସିବାକୁ ଚେଷ୍ଟା କଲ । କୋହ ଗ୍ଭପି କହଲ, ଲୁଚେଇବ ନାହିଁ, କନ୍ନ, ମୁଁ ଜାଣି ଜାଣି କାନ୍ଦନାହିଁ, ମତେ କାନ୍ଦ ମାଡ଼ଲ । ଯେତେ ଚେଷ୍ଟା କଲ, ମନର କୋହ ଗ୍ଭପି ପାରିଲ ନାହିଁ । ମୋର ଦୋଷ ହୋଇଛ । ତାଙ୍କ ଉପରେ ଅବଶ୍ବାସ କରି ମୁଁ ମୋ ନଜ ଉପରୁ ବଶ୍ବାସ ହରେଇଛ ।

ମିଛ ଦୁର୍ନାମ ଶୁଣି ?

ସତ ହେଲେ ବ ମୁଁ ଆଉ କାନ୍ଦବ ନାହିଁ । ତମେ ଯାଅ, କନ୍ନ, ଶୋଇବ, ଗ୍ଭତ ଅଧ ହେଲଣି ।

ମୁଁ ଏଇଠି ଶୋଇବ ।

ମତେ ଜଗିବ ? କଅଣ ଜଗିବ ? ମୋ ମନରେ ପଣି ଭାବନାରେ ଶିକୁଳୀ ଲଗାଇପାରିବ ? କନ୍ନ, ଆଜକ ପଚଶି ଦନ ହେଲ ତମର ଝଇ ଆସିନାହାନ୍ତ । ମୁଁ ସିନା ଅଲେଡ଼ା ଅଖୋଜା, ଗୋଟାଏ ସ୍ତ୍ରୀ ମଲେ ଦ୍ବ ହଜଲେ, ମନକୁ ନ ପାଇଲେ, ଦୁନଆରେ ସହସ୍ର ସ୍ତ୍ରୀ ଅଛନ୍ତ । ଜନମକଲା ମା ଜଣକରୁ ଦୁଇଜଣ କାହାର ହୋଇପାରନ୍ତ ନାହିଁ । ବୁଢ଼ୀ ମଣିଷ, ପାଚଲ ଆମ୍ବ, କେବେ ଖସିବେ କଏ ଜାଣେ ! ଦେଖିବାକୁ ତାଙ୍କର ମନ ହେଲ ନାହିଁ ?

କନ୍ନ ନରୁତ୍ତର ।

ଶୁଣ କନ୍ନ, ବୋଉ ସଞ୍ଜବୃଢ଼େ ପୋଖରୀକୂଳରେ ବସି ଆଖିରୁ ଲୁହ ଗଡ଼ାଉ ଥିଲେ । କହଲ, ମୁଁ କେମିତ ସହପାରନ୍ତ ? ତାଙ୍କ ଆଖିରୁ ଲୁହ ଗଡ଼ିଲେ ଅକଲ୍ୟାଣ ହେବ ନାହିଁ ? ମତେ କାନ୍ଦ ମାଡ଼ଲ । ଯେବେ ହେଲେ ତ ସେ ଆସିବେ, ଏ କଥା ମୁଁ ତାଙ୍କୁ କହବ ।

ତୁମେ ପାଗଳ ହେଲେ କ ନା ଆଉ ?

ହୋଇନାହିଁ ଯେ, ଗ୍ଭତ ଅନଦ୍ରା ହେଲେ ହେବ । ତୁମେ ଯିବ ଟି, ମତେ ନଦ ଯୋଡ଼ିଟା ଆସିଲଣି ।

ନିଦ୍ରା ଭାଙ୍ଗିଲା ।

କବାଟ ଖୋଲି ନନ୍ଦିକା ଆଲୁଅ ଲଗାଇଲା । ପଲଙ୍କ ଉପରେ ବସି ପୁଣି କଣ ଭାବିବାକୁ ଚେଷ୍ଟା କଲା । କଅଣ ସେ ଭାବିବ ? ଅଜାଣତରେ ସେ କାନ୍ଦୁଥିଲା । କାନ୍ଦର କାରଣ ସେ ଜାଣିଛି କହିଦେଇଛି, ନିଜ ପାଇଁ ନୁହେଁ, ବୋଉଙ୍କ ପାଇଁ ସେ କାନ୍ଦୁଛି । ତାର ମନରେ ଆଉ ଦୁଃଖ ନାହିଁ । ଦୁନିଆର ଲୋକେ ଅପବାଦ ଦେଲେଣି ଯେ ସେ ବାଞ୍ଝ । ବୃନ୍ଦାବତୀଙ୍କଠାରୁ ଆରମ୍ଭ କରି ଯେତେ ଦେଉଁ ଦେବତା, ସମସ୍ତଙ୍କର ପୂଜା ସେ କରିଛି । ବାରବ୍ରତ କରି ନର୍କାଳା ଉପାସ ରହି ସମସ୍ତଙ୍କୁ ସେ ପ୍ରାର୍ଥନା କରିଛି । ତା ମାତୃତ୍ୱର ଆକୁଳ ବିକଳ ଡାକ କେହି ଶୁଣିନାହାନ୍ତି ।

ଆଉ କାହିଁକି ?

ଏଥର ସେ ନିଶ୍ଚିନ୍ତରେ ଶୋଇବ ।

ନନ୍ଦିକା ନିଶ୍ଚିନ୍ତରେ ଶୋଇପାରିଲା ନାହିଁ ।

ମୁଦିଲା ଆଖିପତା ତଳେ ଚେଇଁଲା ଆଖିଡୋଳା ଭ୍ରମିବାକୁ ଲାଗିଲା । ଦୁଇ ନଣନ୍ଦ ଶୋଭା ଓ ଆଭା, ସାନ ଜା ସୁମିତ୍ରା, ନଣନ୍ଦ ଜାଆମାନେ, ଗାଆଁର ଆଉ କେତେ ବୋହୂବୋହୂ, ସମସ୍ତେ ସେମାନେ କେତେ ପିଲାର ମା । ସେ ବି ସେମାନଙ୍କ ପରି ନାଆଁଟିଏ । ସେ କାହିଁକି ବଞ୍ଚିତା ହେଲା ? ସେ ଯଦି ଏ ଘରର ବୋହୂ ନ ହୋଇ ଆଉ କେଉଁ ଘରର ବୋହୂ ହୋଇ ଯାଇଥାନ୍ତା, — ।

ଛି, ଏ କଥା ମନକୁ ଆସୁଛି ? ମରଣ ନ ହେଲା ଯାହା । ପୁଣି କାହିଁକି ସେ ଭାବୁଛି ? ଏଥର ଶୋଇବ ।

ନନ୍ଦିକା ବଡ଼ ଲେଉଟାଇଲା । ଆଗରେ ଉଭା ହେଲା ରାଜୀବ, ଲେଖାରେ ଦେବର । ସମସ୍ତଙ୍କର ବିଶ୍ୱାସର ପାତ୍ର, କର୍ମଯୋଗୀ । ପାଞ୍ଚଟି ପିଲାର ପିଅର । ସାନ ପିଲାଟିର କାଲି ଏକୋଇଶା । କେମିତି ଲଜ୍ଜିତ ହୋଇ ଠିଆ ହେଇଛନ୍ତି ।

ସୁମିତ୍ରା ତାଙ୍କୁ ଗାଳି ଦେଉଛି, ଗୋଟିକ ପରେ ଗୋଟିଏ, ପାଞ୍ଚଟି ପିଲା ସଂସାରକୁ ସେ ଆଣିଲେଣି ଅଳନ୍ଦ୍ରିକ, ମୁଁ ଖାଲି ପାଣ୍ଡି ହେଇ ମରୁଛି । ଗୋଟିଏ ଶୂଳ ଯଦି ସେ ସହନ୍ତେ, ବାପପଣିଆର ଭାବ ବୁଝନ୍ତେ ।

ତାଙ୍କ ପଛରେ ଠିଆ ହୋଇଛନ୍ତି ଶୋଭା ଦେଈଙ୍କର ବର ଭାଗବତ, ତାଙ୍କ ପଛରେ ଆଭା ଦେଈଙ୍କର ବର ଗୋଲଗୋବିନ୍ଦ, ତା ପଛକୁ ଗଉଡ଼ିଆ ଶଙ୍କର, ତା ପଛକୁ ସମସ୍ତେ ସେମାନେ ବାପ ହୋଇଛନ୍ତି ।

ସୁନନ୍ଦ କାହିଁ ?

ନନ୍ଦକା ଆଖି ଖୋଲିଲା । ଅନ୍ଧାର । ଝରକା କବାଟ ବନ୍ଦ । ବାହାର ଜହ୍ନ ଆଲୁଅ ଘରେ ପଶି ପାରୁ ନାହିଁ । ଅନ୍ଧାର ଭିତରେ ସ୍ୱର ଶୁଭୁଛି, କାହିଁକି ଦେଖୁଛ ସେମାନଙ୍କୁ ?

ସେମାନେ ଜନକ ।

ମୁଁ ବି ହୋଇଥାନ୍ତି ।

ମୁଁ କଅଣ ଜନନୀ ହୋଇପାରନ୍ତି ନାହିଁ, ଭାବିଛ ?

ହାଃ ହାଃ ହାଃ ।

କଏ ହସୁଛି ? ଅନ୍ଧାର ? ନିର୍ଜନତା ? ତାର ଅପରିପୂର୍ଣ୍ଣ ମାତୃତ୍ୱ କାମନା ? ନୀତି ଓ ସଂସ୍କୃତିର ବାଡ଼ ଡେଇଁ ନନ୍ଦକାର ଓଲେଇ ମନ କୁଆଡ଼େ ଧାଇଁଛି ? ଆଠ ବର୍ଷର କଠୋର ସାଧନା, କର୍ତ୍ତବ୍ୟ ଧାରଣା, ସ୍ନେହ ସୋହାଗ, ଗେହ୍ଲା ପଣିଆ ସବୁ ଛୁଡ଼ିଗଲା ପଛରେ ? ବିବାହ ମନ୍ତ୍ର ବ୍ୟର୍ଥ ହେବ ? ଉଦ୍ଦିଷ୍ଟ ଦେହ, ମନ, ଆତ୍ମା, ଅଭିଳାଷ, ଆଗତ କଳ୍ପନାର ମିଳନ ମଞ୍ଚରେ ପ୍ରତିବନ୍ଧକ ହୋଇ ଠିଆ ହେବ ମାତୃତ୍ୱ କାମନା ?

ମୁଁ ନିର୍ବୋଧ । ତୁମେ ହସ ନାହିଁ । ମୁଁ ଜନନୀ ହେବାକୁ ଚାହେଁ ନାହିଁ । ମୁଁ ପତ୍ନୀ ।

ମୁଁ ତମର ପଦସେବିକା, ଏ ଘରର କୁଳବଧୂ ।

ମୁଁ ଗୃହିଣୀ ।

ସମସ୍ତଙ୍କର ସୁଖ ଓ ଆନନ୍ଦ ଦେଖି ସୁଖୀ ହେବା ମୋର କର୍ତ୍ତବ୍ୟ । ମୋ କର୍ତ୍ତବ୍ୟ ମୁଁ ପାଳନ କରିବ । ମୋର ନିଜତ୍ୱ ନାହିଁ । ସମସ୍ତଙ୍କର 'ସ୍ୱ' ଭିତରେ ମୁଁ ସ୍ୱତ୍ୱ ହଜାଇବ । ମୋର ପୁଣି ଭାବନା କଅଣ, ଆକାଂକ୍ଷା କଅଣ ? ଦୁଃଖ ଓ ବେଦନ ପାଇଁ ସ୍ଥାନ ନାହିଁ ମୋ ଭିତରେ ?

ମୁଁ ପତ୍ନୀ, ତମର ପଦସେବିକା ଗୃହିଣୀ । ହସ ନାହିଁ, ହସ ନାହିଁ, ହସ ନାହିଁ ।

ନନ୍ଦକାର କ୍ଲାନ୍ତ ଆଖିତୋଳା ସ୍ଥିର ହେଲା ।

ନନ୍ଦକା ଡାକ ଶୁଭୁଛି, ତମେ ଆସ ।

ଚା ଟିକେ ଢୋକି ସୁନନ୍ଦ ବିସ୍କୁଟ ଖଣ୍ଡେ ପାଟିରେ ପୂରାଇଲା । ଶୀତୁଆ ସକାଳ । ମୋଟେ ସାଢ଼େ ଛଅଟା । ଶୀଘ୍ର ପ୍ରସ୍ତୁତ ହେବାକୁ ପଡ଼ିବ ।

ଆଜିକାର ପ୍ରୋଗ୍ରାମ ଲମ୍ବା । ଦୁଇଟି ମକଦ୍ଦମାର ତଦ୍ବିର ନେବାକୁ ହେବ । ଭଲକରି ହିସାବ ତନଖି ନ କରି ବିକ୍ରୟକର ହାକିମ ତିନି ହଜାର ଟଙ୍କା କର ଧାର୍ଯ୍ୟ କରିଦେଇଛନ୍ତି । ଉପର ହାକିମଙ୍କ ପାଖେ ଅପିଲ ଫାଇଲ୍ କରାହୋଇଛି । କାଲି ଶୁଣାଣି ତାରିଖ । କାଗଜପତ୍ର ନେଇ ଓକିଲଙ୍କୁ ଦେଇଆସିଛି । ତାଙ୍କର ମନେ ପକାଇଲେ ସେ କେସ୍ ପାଇଁ ପ୍ରସ୍ତୁତ ହେବେ ।

ଆଉରି ଗୋଟାଏ କଣ୍ଟ୍ରୋଲ କେସ୍ । ମଣିଷ ହକ୍‌ଦାର ହୋଇସାରିଲାଣି । ଏ ସବୁ ରଜାଙ୍କର ଅସତର୍କତାର ଫଳ । ବର୍ଡି ଖାତାରେ ମିଛ ନାମ ଓ ହିସାବ ଲେଖାଇଲୁ, ଭଲ କଲୁ, ସଙ୍ଗେ ସଙ୍ଗେ ସେ କିରାସିନି ଚିନିଗୁଡ଼ାକ ଓ ଲୁଗା ଶାଢ଼ୀ ସମ୍ପୂର୍ଣ୍ଣ ଝଣ୍ଡ ଅନ୍ଧାର ଘରକୁ ଚାଲାନ୍ କଲୁ ନାହିଁ ? ଆଚ୍ଛା, ସେତେକ କରି ନ ପାରିଲୁ ତ ଚା, ସିଗାରେଟ ଯୋଗାଡ଼ କଲୁନାହିଁ ? ତନଖି କରୁଥିବା କର୍ମଚାରୀଙ୍କ ଘରକୁ ନମୁନା ମାଲ ପସନ୍ଦ ପାଇଁ ପଠାଇଥିଲେ ହୋଇ ନ ଥାନ୍ତା ? କେସ୍ ଲଢ଼ିବାକୁ ହେବ । ଖରଚ, ହଇରାଣ, ଖୁସାମତ, ଓକିଲ । ବ୍ୟସ୍ତର କଥା ।

ଚା ସରିଲା ।

ଟେବୁଲ ଉପରେ ନନ୍ଦବାର ଚିଠି । ଖୋଲାହୋଇ ପଡ଼ିଛି । କାଲିଠାରୁ ଆସିଲାଣି । ରାତି ଅଧରେ ସେହି ଚିଠି ଖଣ୍ଡି ପଢ଼ୁ ପଢ଼ୁ ନିଦ ହୋଇଗଲା । ଟିକିଏ ଲମ୍ବା ଚିଠି । କଣ ସେ ପଢ଼ିଥିଲା, ମନେ ନାହିଁ । ପଢ଼ିଲା । ଏ ଚିଠିରେ ଏତେ କଥା ସେ ଲେଖିଛନ୍ତି, ବୋଉଙ୍କଠୁଁ ଆରମ୍ଭ କରି ଶବର ସାହିର କେଉଁ ଶବରୁଣୀର ଶ୍ରେଷ୍ଠ ପିଲାଟାଏ । ଗାଈଗୋରୁ, ଗଛ, ଧାନ, ପୋଖରୀ, କେତେ ବସ୍ତୁ । ସମସ୍ତେ ଭଲ ଅଛନ୍ତି ।

ଆଉ ସେ ନିଜେ ?

ନିଜ କଥା ଲେଖିବାକୁ ସବୁଦିନେ ସେ ଭୁଲିଯାଆନ୍ତି ।

—ଦେଖୁ ଦେଖୁ ମାସଟିଏ ପୂରିବ, ତମର ଏତେ କାମ ଯେ ଦିନକ ପାଇଁ ଆସିବାକୁ ବେଳ ମିଳୁନାହିଁ ? ତମେ ସବୁ ସ୍ୱାଧୀନ ବ୍ୟବସାୟ କରୁଛ ? ମୁଣ୍ଡବିକା କର୍ମଚାରୀଙ୍କଠୁଁ କଣ କମ ? ବୋଉ ଛୁଆଖାଇ ବଲେଇ ପରି ହେଉଛନ୍ତି । ତମକୁ ଦେଖିବାକୁ କେଡ଼େ ଛଟପଟ ହେଉଛନ୍ତି ସତେ ! ତମେ ଆସ, ଦିନକ ପାଇଁ ହେଲେ ଆସ । ବୋଉ କଟକ ଯିବାକୁ ବସିଥିଲେ, ମତେ କହୁଥିଲେ । ମଗୁଶିର ମାସ, ଘର ଛାଡ଼ି ଯିବା ଭଲ ନୁହେଁ, ମୁଁ ମନା କଲି ।

ରାଗିଲ କି ?

ଶୋଭା ଚିଠି ଦେଇଛନ୍ତି । ହାଣ୍ଡିଏ ଆରିସା ପିଠା, ହାଣ୍ଡିଏ ଫେଣିଖଜା ପଠାଇଛନ୍ତି । ତମେ ନ ଚାଖିଲେ ଆଉ କେହି ଛୁଇଁବେ ନାହିଁ । କାଳୀଗାଈର ଦିବ୍ୟ ସୁନ୍ଦର କଳା ମିଟ ମିଟ ଛୁଆ ହୋଇଛି । ଗାଆଁ ଲୋକେ ସମସ୍ତେ ଆସି ଦେଖିଯାଉଛନ୍ତି ।

ଧନ୍ୟ ଧନ୍ୟ ପ୍ରଶଂସା କରୁଛନ୍ତି । ତମ ଖୁଡ଼ିବୋଉ ସୁମିତ୍ରା, ସେଇଟା ତମୁକୁ ଦଅର ଲେଖା କରେ ମ, ଏଡ଼ିକ ଅଲକ୍ଷଣୀ । କହୁଛି, କାଳୀଗାଈଟା ଖଣ୍ଡେ ମୁହଁ ଦେଖିଲା ନାହିଁ, କଟକରୁ କୋଉ ଡାକ୍ତରକୁ ସାଆନ୍ତେ ଅଣାଇଥିଲେ, ସେ କି ଔଷଧ ଫୋଡ଼ିଲା ଯେ, ଦେଖ ମ, ଦିବ୍ୟ ସୁନ୍ଦର ହାଣ୍ଡିଆ ପରି ବାଛୁରୀ ହୋଇଛି । ସାଆନ୍ତେ ମନ୍ତ୍ର ଜାଣନ୍ତି ।

ପୁଣି କହୁଛି—

ନା, ଲେଖିବି ନାହିଁ । ଶୁଣିଲେ ହସି ହସି ଗଡ଼ିଯିବ ।

ସେ ଯେଉଁ କାଠିଆ କଦଳୀ କାନ୍ଧ ପୋକସା ଗୁଡ଼ା ପାଖ ଗଛରେ ଫଳିଥିଲା, ସେ ହେଲା ଚଉଷଠି ଫେଣା, ପୂରୁପୂରୁ ଉଞ୍ଚ କାନ୍ଧ । କଦଳୀଗୁଡ଼ିମାନ ଟ୍ୱେଣ୍ଟିରୁ ବଡ଼ । ପାଚି ହଳଦୀଗଣ୍ଡି ପରି ହେଲାଣି । ଏତେ ସ୍ନେହ କରିଥିଲ, ଆସି ଥରେ ଆଖି ନ ପକାଇଲେ ସଡ଼ି ଗୋବର ହେବ ପଛେ, କେହି ଛୁଇଁବେ ନାହିଁ ।

ଚିଠି ଲେଖିବି ନାହିଁ, ନିଜେ ଆସିବ । ସମସ୍ତେ ଆମେ ଗୃହିଁ ରହିଛୁଁ ।

ଚିଠି ଖଣ୍ଡି ପକେଟରେ ରଖିଲା । ନନ୍ଦକାର ଫଟୋକୁ ଚାହିଁଲା ଅତି ସ୍ନେହରେ । ମନ କହିଲା, ତମେ ବି ଖୋଜୁଛ । ମାସଟିଏ ଅଦେଖା । ବିଚ୍ଛେଦ ସହି ପାରୁ ନା ? କାମ ନ ଥିଲେ ବର୍ତ୍ତମାନ ସଙ୍ଗେ ସଙ୍ଗେ ବାହାରିପଡ଼ନ୍ତି । ବେପାରୀର ପରାଧୀନତା କହିଲେ ନ ସରେ ନନ୍ଦକା, ସମସ୍ତେ ତାର ପ୍ରଭୁ ଅନେକ ତାର ଶତ୍ରୁ । ତମର ଆଦେଶ ଲଙ୍ଘନ କରିପାରିବି ନାହିଁ । ଆଜି ଯିବି କାମ ଛାଣ୍ଡାଇ ଆଗେ ।

ଟେଲିଫୋନ୍ ଡାକୁଛି ।

କିଏ ?

ଓଁ,— ହଉ, ଧର କେତେ ? ହଲୋ, ହଲୋ – ଚନ୍ଦ୍ରଲାଲ୍ ? ବଡ଼ଦାନା ଚନ୍ଦ ? ଦର— ? ଆଚ୍ଛା । ମୁଁ ନିଜେ ଯିବି । ସଞ୍ଜ ଆଗରୁ ଯାଇପାରୁନାହିଁ । ହଁ, ସାଢ଼ େ ଅ.ଠଟା ।

ସୁନନ୍ଦ ଉଠିଲା । ଏଇ ଟେଲିଫୋନ୍‌ଟା ଲଗାଇ ବଡ଼ ବ୍ୟସ୍ତରେ ସେ ପଡ଼ିଛି । କାମ ଥାଉ କି ନଥାଉ, କିଏ ହେଲେ ଡାକ ଶୁଭୁଛି । ସେଇ ସଞ୍ଜୀବର ଦୋଷ । ମ ଲଗୋଦାମରୁ ଘରକୁ ଷାଠିଏ ଥର ଡାକଗ । ପୁଣି ପଡ଼ାପଡ଼ାକର ଜଣା ଅଜଣା ଲୋକ ଆସି ବ୍ୟସ୍ତ କରୁଛନ୍ତି, ଥାନା, ମେଡ଼ିକେଲ, କଲେଜ, ସିଭିଲ କୋର୍ଟ, ଭୁବନେଶ୍ୱର, ସବୁଠି ସେମାନଙ୍କର କାମ । ନାହିଁ କଲେ ମନ କଷ୍ଟ କରିବେ ।

ସୁନନ୍ଦ ପ୍ରସ୍ତୁତ ହେଲା । ଆଜିକାଲି ସେ ଖଦଡ଼ ପୋଷାକ ପିନ୍ଧି ପଦାକୁ ବାହାରେ ଧୋତି, ପଞ୍ଜାବୀ, ଚଦର, ମୁଣ୍ଡରେ ବଙ୍କେଇ କରି ଗାନ୍ଧି ଟୋପିଟି । ଭଲ ଦିଶେ । ଏଇ ତାର ଦରବାରିଆ ପୋଷାକ । କାମିଜ ତଳେ ଗେଞ୍ଜି, ଉପରେ ସ୍ୱେଟର, ଶୀତ ହୁଏ ନାହିଁ । ଗୋଡ଼ରେ ଚପଲ । ଏ ପୋଷାକରେ ଏ ଯୁଗରେ

ସମ୍ମାନ ଅଛି, ଖାତର ଅଛି, ସାଧୁତାର ନେକ ଅଛି । ଏଇ ପୋଷାକ ପିନ୍ଧି ପଦାକୁ ବାହାରିଅସିଲେ କାର୍ଯ୍ୟସିଦ୍ଧିର ଦୃଢ଼ତା ମନକୁ ଆସେ ।

ରାଜୀବ ପାଖକୁ ଆସି ପଚାରିଲା, ଭାଇ, ଆପଣ କୁଆଡ଼େ ବାହାରିଲେଣି ? ଓକିଲ ଘରକୁ ଯିବେ ପରା, କାଲି ଆସୁନ୍ଥର ଅପିଲର ଶୁଣାଣି ଅଛି !

ମୁଁ ଓକିଲ ଘରକୁ ବାହାରିଛି ।

ଲୁଗା ଗଣ୍ଠି ପାର୍ଶଲଗୁଡ଼ା ମାଲଗୋଦାମରେ ପଡ଼ିଛି । ଡେରି କଲେ ଡ଼ିମରେଜ୍ ପଡ଼ିବ । ପାଖରେ ମୋଟେ ତିନି ହଜାର ଟଙ୍କା ଅଛି । ଆଉରି ପ୍ରାୟ ତିନି ହଜାର ଟଙ୍କା ଦରକାର । ମାଲଗୁଡ଼ା ଆଜି ଛଡ଼ାଇ ନ ପାରିଲେ ବୃଥାରେ ଜୋରିମାନା ଦେବାକୁ ହେବ । ଗୋଦାମରୁ ଷ୍ଟକ୍ ସରିଆସିଲାଣି । ମୋଫସଲ୍ ବେପାରୀଙ୍କୁ ପୂରା ମାଲ ଯୋଗାଇ ହେଉନାହିଁ ।

ମୋ ପାଖରେ ଏତେ ଟଙ୍କା ନାହିଁ । ହଜାରେ ପାଖପାଖି ଅଛି । ବ୍ୟାଙ୍କ୍ ବ୍ୟାଲାନ୍ସ ଦୁଇ ହଜାର ଭିତରେ । ସବୁଯାକ ଖରଚ କରି ପାର୍ଶଲ ଉଠାଇ ଆଣିଲେ କେସ୍ ଚଳିବ କିପରି ? ଦୁଇ ଚାରି ଦିନ ଯାଉ । ଡ଼ିମରେଜ୍ ପଡ଼ିଲେ ପଡ଼ିବ, ଆଉ କଣ କରିବା ?

ବୃଥା ଅର୍ଥ ଦଣ୍ଡ !

ସୁନନ୍ଦ ଚମକିଉଠିଲା । ସତେ ତ, ବୃଥା ଅର୍ଥ ଦଣ୍ଡ । ଏପରି କେବେ ହୋଇନାହିଁ । ହାତେ ମାପି ସେ ବ୍ୟବସାୟରେ ଗୋଡ଼ ଆସିଛି । ବେପାରୀ ଜୀବନରେ ଧାର ଉଧାର ଲାଗି ରହିଥାଏ । ତେବେ, ଏପରି ଅପ୍ରସ୍ତୁତ କେବେ ସେ ହୋଇନାହିଁ । କେତେ ଲୋକଙ୍କୁ ଧାର ମାଗିଛି । ସେମାନେ ପ୍ରକାରାନ୍ତରରେ ମନା କରିଦେଇଛନ୍ତି । କାହିଁକି ସେମାନେ ମନା କରୁଛନ୍ତି, ତାର ସୂଚନା ସେ ପାଇପାରିଛି ।

ନିର୍ବୋଧ ଶିଶୁଟି ଦୋଷ କରି ନିଃସହାୟ ଲୋଚନରେ ଦଣ୍ଡହସ୍ତ ଶିକ୍ଷକର ମୁହଁକୁ ଚାହିଁଲା ପରି ସେ ରାଜୀବଲୋଚନର ମୁହଁକୁ ଖଣେ ଚାହିଁ ରହିଲା । ଏଇତାର ସାନ ଭାଇ, ଦିନେ ଦୁର୍ଦ୍ଦାନ୍ତ ଥିଲା । ଏବେ ସେ ଭଲ ହୋଇଗଲାଣି । ଦୁର୍ବଳ ଦେହ । ମୁଣ୍ଡରୁ କେଶ ଖସିଯାଉଛି, କପାଳ ଉପରେ ଟଙ୍କା ଅଙ୍କୁଡ଼ିର ଚନ୍ଦା ବଡ଼ ଜଣ । ଆଠ ଦଶ ଦିନରେ ଥରେ ଖିଅର ହୁଏ । ଦାଢ଼ି ବଢିଛି । ଆଖି ପଶିଯାଇଛି । ଦେହରେ ଫଙ୍ଗା ଜାମା, କାନ୍ଧ ଉପରେ ଫଟା ।

ବୟସରେ ତେଡ଼ି ବରଷ ସାନ ହେଲେ ମଧ୍ୟ ଦଶ ବରଷ ସୁନନ୍ଦଠୁଁ ବଡ଼ ପରି ସେ ଦିଶେ ରାଜୀବଲୋଚନ । ଦିନରାତି ପରିଶ୍ରମ କରେ । କଥା କହିଲେ ପାଣିରେ ପକାଏ ମଚ । ସୁନନ୍ଦ ପାଖରେ ଅଳପ ସେ କହେ, ଯେତିକି କହେ ତାର ମୂଲ୍ୟ ଅଛି । ସୁନନ୍ଦ କେବଳ ତାର ବଡ଼ ଭାଇ ନୁହେଁ, ସେ ତାର ଗୁରୁ, ଅନ୍ନ ଦାତା, ତାର ଭବିଷ୍ୟତ । ଦରମା ନେଇ ସେ କାମ କରେ ନାହିଁ । ହିସାବ ଦେଖାଇବାକୁ କଣ ଗୋଟାଏ ଦରମା

ଖାତାରେ ଚଢ଼େ । ତାର ଯନ୍ତ୍ରା ସେପଟେ ନେଡ଼ା, ସୁନନ୍ଦ ଆପେ ଦଏ । କଅଣ ତାର ଆବଶ୍ୟକ, ସୁନନ୍ଦ ଜାଣେ ।

ରାଜୀବଲୋଚନ ତଳକୁ ଅନାଇ ବାକ୍ୟବାଣ ହାଣିଲା, ଆମର ବର୍ତ୍ତମାନ ଅସୁବିଧା ହେଲ ପଡ଼ୁଛୁ, ଅତନୁବାବୁଙ୍କୁ ଟଙ୍କା ମାଗିଲେ ସେ ବୋଧହୁଏ ଦେଇପାରନ୍ତେ ।

ସୁନନ୍ଦ ଚମକି ଉଠିଲା । ସେ ଜାଣେ, ରାଜୀବଲୋଚନଙ୍କୁ କିଛି ଲୁଚେଇ ହେବ ନାହିଁ । ଜବରଦସ୍ତ ଜାତବା ମଣିଷ ସେ । ନଡ଼ିଆର କେଉଁ ଖିଅରେ ପାଣି ପଶେ ସେ ଠିକ୍ ଠଉରେଇପାରେ । ଅତନୁବାବୁ ହାତଉଧାର ସ୍ୱରୂପ କେତେ ଟଙ୍କା ତା'ଠାରୁ ନେଇଛନ୍ତି ଏକା ତାହା ଛଡ଼ା ଅନ୍ୟମାନଙ୍କ ଅଗୋଚର । କିନ୍ତୁ, ରାଜୀବଙ୍କୁ ସେ ଜଣାଇ ନ ଥିଲେ ମଧ୍ୟ ରାଜୀବ କଡ଼ାବରକଡ଼ା ହିସାବ ରଖିଥିବ । ସେ ଦକ୍ଷତା ତାର ଅଛି । କେବେ କାହାକୁ ସେ କଣ ଉପହାର ଦେଇଥିଲା ତାର ମୂଲ୍ୟ ଅତନୁବାବୁଙ୍କ ହିସାବରେ ଯୋଗ ନ କରିଥିଲେ ରକ୍ଷା ।

କହିଲା, ଅତନୁବାବୁ ନିଜେ ଟଙ୍କା ଖୋଜି ବୁଲୁଛନ୍ତି । ସିନେମା ଘର ତାଙ୍କର ତୋଳା ସରିଛି । ବୋଧହୁଏ କାଲି ତାଙ୍କର ପ୍ରଥମ ଶୋ ଆରମ୍ଭ । ଶିକ୍ଷା ମନ୍ତ୍ରୀ 'ଶୋ' ଖୋଲିବେ । ସିନେମା ଚାଲୁ ହୋଇଗଲେ ସେ ଟଙ୍କା ସୁଝିପାରିବେ । ତା ଆଗରୁ ତାଙ୍କୁ ମାଗିଲେ ସେ ଦେଇପାରିବେ ନାହିଁ ।

ବିନା ଲେଖାପଢ଼ିରେ ଦୁଇ ହଜାର ସାତଶ ଟଙ୍କା !

ଏଁ, ଏତେ ?

ଆପଣ ହିସାବ ରଖିନାହାନ୍ତି ?

ରଖିଛି ଦେଖିନାହିଁ ।

ଦେଖନ୍ତୁ । ମୋର ମୋଟାମୋଟି ହିସାବରେ ଏତିକି ଆସିଲା । ସୁଧ ହିସାବ କଲେ ଆହୁରି ଅଧିକ ହେବ । ଆପଣ ମତେ ହିସାବଟା କହିଲେ ସୁଧମୂଳ କଷି ମୁଁ କହିଦେବି ।

ଦରକାର ନାହିଁ । ସେ ସୁବିଧା ଦେଖି ଦଲେ ଦେଇଦେବେ । ତାଙ୍କର ସିନେମା ଚାଲୁହେଉ ଆଗ । ଭଦ୍ରଲୋକ— ।

ସିନେମାଘର ଅତନୁବାବୁଙ୍କର ନୁହେଁ । ସେ କେବଳ ମ୍ୟାନେଜର । ଯାହା ଖରଚ ହୋଇଛି, ବା ହେଉଛି, ସେଥିପାଇଁ ସେ ମାଲିକଠାରୁ ଟଙ୍କା ଆଣୁଛନ୍ତି ।

ସୁନନ୍ଦ ନୂଆ କଥା ଶୁଣି ଥକ୍କା ହୋଇ ବସିପଡ଼ିଲା ।

କିଏ ସେ ମାଲିକ ?

ନିଜେ ଠୂନ୍-ଠୂନ୍-ଓ୍ୱାଲା । କାଲି ତାଙ୍କର ବଡ଼ ପୁଅ ଆସି ଅଚଳୁବାବୁଙ୍କର ବାକିଆ ହିସାବ ସଫା କରିଦେଇ ଯାଇଛନ୍ତି । ନଗଦ ଦଶ ହଜାର ! ଆଜି ମାଗିଲେ ଆମର ସେ ଟଙ୍କା ଦେଇପାରନ୍ତେ ।

ଅଚଳୁବାବୁ ମ୍ୟାନେଜର ?

ଏ କଥା ସେ ଲୁଚେଇଛନ୍ତି ।

କାହିଁକି ?

ସେ ଭଦ୍ରଲୋକ ! ରାଜାର ପୁଅ, ଚାକିରି କରୁଛି କହିଲେ ଅସମ୍ମାନ ହେବ । ଠୂନ୍ ଠୂନ୍‌ବାବୁ ଓ ଅଚଳୁ ବାବୁଙ୍କ ଭିତରେ ସର୍ତ୍ତ ହୋଇଛି, ଠୂନ୍-ଠୂନ୍ ସବୁ ଖରଚ ଦେବେ, ଅଚଳୁ ମ୍ୟାନେଜ୍ କରିବେ । କାର୍ଯ୍ୟ ଆରମ୍ଭ ହେଲା ଦିନରୁ ସିନେମା ଚାଲୁ ହେଲାଦିନ ଯାଏଁ ଅଚଳୁବାବୁ ପାଞ୍ଚ ଶହ ଟଙ୍କା ମାସିକ ବେତନ ପାଇବେ । ଚାଲୁ ହେଲାଦିନୁ ସେ ହେବେ ଓ୍ୱାର୍କିଂପାର୍ଟନର୍ । ସବୁ ଖରଚ, ଟଙ୍କାର ସୁଧ ଇତ୍ୟାଦି ଯାଇ ନିଟ୍ ଲାଭର ସତୁରି ଭାଗ ଠୂନ-ଠୂନ୍‌ଓ୍ୱାଲାଙ୍କର ଓ ଶତକଡ଼ା ତିରିଶି ଅଚଳୁବାବୁଙ୍କର । ଅଚଳୁବାବୁଙ୍କର ଅଂଶ ମାସିକ ପାଞ୍ଚଶରୁ ଯଦି କମେ ଠୂନ୍-ଠୂନ୍-ଓ୍ୱାଲା ସେତକ ନିଜ ଅଂଶରୁ ଦେବେ ।

ଟେଲିଫୋନ୍ ସଙ୍କେତ ହେଲା, କିଏ ଡାକୁଛି ।

ସୁନନ୍ଦ କାନରେ ରିସିଭର୍ ଲଗାଇ ମୁହୂର୍ତ୍ତେ ଶୁଣିଲା । କହିଲା, ଟିକିଏ ରହନ୍ତୁ । ମୁହଁ ପାଖରୁ ରିସିଭର୍ ହଟେଇ ଧରି ସୁନନ୍ଦ କହିଲା ରାଜୀବଙ୍କୁ, ଟଙ୍କା ପାଇଁ ଏତେ ଚିନ୍ତା କରିବା ଦରକାର ନାହିଁ, ଡିମରେଜ ପଡ଼ିଲେ ଦିଆଯିବ । ରୁ ଯା ।

ପ୍ରତିବାଦ ନ କରି ରାଜୀବଲୋଚନ ସୁନନ୍ଦ ପାଖରୁ ଚାଲିଗଲା ।

ହିମାନୀ ନୁହନ୍ତି, ରୁହିନା କହୁଛନ୍ତି ।

ଏତେ ସକାଳୁ ପିଲା ଦିଅଟିଙ୍କୁ ଚାକର ପାଖରେ ବସାରେ ଛାଡ଼ି ରୁହିନା ଅଚଳୁବାବୁଙ୍କ ସଙ୍ଗେ ନୂଆ ସିନେମାଘରକୁ ଚାଲିଆସିଛନ୍ତି । ସେଇଠୁ ସେ ସୁସମ୍ବାଦ ଜଣାଇଦେଉଛନ୍ତି ! ନିଜ ବସାଘରେ ଟେଲିଫୋନ୍ ଲାଗିନାହିଁ ।

ସୁସମ୍ବାଦ !

ଆଜି ନୂଆ ସିନେମା ଖୋଲିବ । ମନ୍ତ୍ରୀ ଉଦ୍‌ଘାଟନ କରିବେ । ଦେଶରେ ଯେତେ ଗଣ୍ୟମାନ୍ୟ ଲୋକ ଆଗରୁ ନିମନ୍ତ୍ରିତ ହୋଇଥିଲେ । ସୁନନ୍ଦ ପର ନୁହେଁ । ଫର୍ମାଲିଟି ଦେଖାଇବାକୁ ନିମନ୍ତ୍ରଣ ଚିଠାଉ ଖଣ୍ଡେ ତାଙ୍କୁ ପଠା ହୋଇନାହିଁ । ତେଣୁ ରୁହିନା ନିମନ୍ତ୍ରଣ କରୁଛନ୍ତି । ଆଜି ସନ୍ଧ୍ୟାରେ ସେ ଯେପରି ଅନ୍ୟ କୁଆଡ଼େ ନ ଯାଆନ୍ତି, ସେଥିପାଇଁ ରୁହିନା ସାବଧାନ କରିଦେଉଛନ୍ତି । ଅଚଳୁବାବୁ କାର୍ଯ୍ୟବ୍ୟସ୍ତ । ଆୟୋଜନ

କରିବାରେ ଲାଗିପଡ଼ିଛନ୍ତି । ମନ୍ତ୍ରୀ, ଆସିବେ, ବଡ଼ ବଡ଼ ସରକାରୀ କର୍ମଚାରୀମାନେ ଆସିବେ । ଆହୁରି କେତେ ମାନ୍ୟଗଣ୍ୟ ଲୋକ, ନାରୀ ଓ ପୁରୁଷ ।

ସୁସମ୍ବାଦ !

ହିମାନୀ ଦେବୀ ରାତି ଏକ୍‌ସପ୍ରେସ୍‌ରେ କଲିକତା ଚାଲିଗଲେ । ସେଇଠୁ ସେ ଯିବେ ଭାଗଲପୁର । ଅନନ୍ତର କଥା, ତାଙ୍କର ସ୍ୱାମୀ, ଶାଶୂ, ଶ୍ୱଶୁର ଓ ପିଲା ଛଅଟି ଭାଗଲପୁରରେ ଅଛନ୍ତି । ଖବର ପାଇ ଅତନୁବାବୁ ପତ୍ର ଲେଖିଥିଲେ । ତାଙ୍କର ସ୍ୱାମୀ ଅସୀମବାବୁ ନିଜେ ଆସି ସନ୍ଧ୍ୟା ଗାଡ଼ିରେ ପହଞ୍ଚିଲେ । ସେ ଭାଗଲପୁରରେ ବେପାର କରୁଛନ୍ତି । ଯେତେ ଅନୁରୋଧ କଲେ ବି ରାତିଟିଏ ମଧ୍ୟ ରହିବାକୁ ସେ ରାଜି ହେଲେ ନାହିଁ । ତାଙ୍କର ମା ରୋଗରେ ପଡ଼ିଛନ୍ତି । ସତୀସାଧ୍ୱୀ କୁଳବଧୂର ମୁହଁ ଦେଖି, ଶେଷ ବେଳରେ ତା'ର ହାତରୁ ଗଙ୍ଗାଜଳ ଗ୍ରହଣରେ ଦେଲେ ବୁଢ଼ୀ ମୁକ୍ତିଲାଭ କରିବେ । ସେଥିପାଇଁ ମାତୃଭକ୍ତ ପୁତ୍ର ଅସୀମବାବୁଙ୍କର ଅଧୀରତା ।

ନିଜେ ହିମାନୀ ଦେବୀ, ପିଲା ଛଅଟିଙ୍କର ସମ୍ବାଦ ପାଇ ସେମାନଙ୍କୁ ଦେଖିବାକୁ ବ୍ୟାକୁଳ ହୋଇପଡ଼ିଲେ । ଉଡ଼ିଯିବାର ଶକ୍ତି ଥିଲେ ସେ ଅବଶ୍ୟ ଉଡ଼ିଯାଇଥାନ୍ତେ । ରେଲଗାଡ଼ିରେ ଚଢି ଗାଡ଼ି ଛାଡ଼ିବା ଆଗରୁ ସେ ମତେ ଭୂନି ଭୂନି କହିଲେ, ସୁନନ୍ଦବାବୁଙ୍କୁ ନମସ୍କାର ଜଣାଇ କହିଦେବୁ ଭଉଣୀ, ଯିବା ଆଗରୁ ଦେଖା ହୋଇ-ପାରିଲା ନାହିଁ, କ୍ଷମା କରିବେ । ତାଙ୍କର ସ୍ନେହ ଭୁଲିପାରିବି ନାହିଁ । ସେ ନିଶ୍ଚୟ ଉଡ଼ା ଚଢ଼େଇଟାକୁ ଭୁଲିଯିବେ; କିନ୍ତୁ ତାଙ୍କ ସ୍ନେହର ସ୍ମୃତି ମୁଁ ସାଥିରେ ଧରି ଯାଉଛି ।

ଗାଡ଼ି ଛାଡ଼ିଲା । ମୁଁ ତରତର ହୋଇ ପ୍ଲାଟଫର୍ମ ଉପରକୁ ଓହ୍ଲାଇଲି । କଥା ରହିଗଲା ଅଧା ।

ସେ କାଲି ଚାଲିଗଲେ ସୁନନ୍ଦବାବୁ, ଆଜି ମନ ଭଲ ଲାଗୁନାହିଁ । ପିଲା ଦୁଇଟାଙ୍କୁ ଘରେ ଛାଡ଼ିଦେଇ ସିନେମା ଘରକୁ ମୁଁ ଆସିଛି । ମୁଁ ଏବେ ଘରକୁ ଫେରୁଛି । ଆପଣ ଆଜି ନିଶ୍ଚୟ ଆସିବେ ।

ଯିଭ ।

ହଁ, ନମସ୍କାର ।

ରିସିଭର ଥୋଇଦେଇ ସୁନନ୍ଦ ଥକ୍‌କା ହୋଇ ଟେଲିଫୋନ୍ ଯନ୍ତ୍ରକୁ ଚାହିଁ-ରହିଲା । ବିଚିତ୍ର କଥା । ଭୂହିନା କେବେ ଏତେ କଥା କହନ୍ତି ନାହିଁ । ହିମାନୀ ଚାଲିଯାଇଛନ୍ତି, ସେଥିପାଇଁ ତାଙ୍କର ଦୁଃଖ ନାହିଁ, ବରଂ ଆନନ୍ଦରେ ସେ ଅଧୀରା ।

କାହିଁକି ?

ସୁନନ୍ଦ ଜାଣେ, ଅତନୁବାବୁଙ୍କ ସଙ୍ଗେ ହସଖୁସିରେ ହିମାଂଶୁ କଥାଭାଷା ହେଲେ ଉତ୍ତରା ସବୁ କାମ ଛାଡ଼ି ବାଆଁରେଇ ହୋଇ ପାଖକୁ ଆସନ୍ତି । କେଉଁ କାମର ଆଉ ଦେଖେଇ ଅନ୍ୟ ଆଡ଼େ ଡାକି ନେଇଯାଆନ୍ତି । ହିସାବ ଖାତା ଖୋଲି ଦେଖାନ୍ତି । ସୁନନ୍ଦ ସଙ୍ଗେ ହସଖୁସିରେ ଗଳ୍ପ କରିବାକୁ ହିମାଂଶୁଙ୍କୁ ପ୍ରଶସ୍ତ ଦିଅନ୍ତି ।

ସେଥିପାଇଁ ବଡ଼ମାମାଙ୍କୁ ସୁ-ସମ୍ବାଦଟା ଜଣାଇଦେଲେ । ପରିହାସ କରି କହିଲେ, ତାଙ୍କର ସ୍ନେହର ସୁନନ୍ଦ ସେ ସାଥିରେ ଧରି ଯାଉଛି ।

ସୁନନ୍ଦ ?

ସୁନନ୍ଦର ଦେହ ଝିମେଇ ଉଠିଲା ।

ସେ କାନ୍ଥଆଡ଼କୁ ଚାହିଁଲା । କାନ୍ଥରେ ଝୁଲି ହୋଇଥିବା ହିମାଂଶୁଙ୍କ ସ୍ତ୍ରୀର ବନ୍ଧାପଟ ଫଟୋଟି ପବନରେ ଓଲଟି ପଡୁଛି । ସଫେଦ୍ କାନ୍ଥ ଉପରେ ଝୁଲୁଛି ଚକ୍‌କଣ ସଫେଦ୍ କାଗଜ ଖଣ୍ଡେ । ଗାରଟିଏ ବି ସେଥିରେ ପଡ଼ିନାହିଁ । ଟେବୁଲ ଉପରେ ଗୃହଲକ୍ଷ୍ମୀ ନନ୍ଦକାର ଫଟୋ ହସି ହସି ଡାକି ଯାଉଛି, ତମେ ଆସ, ଦିନକ ପାଇଁ ହେଲେ ଆସ ।

ସେଇ ଫଟୋଟି ଆଡ଼କୁ ଚାହିଁବାକୁ ସାହସ ହେଉ ନାହିଁ । ନିଜକୁ ସେ ଅପରାଧୀ ମଣୁଛି ।

ରାଜୀବଲୋଚନ ପୁଣି ପଚାରିଲା ।

ଓକିଲ ଘରକୁ ଯିବେ ନାହିଁ ?

ହଁ ବି ଚାଲ୍ । ଅତନୁବାବୁଙ୍କୁ ନୋଟିସ୍ ଦେବାକୁ ହେବ ।

ଟଙ୍କା ପାଇଁ ?

ହଁ, ମୂଳ ଓ ସୁଧ ଅସୁଲ ପାଇଁ ।

ଯେଉଁମାନେ ପଛେ ଶୁଣି ଉପରେ ଲଗାଇ ଗୁପ୍ତ କଥା ଭୁଲି ଭୁଲି ପ୍ରଚାର କରୁଥିଲେ, ସେଇମାନେ ଓଲଟି କହିବାକୁ ଲାଗିଲେ, ମଧେଇ ମା, ଲୋକଙ୍କର ଢଙ୍ଗ, ପବନରେ ଗଣ୍ଠି ପକାଇବେ । କାହା ନାମରେ କଅଣ କହୁଥିଲେ କି 'ସୁନନ୍ଦ ପରା ପିଲା, ପର ଦରବକୁ ସେ କଣେଇ ଚାହେଁ ନାହିଁ··· ।

ପାଞ୍ଚଟି ଦିନ ସେ ଗାଆଁରେ କଟାଇସାରିଛି । କଟକ ବା କଟକର ବେପାରରୁ ସେ ଦୂରେଇ ରହିପାରିଛି । ଟେଲିଫୋନ୍ ବେଲ୍ ବାଜି ବାଜି ହତାଶ ହୋଇଥିବ । ଡ୍ରମରେଜ୍ ଓ କେସ୍ କଥା ରାଜୀବଲୋଚନ ବୁଝୁଥିବ । ନୋଟିସ ନ ଦେଇ ଅତନୁବାବୁଙ୍କ

ପାଖକୁ ଚଉଠିଖଣ୍ଡେ ଲେଖି ରାଜୀବ ଜମା ଦେଇଆସିଛି । ଯେ କଥା ଆଉ ସେ ଖବରୁନାହିଁ । ଘର ଓ ଗାଆଁର ଆଉ ପାଞ୍ଚଜଣଙ୍କର ଭଲମନ୍ଦ ବୁଝିବାରେ ବେଳ କଟାଉଛି ।

ସୁନନ୍ଦର ହାତ ଖୋଲିଛି । ଗରିବ, ଅଭାବଗ୍ରସ୍ତ, ଯିଏ ଯାହା ମାଗୁଛି, ପାଉଛି । ସ୍କୁଲର ଅଭାବ ଥିଲା ଛାତ୍ରାବାସ । ସେତକ ନ ହେଲେ ଦୂର ଗାଆଁର ପିଲାଏ ପଢ଼ିପାରୁ-ନାହାନ୍ତି । ନୂଆ ହାଇସ୍କୁଲ, ଉଠେଇପାରୁନାହିଁ । ଛାତ୍ରାବାସ ପାଇଁ ପାଞ୍ଚ ହଜାର ଟଙ୍କାର ପ୍ରତିଶ୍ରୁତି । ନଗଦ ଏକ ହଜାର ଟଙ୍କାର ଦାନ । ହଷ୍ଟେଲ ହେବ ମାଆଙ୍କ ନାମରେ, 'ଅଭୟାଶ୍ରମ' । କେଡ଼େ ଖୁସିରେ ନନ୍ଦନା ଟଙ୍କା କାଢ଼ି ଦେଇଛି ।

କେବଳ ରାଜୀବର ସ୍ତ୍ରୀ ପିଲାଙ୍କ ପାଇଁ ନୁହେଁ, ସବୁ ଭାଇଙ୍କର ପିଲାମାନଙ୍କ ପାଇଁ ସ୍ୱଜନମାନଙ୍କ ପାଇଁ ଶୀତଲୁଗାର ଆୟୋଜନ କରିଛି ସୁନନ୍ଦ । ତାଲିକା ନେଇ ଚେଧିଆ ସହର କଟକ ଧାଇଁଥିଲା । ରାଜୀବଲୋଚନ ହିସାବ ପ୍ରକାରେ ବଡ଼ ଗଣ୍ଠିଟିଏ ପଠାଇଦେଲା । ନନ୍ଦିକା ନିଜେ ଯାଇ ଘର ଘର ବୁଲି ସେମାନଙ୍କୁ ପିନ୍ଧାଇ ଆସିଛି । ସ୍ନେହ, ଆଦର, କଲ୍ୟାଣ ଘେନି ଫେରିଛି । କାହାର ପଦଧୂଳି, କାହାର ପିଠି ଆଉଁସା, କାହାର ବାଙ୍କିଲି ମୁହଁର ମନଫୁଲକା ହସ, ପୁଣି ଭୁଲଭାଟେକା ପରିହାସ ନେଇ ଆନନ୍ଦରେ , ଗର୍ବରେ ସେ ବାହୁଡ଼ିଛି ।

ସୁମିତ୍ରା ମୁଣ୍ଡ ବାନ୍ଧିଦେଉଛି । ମଥାର କେଶ ତଳେ ଲୋଟିବ ବୋଲି ନନ୍ଦିକାକୁ ବସାଇଛି ଷ୍ଟୁଲ୍ ଉପରେ । ଆଗରେ, ଟେବୁଲ ଉପରେ ବଡ଼ ଆଇନା । ବେଳ ବୁଡ଼ିନାହିଁ, ରତରତ ।

ସ୍ମିତହସି ସୁମିତ୍ରା କହିଲା, ମୁଣ୍ଡ ହଲନା, ଅପା !

ଦର୍ପଣରେ କାହାର ଛାଇ ପଡ଼ିଲା ଦେଖିଲୁ ?

ଇଲୋ ମାଆଲୋ, ସାଆନ୍ତେ ବୁଲିଯାଉଛନ୍ତି ।

ଠିକ୍ ହୋଇଛି, ଆଜି ହାରୁଡ଼େ ପଡ଼ିଲୁ ।

ମଲି ନାହିଁ ଯାହା । ମୁଣ୍ଡବନ୍ଧାରେ ନଜର, ଓଢ଼ଣା ଖସି ପଡ଼ିଥିଲା । ହଁ, ସାଆନ୍ତୁ, ପିଲା ସାଆନ୍ତ ତ ! ଶୁଣ ମ ଅପା, ତମ ଦିଅରଙ୍କ ଉପରେ ମୁଁ ରାଗିଛି । ଆସନ୍ତୁ ଏଥର, ପଚାରିବି କେମିତି ସେ କହୁଥିଲେ, ସାଆନ୍ତେ ସବୁବେଳେ କାହାର ପିଲା ଦିଓଟିଙ୍କୁ ସାଙ୍ଗରେ ଧରି ବୁଲୁଛନ୍ତି, ଆଉ ତାଙ୍କର ମାଉସୀ, ବେଳ ନାହିଁ, ଅବେଳ ନାହିଁ, ତୁମ ଘରକୁ ଆଉଚ ; ସାଆନ୍ତଙ୍କ ସଙ୍ଗେ ହସଖୁସିରେ ଗପ କରୁଚ ।

ଏଇଆ ସେ କହୁଥିଲେ ?

ପଚାରିବ ଯେ, ତାଙ୍କ ସତଆପଣ ମୁଁ ଏଥର ଜାଣୁଛି, ରହ । ମୋ ପାଖରେ ମିଛ କହିବାର···

ମିଛ ବୋଲି କେମିତି ଜାଣିଲୁ ?

ମୁଁ ଅନ୍ଧ ନୁହେଁ, କି କାଲ ନୁହେଁ ।

ନିଜେ ପାପ ମାରି ଦେଇ ପର ଲୋକରେ ଲମ୍ଭାଇବାକୁ ରାଜୀବ କହୁଥିବେ ? ମଣିଷେ ସବୁବେଳେ ସତ କହନ୍ତି ନାହିଁ । ସେଥିପାଇଁ ତାଙ୍କୁ ଏ ସବୁ କଥା ନ ପଚାରିବା ଭଲ । ବେହିଆପଣ କରି ପଚାରିଲେ, ସେ ଯେଉଁ ଜବାବ ଦେବେ ସେଥିରେ ବିଶ୍ୱାସ କରିବା ତୁଚ୍ଛା ଓଲମି ।

ସାଆନ୍ତଙ୍କୁ ପଚାରି ନା ?

ମିଛ ଗପ ଶୁଣିବାକୁ ? କିଏ କଅଣ କରୁଛି, ସେଥିରୁ ଆମକୁ କଣ ମିଳିବ ? ରାଜୀବ ତମକୁ ପରିହାସ କରି କହୁଥିବେ । ତାଙ୍କର କଥା ଶୁଣିଲ କାହିଁକି ?

ସୁମିତ୍ରାର ହାତ ଅଟକିଗଲା ମୁହୂର୍ତ୍ତେ । ଦର୍ପଣ ଉପରେ ନଜର ପଡ଼ିଲା । ପାଖାପାଖି ଦୁଇଟି ମୁହଁ, ଗୋଟିଏ ଯୌବନ ଢଳଢଳ, ସତେକି ଡୋଳିରୁ ଓହ୍ଲାଇ ଆସିଛି । ଆରଟି, ସତେକି କେଉଁ କାଳର ଧୋକଡ଼ୀ ବୁଢ଼ୀ । ପାଞ୍ଚଟି ପିଲାର ମା ।

ସେଇ ମୁହଁଟାକୁ ସହାନୁଭୂତିଭରା ଆଖିରେ ଚାହିଁରହିଛି ନନ୍ଦିକା । ତା'ର ଆଖି ଦୁଇଟା ଆଉଥରେ କହିଉଠୁଛି, ନିଜେ ପାପ ମାରି ପର ଗଳାରେ ପକାଇବାକୁ ସେ କହୁଥିବେ । କିଏ କହିପାରିବ ପୁରୁଷ ପିଲାଙ୍କ ଢଙ୍ଗ ? ସେମାନେ ଖାଲି ସଜ ସୁନ୍ଦର ରଙ୍ଗିଲା ଗୋଲାପ ଚାହାନ୍ତି ପରା ! ଏ ତ ଶୁଖିଲା, ମଉଳା, ପୁରୁଣା ଫୁଲ । କେଜାଣି, ନନ୍ଦିକା ଅପାଙ୍କ କଥା ସତ ହୋଇଥିବ !

ଅପା ମ'

କଅଣ ?

ସାଆନ୍ତେ କଅଣ କହୁଥିଲେ ?

କି କଥା ?

ଯାହା କହିଲ ।

ନନ୍ଦିକା ହସିଉଠିଲା । କହିଲା, ସତ ହେଲେ ବି ମୋ ଆଗରେ ସାନ ସାଇଁଟା ନାମରେ କହିବେ ? ମୁହଁକୁ ଲାଜ ନାହିଁ ? ମୁଁ ଅନୁମାନ କରି କହିଲି ନା !

ପଚାରିବ ?

ରାଜୀବଙ୍କ ଉପରେ ତୁମର ବିଶ୍ୱାସ ନାହିଁ ?

ଏ ଗାଆଁକୁ ଆସିବା ପରେ ତାଙ୍କ ନାମରେ ବାର କଥା ଶୁଣିଥିଲି । ସେ କୁଆଡ଼େ ଭଲ ପିଲା ନ ଥିଲେ । ସେ କୁଆଡ଼େ ଚଗଲା ଥିଲେ । କଟକ ସହରର ବଡ଼ ଖରାପ ସହର । ମୁଁ, ଦେଖନ୍ତ, ଦରବୁଢ଼ୀ ହେଲିଣି ।

ତମ ସାନ ପୁଅ ମୁନା ପରା ସାନ ମନ୍ତିଆ ହେବାକୁ ଯାଉଛି ?

ସେଇଟା ମୋ ରୋଗ ।

ତାଙ୍କୁ ସେ କଥା କହିବ ?

ହଁ ।

ତେବେ, କହିବ ନାହିଁ, କି ପଚାରିବ ନାହିଁ ।

ସୁମିତ୍ରା ଚୁପ୍ ରହିଲା । ମୁହଁଟି ତାର ମଉଳିଗଲା । କାହାକୁ କହିବ ମନର କଥା ? ମଣିଷଙ୍କର ଯୋଗ ଯେ ମାଇପଙ୍କର ରୋଗ । କାହା ସଇଲେ ବେଦମୁହଁ ପୋଡ଼ା ।

ସଞ୍ଜ ଆଗରୁ ସୁମିତ୍ରା ଘରକୁ ଫେରିଲା । ସଙ୍ଗରେ କନ୍ଦ ଥାଏ । ସାନ ପିଲାକୁ ଘରେ ଗୁଡ଼ି ସୁମିତ୍ରା ଏତେବେଳଯାଏ ନନ୍ଦିକା ପାଖରେ ଅଟକି ସାଇଥିଲା । ସେ କଥା ତାର ମନେ ପଡ଼ିଲା ଅଧା ବାଟରେ । ଭୁଲିଗଲା ମନକୁ କେତେ ଅଡ଼ୁ ଯୋଗାଣିଆଣି ଆକଟ କରିଲା ବଡ଼ ପାଟିରେ, ହୁଁ, ମୋର କି ଥାଏ ? ଅସି ଦରବୁଢ଼ୀ ହେଲି ପାଞ୍ଚଟାର ମା ।

ଭଅଣ କି ଖାଉଛ ?

କିଛି ନାହିଁ । ପିଲାପିଚିକା ନ ହେଲା ଯାଏ ମାଇପି ଜନମ ରେରସ୍ତ ଆଡ଼କୁ ଚକେଇ ରହେ । ମନ କହେ, ହଁ, ଏଇ ମୋର ସର୍ବସ୍ୱ, ଏଇ ମୋର ଗଡମୁକ୍ତ । ଯାହା କୋଳରେ ଦଇବ ପିଲା ଦକଟେ ଦେଇଛି, ସେ କାହିଁକି ଆଉ କାହାର ଛିଦ୍ର ଖୋଜି ବୁଲିବ ?

କାହା କଥା କହୁଛ ?

ମୋ ନିଜ କଥା । ସେ କୁଆଡ଼େ କଟକରେ କେଉଁ ଦୋସ୍ତରୁଣୀକୁ ସୁଖ ପାଉଛନ୍ତି । ମୋର କି ଥାଏ ? ଏଥର ଫେରିଯାଅ ଗୋ କନ୍ଦ, ଆମ ଘର ପାଖେଇ ଆସିଲା । ହେଇଟି, ପିଲାଟାର କାନ୍ଦଣା ଶୁଭୁଛି । ଅଝଟ ହେଉଛି । ଅପାଙ୍କୁ ବହୁତ ବହୁତ କହିବ ।

କହିବାକୁ ଏତେବେଳଯାଏ କନ୍ଦର ମନେ ନ ଥିଲା । ଶାଶୁଙ୍କର ଗୋଡ଼ଘଷା ପାଇଟି ଶେଷ କରି ରାତି ଅଧରେ ନନ୍ଦିକା ଫେରିଲା ଶୋଇବା ଘରକୁ । କନ୍ଦ ଚୁପ୍ ଚୁପ୍ କହିଲା, କାହାଠୁଁ କଅଣ ଶୁଣି ସୁମିତ୍ରା ଖାଉକି ଅଭିମାନ କରିଛନ୍ତି ସର୍ବଜିତ ଉପରେ ।

ନନ୍ଦିକାର ମନ କହୁଥିଲା, ସମସ୍ତେ ସମାନ, ଟୋକା ଦରବୁଢ଼ୀ, ସୁନ୍ଦରୀ ଅସୁନ୍ଦରୀ, ଧନୀ ଓ ଦରିଦ୍ର । ପାଞ୍ଚ ପିଲାର ମା ହେଉ କି ସପନରେ ଶାଲର ଧାରଣା କରି ନ ଥାଉ, ମାଗିପି ଜନମ ସମସ୍ତେ ସମାନ । ମିଛ ସତ ବୁଝିବାକୁ ଧୈର୍ଯ୍ୟ ନ ଥାଏ । ପରେ କଅଣ କେଉଁଠୁ ଶୁଣିଲେ ମନ ଚକା ଚକା ଭଉଁରୀ ଖେଳେ । ଭଲ ହେଉଚ, ସୁମିତ୍ରା ଅଭିମାନ କରିଚ ।

ସେ ବା ଅଭିମାନ କରିବ ?

ନନ୍ଦିକା ପଲଙ୍କ ଆଡ଼କୁ ଚାହିଁ ମନେ ମନେ ହସି ଉଠିଲା । କବାଟ କାଢ଼ିଲା । ଆଲୁଅ ଲେଉଟିଲା । ସୁନନ୍ଦ ଶୋଇପଡ଼ିଛି । ସତକୁ ସତ ନିଦ ହୋଇଛି । ଛଳନା ନୁହେଁ । ମଶାବି ପଡ଼ିନାହିଁ । ମୁହଁରେ କେଇଟି ମଶା ବସି ରକତ ଶୋଷୁଛନ୍ତି । ମୁହଁ ଛଡ଼ା ଦେହସାରା ଖଣ୍ଡେ ଧୋବଲା ଆଲୁଆନ୍‌ରେ ଆବୃତ ।

ପାଖରେ ଠିଆ ହୋଇ ନନ୍ଦିକା ମଶା ହୁରୁଡେଇଲା । ହସି ଉଠିଲା । କିନ୍ତୁ ନିଜ କର୍ତ୍ତବ୍ୟରେ ତ୍ରୁଟି କରି ନାହିଁ । ଖଟ ଦାଣ୍ଡରେ ମାଳମାଳ ଝୁଲିଛି ଗେଣ୍ଡୁ ଫୁଲର ମାଳା । ଟେବୁଲ ପାଖରେ ସେହିପରି ଗୋଲାପ । ଚଉଠି ରାତିରେ ସେତିକି ସେ ଦେଖିଥିଲା, ଅନୁଭବ କରିଥିଲା ବାସିଲା ଫୁଲର ମହକ । ସେତିକି ସେ ମନେ ରଖିଛି ।

ବାସିଫୁଲର ଫୁଲ ଫୁଲ ମନ ସମ୍ଭ୍ରମ କରିବାକୁ ପ୍ରୟୋଜନ ହୁଏ ନାହିଁ । ଯେଉଁଠି ସେ ଚାଙ୍ଗା ହୋଇଥାଏ, ସେଇଠି । ସବୁ ଫୁଲର ସୌନ୍ଦର୍ଯ୍ୟ ଆସି ଠୁଳ ହୋଇଛି ଏଇ ଶୋଇଲା ମୁହଁରେ । ସତ୍ୟ ଯୌବନ ଏଇ ନିଶ୍ୱାସରେ । ସମୁଦ୍ରର ଲହଡ଼ି ପରି ମମତା ମାଡ଼ିଆସେ, ପ୍ରଫୁଲ୍ଲ ହୋଇ ଫେରିଯାଏ ଆହୁରି ଥରେ ଧାଇଁଆସିବାକୁ ।

ଏଇ ଫୁଲଟି ସବୁବେଳେ ଫୁଟି ରହିଛି ତାର ଅନ୍ତର ଭିତରେ, ସୁନ୍ଦର, ଅମଳିନ, ସତେଜ । ଏହାରି ସୌରଭ ସେ ଅନୁଭବ କରେ । ସାତ ବରଷ ସାତ ମୁହୂର୍ତ୍ତ ପରି ଲାଗୁନାହିଁ । ସମସ୍ତ ଅଟକି ରହିଛି ।

ଏଇ ତାର ପହିଲି ମଧୁଯାମିନୀ । ଏବେ ବି ସେଦିନ ପରି ତାର ଦେହରେ ଓ ମନରେ ଛୁଟିଛି ପୁଲକର ପ୍ରବାହ । ମନ ହେଉଛି, ଯେଉଁ ମୁହଁଟି ତାର, କେବଳ ତାଆରି, ସେଇ ମୁହଁରେ ସେ ଓଠ ଲଗାଇଦେବ । ସରଗର ମଧୁ ସମସ୍ତି ଆଉଜେଇଦେବ, ଢାଳିଦେବ ।

ନଇଁଆସିଲା ମୁହଁଟି ଅଟକିଗଲା ଲାଜରେ । ସୁନନ୍ଦର ନିଶ୍ୱାସ ବାଜୁଛି ତାର ଲାଜରା ମୁହଁରେ । କାଳେ ସେ ଆଖି ଖୋଲିବେ, କଅଣ ଭାବିବେ ? ଆଉ କେହି ଦେଖୁନାହିଁ ତ ?

ନନ୍ଦିକା ମୁହଁ ଟେକିଲା, ଚାହିଁଲା ଘରଆଡ଼କୁ । କବାଟ ଝରକା ଖୋଲା ନାହିଁ, କେବଳ ଲଣ୍ଠନ ଆଲୁଅ ଡବ ଡବ କରି ଅନେଇଛି । ବଡ଼ ଆଇନା ଭିତରୁ ନନ୍ଦିକା ଚାହିଁରହିଛି ନନ୍ଦିକା ଆଡ଼କୁ । ତାକୁ ହିଁ ତାର ଲାଜ । ଆଲୁଅ ଲିଭା, ନନ୍ଦିକା ଛପୁ ନନ୍ଦିକା ଭିତରେ ।

ନାଇଁକା ?

ମଶାରି ପକାଉଥିଲି ।

ଅନ୍ଧାର ଭଲ ଯେ !

ଆଲୁଅରେ ନିଦ ହେବ ନାହିଁ ।

ମୋ ନିଦ ଭାଙ୍ଗିଲା ଯେ ?

ନାଇଁକା ନିରୁତ୍ତର ।

ଘରେ ପାଞ୍ଚଟି ଦିନ କଟାଇ ସୁନନ୍ଦ ପୁଣି କର୍ମଭୂମି କଟକକୁ ଫେରି ଆସିଲା । ସବୁ କାମ ନିର୍ବିଘ୍ନରେ ଚାଲିଛି । କିଛି ଅଟକି ରହିନାହିଁ ତା ପାଇଁ । ରାଜବଳ୍ଲୋଚନ ଥିଲେ ତାଆର ଚିନ୍ତା କଅଣ ?

ସେହି ଆସି ପ୍ରଥମେ ସୁସମ୍ବାଦ ଜଣାଇଲା, ଚିଠି ଖଣ୍ଡି ଖୋଲି ଅତନୁବାବୁ କହିଲେ, ହଁ, ତାଙ୍କର ଯେତେ ଟଙ୍କା ମୋ ଉପରେ ଅଛି, ହିସାବପତ୍ର କରି ମୁଁ ପରେ ପଠାଇଦେବି । ହତାଶ ହୋଇ ମୁଁ ଫେରିଆସିଲି । ଦୁଇ ତିନି ଘଣ୍ଟା ପରେ ତାଙ୍କ ସ୍ତ୍ରୀ ନିଜେ ଆସି ପାଞ୍ଚ ହଜାର ଟଙ୍କା ଦେଇଗଲେ ।

ନିଜେ ଆସିଥିଲେ ?

ହଁ ।

ଏତେ ଟଙ୍କା ପାଉଣା ?

ଶୁଣିବା ଲୋକର ହିସାବ ଯଦି ଭୁଲ ହୁଏ, ପରିମାଣ କମେ ସିନା,ବଢ଼େ ନାହିଁ ।

ସୁନନ୍ଦ ଚୁପ୍ ରହିଲା ।

କେତେଦିନ ହେଲା ମନ ଗୋଳେଇ ହେଉଛି, ଅତନୁବାବୁଙ୍କ ଘରକୁ ଯାଇ ମଳୟ ଓ ଛବଳାଙ୍କୁ ଦେଖିଆସିବ । ଯାଇପାରୁନାହିଁ । ମନକୁ ମନ ଲଜ୍ଜିତ ହୋଇ ରହୁଛି । ସ୍ଥିର କରିପାରୁ ନାହିଁ, କାହିଁକି ରୁହିନା ନିଜେ ଆସି ଟଙ୍କା ଦେଇଗଲେ । ଅତନୁବାବୁଙ୍କୁ ଯେତେ ଥର ସେ ହାତଉଧାର ଦେଇଛି, ସବୁ ମିଶାଇଲେ ଏତେ ଟଙ୍କା ହେବ ନାହିଁ ।

ରୁହିନା ଓ ଅତନୁବାବୁ ତା'ଠାରୁ ସବୁ ସମ୍ପର୍କ ତୁଟାଇଦେବାକୁ ଚାହାନ୍ତି ? ଯିବ ଥରେ ତାଙ୍କ ଘରକୁ ? ପିଲା ଦିଓଟିଙ୍କୁ ଦେଖିଆସିବ ? ପଚାରିବ ରୁହିନାଙ୍କୁ ?

ଯାଇପାରିଲା ନାହିଁ ।

ସେମାନେ ମଧ୍ୟ କେହି ଆସିଲେ ନାହିଁ । କେତେ ଥର ସେ ସିନେମା ଦେଖିବା ଆଗରେ ଜସ୍ବନ୍ତଙ୍କ ଘରକୁ ଯାଇଛି । ଅତନୁବାବୁଙ୍କ ସଙ୍ଗେ ଦେଖା ହୋଇପାରିଲା

ନାହିଁ । ଦେଖା କରିବାକୁ ତାର ଆତ୍ମସମ୍ମାନ ଅବା ଗ୍ଲାନି ଭିତରେ କେଉଁ ଛପିକି ଲାଜ ବାରଣ କରୁଛି ।

ମନେପଡ଼ୁଛନ୍ତି ପରଘରର ପିଲା ଚଉଠି !

କାହିଁକି ଏ ଦୁର୍ବଳତା ? ନିଜର ପିଲା ନାହାନ୍ତି ତ ଦାଣ୍ଡକୁ ବାହାରିଲେ କେତେ ଦୁର୍ବଳ, ଅନାଥ, ଶୋକଲା ପିଲା ଆଖିରେ ପଡ଼ନ୍ତି । ସେମାନେ ବି ସୁନ୍ଦର, ସରଳ, ଭଲପାଇବାର ସାମଗ୍ରୀଗୁଡ଼ିଏ । ସେମାନଙ୍କୁ ସ୍ନେହ କଲେ, ସେମାନଙ୍କର ଯତ୍ନ ନେଲେ, ସେମାନେ ବି ମଲସ୍ପ ଓ ଛବିଲାଙ୍କଠୁ ବଳିବେ, କୋଳ କାଖ ହେବାକୁ ହାତ ବଢ଼ାଇବେ ।

ସୁନନ୍ଦ ପିଲାରଙ୍କୁଣୀ ହୋଇଛି । ପର ପିଲାକୁ ସ୍ନେହ କରୁଛି । ଆହା ଉଦ୍ଧ ଚନ୍ଦ୍ର ତୁଣ୍ଡରେ ନୁହେଁ, ଦେବାନେବା ଓ ଉପରେ ପଡ଼ି ସେବା । ସ୍ନେହର ମାତ୍ରା ଅତ୍ୟଧିକ ହୋଇଛି ବନବନ୍ଦେଚନର ପିଲାଙ୍କ ଉପରେ । ସେମାନଙ୍କର ଅଭାବ ସେ ରଖିଦେଉନାହିଁ । ଗ୍ରାମକୁ ଆସିଲେ ରାଜାବର ପିଲାମାନଙ୍କ ପାଇଁ ଲୁଗା, ଜାମା, ବହି ସେ ଆଣେ । ନିଜେ ଯାଇ ଦେଇଆସେ । କାଖ କରି ସାନ ସାନ ପିଲା ଚଉଠିଙ୍କୁ ଘରକୁ ଆଣେ ।

ଭୁନୁ, ମୁନୁ, ସୁନୁ, ଗୁନୁ—ସେମାନଙ୍କର ଡାକ ନାମ । ଡାକୁ ଡାକୁ ସୁନନ୍ଦ ଭୁଲ କରେ । ସେମାନେ ହସନ୍ତି ।

ଅଜସ୍ର ଚକ୍ରଚକ୍ଷୁଲ ଟ୍ରେନାନ୍ତି । ସୁନନ୍ଦକୁ କିଛି କହନ୍ତି ନାହିଁ । ଭୁନୁ ମୁନୁଙ୍କ ପ୍ରତି ମନରେ ବୈରଭାବ ଜାତ ହୁଏ ।

ମନ କହେ ମନକୁ, ଶେଷକୁ ଏଇଆ ହେବ ? ଶଙ୍କର ପିଲାରୁ ଗୋଟିଏ ହେବ ଏ ଘରର ପ୍ରଭୁ ? ତାଅରି ହାତରୁ ଅଧାର ଖାଇବାକୁ ସେପୁରରୁ ସେ ଓ ସୁନନ୍ଦର ବାପା ଉଡ଼ିଆସିବେ ?

କାହିଁକି ଶାଶୂ ଏବେ ଏପରି ଅବୁଝା ହେଲେଣି ? ସବୁକଥାରେ ନା-ନା ନା । ଭଲକରି ମୁଠିଏ ଖାଉନାହାନ୍ତି । ଭଲ ଲୁଗା ଖଣ୍ଡେ ପିନ୍ଧୁନାହାନ୍ତି । ପୁରାଣ ଶୁଣିବାକୁ ଯାହାଙ୍କର ଏତେ ଆଗ୍ରହ, ସେ ପୁଣି କହୁଛନ୍ତି, ଥାଉ । ହସଖୁସିରେ ପଦେ ଭଲ କଥାରେ ଚିଡ଼ିଉଠୁଛନ୍ତି । ଗୋଡ଼ରେ ହାତ ଦେଲେ ସେ ଗୋଡ଼ ଟାଣିନେଉଛନ୍ତି । ତୁଣ୍ଡରେ ଖାଲି ନା-ନା--ନା ରବ । ଗ୍ରୀବାଚଳନ ଓ ଢଙ୍ଗରେ ମଧ୍ୟ ମୁଣ୍ଡହଲା ନା-ନା-ନା- ଶବ୍ଦ ।

ସେ ଦୁର୍ବଳ ହୋଇପଡ଼ିଲେଣି । ମ୍ରେ ପୀଡ଼ିତ ?

ନନ୍ଦିକା ଗୋଡ଼ରେ ହାତ ଦେଲା । ରାତି ନଅଟା । ଫଗୁଣ ମାସ । ଶୀତ କମି-ଆସିଲାଣି । ବାହାରେ ଅନ୍ଧାର । ଘର ଭିତରେ ଆଲୁଅ ଜଳୁଛି । ଜନ ନଲଟଣ ଝଗ ଏଘରୁ ସେଘର ହୋଇ ଜନକପଟକ ସନାଡ଼ି ଘରେ ଶିକୁଳି ଦେଉଛି ।

ଦୁଇଦିନ ହେଲା ସୁନନ୍ଦ ଆସିଛନ୍ତି । କାଲି ସେ କଟକ ଫେରି ଯିବେ ବୋଲି କହିସାରିଲେଣି, ହେଉ ପଛେ ରବିଦିନ । ଜରୁରୀ କାମ ଅଛି । ସେ ଆଉ ଘରେ ବସି କଅଣ ପଢ଼ୁଛନ୍ତି । କେଜାଣି, ନନ୍ଦିକାକୁ ଅପେକ୍ଷା କରି ବସିଛନ୍ତି । ସଂସାର କଲେ କେତେ ଦୁଃଖ ସୁଖ ପଡ଼ିବ ।

ଭନ୍ନ ଘନତର ହେଉଛି ।

ନନ୍ଦିକା ଶାଶୁଙ୍କର ଗୋଡ଼ ଚିପୁଛି । ନିଦ ହେଲେ ଆଲୁଅ କମାଇ, କବାଟ ଆଉଜାଇ ସେ ଚାଲିଯିବ ।

ଅଭସ୍ୱା ଶିହରି ଉଠିଲେ । ଗୋଡ଼ ଟାଣିନେଲେ, ସତେକି ସେ ସପନ ଦେଖିଲେ । ମୁଣ୍ଡ ଟେକି କଣେଇଁ ଚାହିଁଲେ ନନ୍ଦିକାକୁ । ଦୃଷ୍ଟି ଫେରାଇ ପୁଣି ମୁଣ୍ଡ ଥୋଇଲେ ତକିଆ ଉପରେ ।

ବୋଉ !

ଉଁ ।

ଚମକି ଉଠିଲ କାହିଁକି, ସପନ ଦେଖିଲ ?

ହଁ, ସେପୁରର ସପନ, ଏପାଖ ସଂସାର ଆଉ ମତେ ଭଲ ଲାଗୁନାହିଁ, ମା !

ତମେ ଦୁର୍ବଳ ହୋଇପଡ଼ିଲଣି ବୋଉ ! ତାଙ୍କ ସଙ୍ଗରେ କିଛି ଦିନ ପାଇଁ କଟକ ଯାଅ । ମନ ଫେରିବ, ଭଲ ଚିକିତ୍ସା ହେବ ।

ଗଲେ ଏକାଥରେ ମଶାଣିକୁ ଯିବ ସିନା, ଆଉ କେଣେ ଯିବ ନାହିଁ ।

ଏପରି କାହିଁକି କହୁଛ ?

କେତେ ଜେରା କରୁଛ ମ, ଯାଉନ ଶୋଇବ ।

ନନ୍ଦିକା ତୁନି ରହିଲା । ଦେହସହା ହେଲାଣି । ଯିଏ ଦିନେ କୋଳରେ ବସାଇ, ପିଠି ଆଉଁସି, ତୁଣ୍ଡରେ ଖଣ୍ଡିଖିଆସା ଦେଇ ଗେହ୍ଲେଇ କହୁଥିଲେ, ମୋ ରାଣୀ, ଏଇ-ଅରକ ଢୋକ ଦେ, ସେଇ ଶାଶୁ ସେ । ତାଙ୍କ କଥାକୁ ଛଳ କରିବ ?

ସୁଡ଼ ଅଟକାଇ ଦୀର୍ଘଶ୍ୱାସ ଛୁଟିଲା । ଆଖିରୁ ଲୋତକ ଗଡ଼ିଲା । ବଢ଼ିରହି, ତାଙ୍କର ପାଦରେ ମୁଣ୍ଡ ରଖି ରାତି କାଟିବ ।

ହଁ, ସେଇଥା ସେ କରିବ । କୋପ କରି ଗୋଡ଼ରେ ଆଡ଼େଇଦେଲେ ମଧ୍ୟ ସେ ଛଳ କରିବ ନାହିଁ । ଆଉ ଘରେ ସ୍ୱାମୀ ଅନେଇଁ ବସିଛନ୍ତି । ଗପ କରିବେ । ନନ୍ଦିକା ଶୁଣିବ, ହୁଁ କହିବ । ଯାହା ସେ କହିବେ, ସବୁ ସତ ବୋଲି ମାନିନେବାକୁ ହେବ । କେଉଁ କଥା ମନକୁ ନ ଆସିଲେ ନନ୍ଦିକା ହୁଁ କହେ ନାହିଁ, ଖାଲି ହସିଉଠେ । ସେଇ ହସରୁ ସେ ବୁଝନ୍ତି । କଥାର ସୁଅ ବଦଳାନ୍ତି ।

ଆଜି ସେ ଭିନ୍ନ ହୋଇ ବସିଥିବେ । ନିଦ ମାଡ଼ିଲେ ବଳେ ଶୋଇପଡ଼ିବେ । ନନ୍ଦିକା ଆଜି ଶାଶୁଙ୍କ ପାଖରୁ ଯିବ ନାହିଁ, ଜଗି ବସିଥିବ ।

କି ଗୋ, ଯାଉନ ଶୋଇବ । ତୁଙ୍କା ପରି ବସିରହିଛ କାହିଁକି ?

ମୁଁ ଏଇଠି ଶୋଇବ ।

ନନ୍ଦିକା ଅଭସ୍ୱାଙ୍କର ପାଦ ଉପରେ ମୁଣ୍ଡ ରଖି ପଲଙ୍କ ଉପରେ ଲେଟିପଡ଼ିଲା । କୋହ ସମ୍ଭାଳି ନ ପାରି କହି କହି ହୋଇ କାନ୍ଦି ଉଠିଲା । ଓଠ ଫୁଲିଲା ।

ଅଭସ୍ୱା ଚମକିଲେ । ମୁହୂର୍ତ୍ତେ ଅପେକ୍ଷା କରି ସେ କହିଲେ, ଏ ସବୁ ଡଙ୍ଗ ମତେ ଭଲ ଲାଗୁନାହିଁ ବୋହୂ ! ରାତି ଅଧରେ ଆଖିରୁ ଲୁହ ଝରାଅ ନାହିଁ । ତମେ ଏଠାଥ କହୁଚ, ଅବାଧ୍ୟ ହୁଅନା ।

ନନ୍ଦିକା କୋହ ଗିଳି ଉଠି ବସିଲା । ଭଙ୍ଗା ସ୍ୱରରେ ପଚାରିଲା, ମୁଁ କି ଦୋଷ କରିଛି, ବୋଉ ?

ଅଭସ୍ୱା ହସିଲା କଣ୍ଠରେ କହିଲେ, ଦୋଷଗୁଣରୁ ମତେ କଅଣ ମିଳିବ ? ଯାହାକୁ ମାତା ଭଲପାଉଚ, କର । ହେଲେ, ମୁଁ ବଞ୍ଚିଥିବାଯାଏ ଭଗାରି ଘରର ପିଲା ଏ ଘରକୁ ପୁଅ ହୋଇ ଆସିବ ନାହିଁ । ମୁଁ ଆଜି ମରେ, ସେଇଠୁ ତମେ ରାଜାବାର ପୁଅକୁ ଏ ଘରକୁ ଆଣିବ ! ନଇଲେ ଯେଉଁଦିନ ତାକୁ ଆଣିବ ସେଇଦିନ, ହଁ କହିଦେଉଛି, ସେଇଦିନ… ।

ଅଭସ୍ୱା ବାକ୍ୟଟି ଶେଷ କଲେ ନାହିଁ । ବିଜୁଳିର ଚମକ ପରି ତାଙ୍କର କଥା ନନ୍ଦିକାର ଦେହରେ ଶିହରଣ ଖେଳାଇଲା । ସେ ବୁଝିପାରିଲା, ସ୍ୱାମୀଙ୍କର ପର ପିଲାଙ୍କ ପ୍ରତି ସ୍ନେହ ଶାଶୁଙ୍କ ମନରେ ହତାଶାର ପ୍ରଭାବ ପକାଇଛି । କିନ୍ତୁ ସେଥିପାଇଁ ସେ କାହିଁକି ଦାୟୀ ହେବ ? ସ୍ୱାମୀ ଯଦି ରାଜାବାଲେକଟନର କେଉଁ ପୁଅକୁ ପୋଷ୍ୟପୁତ୍ର କରିବାକୁ ଚାହାନ୍ତି, ନନ୍ଦିକା ବାଧା ଦେଇପାରିବ ନାହିଁ । ତାର ମତାମତ ଲୋଡ଼ିଲେ ସେ ମନା କରିପାରିବ ନାହିଁ ।

ବୋଉ, କଥାଟିଏ କହିବାକୁ ମୋର ସାହସ ହେଉ ନାହିଁ ।

ଅଭସ୍ୱା ନୀରବ ।

ବୋଉ, ତମେ ଆଉ ଗୋଟିଏ ବୋହୂ ଏ ଘରକୁ ଆଣ ।

କହି ହୋଇଗଲା । କହିବାକୁ ତାର ମନ ତାକୁ ଇଙ୍ଗିତ ଦେଇ ନ ଥିଲା । ଅସ୍ମା କେବେ ଅଲୋଡ଼ା ଯାଆଁଟିଏ ଲୋଡ଼ିନାହିଁ । ମାତୃତ୍ୱର କାମନା ଲୋଡ଼ିଥିଲା ସନ୍ତାନଟିଏ, ଯାହାକୁ ସେ ଦେହରୁ ସମ୍ଭୂତ କରିବ । ନିଜର ରକ୍ତ, ମାଂସ ଅସ୍ଥି, ଦେଇ ଗଢ଼ିବ ।

ଦେବତାମାନେ ସେ ସୁଯୋଗ ତାକୁ ଦେଲେ ନାହିଁ । ଦେବେ ବି ନାହିଁ । ସେଇମାନେ ଆଜି କୁଟ କରିଛନ୍ତି । ତାର ଅଜାଣତରେ ତୁଣ୍ଡରୁ ଖସାଇଛନ୍ତି ସେଇ ବଚନ, ଯାହାର ଭାବନା କେବେହେଁ ତାକୁ ସପନରେ କନ୍ଦାଇଛି, ଯୋଗଶୋକୁଳଙ୍କୁ ଆତ୍ମହତ୍ୟା କରିବାକୁ ବାଧ୍ୟ କରାଇ ନେଇଛି ।

ସନ୍ତରୁଣୀ !

ନିହିଦେଇଗଲା ଅଲୋଡ଼ା ଅସମ୍ଭବ ପ୍ରସ୍ତାବ । ସେ ଶୁଣିପାରିନାହାନ୍ତି । ଭଲ ହୋଇଛି । ନନ୍ଦିନୀ ସତର୍କ ହୋଇଛି । ଆଉ ଥରେ ସେ ତୁଣ୍ଡରେ ଧରିବ ନାହିଁ । ନିଜର ବେକରେ ନିଜେ ସେ ଛୁରୀ ଲଗାଇବ ନାହିଁ । ବରଂ ପୋଷ୍ୟପୁତ୍ର ଭଲ । ତା ପାଖରେ ଦାଣ୍ଡର ପିଲ ବା ସନ୍ତରୁଣୀର ପିଲା ଭିତରେ ପ୍ରଭେଦ ରହିବ ନାହିଁ, କିନ୍ତୁ ଶାଶୁଙ୍କ ଆଖିରେ, ସ୍ୱାମୀଙ୍କ ମନରେ ଓ ଦୁନିଆର ଲୋକଙ୍କ ଦୃଷ୍ଟିରେ ?

ଅଭୟା କଡ଼ ଲେଉଟାଇଲେ । ନନ୍ଦିନୀର କଥା ତାଙ୍କ ମନରେ ଭେଦିଛି, ଭେଦେ ଯେପରି ଦେହର ମାଂସରେ ଧାରୁଆ ଛୁରୀ । କାଟିହୁଏ, ରକ୍ତର ଧାର ଗଡ଼େ, ପୋଡ଼ିଉଠେ ଖଣକ ପରେ । ସେଇ ଖଣକର ନିରଳସ ଭାବ । ଖଣକ କଟିଛି । ରକତର ଧାର ଆଖିରେ ଗଡ଼ୁଛି । କଟା ଘା ପୋଡ଼ିଉଠିଛି । ଆଉ ସହି ହେଉ ନାହିଁ ।

ସେ ଉଠି ବସିଲେ । ଅସ୍ତବ୍ୟସ୍ତ ଭାବ । ଝଟମଟ କରି ନନ୍ଦିନୀକୁ ଚାହିଁଲେ । ମୁହଁଟି ତାର ମଉଳ ଦିଶୁଛି । ଆଖିରେ ଛଳଛଳ ହେଉଛି ଲୁହ । ସେ ତେବେ ମନର କଥା କହିନାହିଁ ? ଯାହା ସେ କରାଇଦେବ ନାହିଁ, ସେଇଥି ସେ କହିଛି ମନ ବଢ଼ିବାକୁ ? କଟା ଘା ଆରେ ଲୁଣ ଛିଟା ? ମନ ଅ.କୁଳ ହେବାରୁ ନିଜର ଅସାବଧାନତାରେ ତାହା ଆଗରେ 'ସେ ନିଜେ ଏଇ ଭାବନା ଥରେ ଅଧେ ମୁହଁ ଖୋଲି କହିଦେଇଥିଲେ, ନନ୍ଦିନୀ ଖବର ପାଇଛି ?'

ପରିହାସ କରୁଛ, ବୋଉ ?

ନନ୍ଦିନୀ ଚମକିଉଠିଲା । ମୁଣ୍ଡ ହଲାଇ କହିଲା, ମୋ ମନର କାମନା ମୁଁ କହିଲି, ବୋଉ ! ମୋର ଭାଗ୍ୟ ପୋଡ଼ା ବୋଲି ମୁଁ କାହିଁକି ଅନ୍ୟମାନଙ୍କର ସୁଖ, ଆନନ୍ଦରେ ବାଧା ଦେବି ? ସେ ପର ପିଲାଙ୍କୁ ସ୍ନେହଶ୍ରଦ୍ଧା କଲେ ମୁଁ ମନା କରିପାରିବି ନାହିଁ । ତାଙ୍କ ପରପିଲାକୁ ଘୃଣା କଲେ ମୁଁ ବାଧା ଦେଇପାରି ନାହିଁ । କାହିଁକି ପର ପିଲା ଏ ଘରକୁ ଆସିବ ? ମୋ ସ୍ୱାମୀଙ୍କୁ ମୋର ସାନ ଭଉଣୀଟିଏ

ଯଦି ଅସେ, ଭଗବାନ ଯଦି ତା କୋଳରେ ପିଲା ବକଟେ ଦିଅନ୍ତି ସେ କି ଆଉ ପରପିଲା ହେବ ନାହିଁ ? ସେ ହେବ ଘରର ପିଲା ।

ସୁନନ୍ଦ ରାଜି ହେଲେ ତ ?

ତାଙ୍କୁ ରାଜି ହେବାକୁ ପଡ଼ିବ ।

ଏ କି କଥା କହୁଛ ନନ୍ଦିକା ?

ପ୍ରଥମେ ଯେଉଁଦିନ ତମର ହସିଲା ମୁହଁରୁ ଏ ପ୍ରସ୍ତାବ ମୁଁ ଶୁଣିଲି, ଭାବିଲି, ତମେ କାହାଠାରୁ କ'ଣ ଶୁଣି ପରିହାସ କରୁଛ । ତମର କଥା ମୋ କାନରେ ପଶି ବାହାରିଯାଇଥିଲା । ଆଉ ଥରେ ସେଇ କଥା ତମେ ପୁଣି କହିଲ । ମୋ କାନରେ ଭେଦିଲା । ତମ ପାଖରୁ ବିଦାୟ ନେଇ ଗଲା ପରେ ଫେରିଲା ବେଳରେ ତମର ସେଇ କଥାଗୁଡ଼ାକ ସଚେତନ କାନରୁ ବାହାରି ଜୀବନ ପାଇ ଉଠିଲା । ତମର ଗମ୍ଭୀର ମୁହଁ ମୋର ଆଖି ଆଗରେ ଉଭା ହେଲା ।

କେତେ ଦିନ ଯାଏ ମୁଁ ଛଟପଟ ହୋଇଛି । ତମ ଉପହାସିଆ ପ୍ରସ୍ତାବ ପଛରେ କି ଘଟଣା ଛପି ରହିଚି ଜାଣିବାକୁ ମୁଁ ଉଦ୍‌ବିଗ୍ନ ହୋଇଉଠିଲି । ସେଇଥି ତମକୁ ପଚାରିବି ବୋଲି କେତେ ଜରୁରୀ କାମ ଛାଡ଼ି ମୁଁ ଧାଇଁଆସିଥିଲି । ପଚାରିବାକୁ ସାହସ ହେଉ ନ ଥିଲା । ତମେ ଆଗ ବଳପଡ଼ି ସେ କଥା କହିଲ । ଏଥର ମୁଁ ବୁଝିପାରିଛି । ଆଉ କହନା ।

ସୁନନ୍ଦର ଗମ୍ଭୀର ମୁହଁରେ ହସ । ସେ କଟମଟ କରି ଅନାଇଁ ରହିଛି ନନ୍ଦିକାକୁ ।

ବେଳ ଦୁଇ ପ୍ରହର ।

ବାହାରେ ଫଗୁଣର ନରମ ଖରା । ଝରକା ବାଟେ ଶ୍ୱେତ ମଳୟର ମୃଦୁ ପ୍ରବାହ । ତଥାପି, ନନ୍ଦିକାର ଦେହ ଝାଳେଇ ଉଠିଛି । କପାଳରେ ସ୍ୱେଦବିନ୍ଦୁ । ଚନ୍ଦ୍ର ପ୍ରତିମାର ମୁହଁରେ ଫପୁଣ ଚନ୍ଦ୍ରିକାର ହସ ଖେଳିଲା ପରି ନନ୍ଦିକାର ମୁହଁରେ କୃତ୍ରିମ ସ୍ମିତ ଲାଗିରହିଛି । ସେ ପାଖକୁ ଆସିନାହିଁ । ଟେବୁଲ ପାଖରେ ଠିଆ ହୋଇଛି, ଟେବୁଲକୁ ଆଉଜି । କି ଦୁଃଖ ତା ମନଭିତରେ ଆଉଟି ହେଉଛି ସତେ ? କିଏ ଏଥିକି ଦାୟୀ ?

ସୁନନ୍ଦ ଝରକା ବାଟେ ପଦାକୁ ଚାହିଁଲା ନିମିଷେ, ଦୃଷ୍ଟି ଫେରାଇଲା ତାଙ୍କ ଆଡ଼କୁ । କେହି କୁଆଡ଼େ ନାହିଁ । କାହାର ତୁଣ୍ଡ ଶୁଭୁନାହିଁ । ନିଃଶବ୍ଦତା ଏତେ ଭୟଙ୍କର ! ସହି ହେଉନାହିଁ । ଆଖି ପୁଣି ଲାଖି ରହିଲା ନନ୍ଦିକା ଉପରେ ।

ସେ କହୁଛି ଠିକ, ଏମିତି ଗ୍ଧି ହେଉଛ କାହିଁକି ?

ଦେଖୁଛି, କିଏ ଆମର ସୁଖର ସଂସାରରେ ନିଆଁ ଜଳାଇବାକୁ ଚେଷ୍ଟା କରୁଛି । କିଏ ଆମର ଅମୃତଭାଣ୍ଡରେ ବିଷକଣିକା ଆଣି ପକାଇଛି । ଦେଖୁଛି ଓ ଭାବୁଛି ।

ଆରେ, ସେ କିଏ ଏଣୁତେଣୁ ଭାବୁଛନ୍ତି ? ଅନୁମାନ ନ କରି କେଉଁ ନିସ୍ୱାର୍ଥ, ନିର୍ଦ୍ଦୋଷ ଲୋକଟି ଉପରେ ନେଇ ସନ୍ଦେହର ବୋଝ ଲଦିଦେଉଥିବେ । ନା, ତାଙ୍କୁ ଏପରି ଅଯଥା ଭାବିବାକୁ ସେ ସୁବିଧା ଦେବ ନାହିଁ । କାହାରି ଯଦି ଦୋଷ ହୋଇଥାଏ, ସେ ଦୋଷ ନିଜେ ସେ ମୁଣ୍ଡକୁ ନେବ ।

ନନ୍ଦିକା ସୁନନ୍ଦର ପାଖକୁ ଆସିଲା । ପଲଙ୍କ ଆଗରେ ଠିଆ ହୋଇ ହସି ହସି । ସୁନନ୍ଦର ମୁଣ୍ଡର ଅସଜଡ଼ା କେଶ ସାଉଁଳି କଅଁଳେଇ କହିଲା, ଭାବିଲ ? ମନର କଥା ତୁମ ଆଗରେ କହିବ ନାହିଁ ତ ଆଉ କାହାକୁ କହିବ ? ମତେ ଏକୁଟିଆ ରହିବାକୁ ଭଲ ଲାଗୁନାହିଁ । ସତେକି ମନରୁ ଗୋଟାଏ ଭୂତ ପଦାକୁ ବାହାରି ମତେ ମାରି ଗୋଡ଼ାଉଛି । ମୋର ଗୋଟିଏ ସାଥୀ ଲୋଡ଼ା । ସେ ହେବ ମୋର ଝିଅ, ମୋର ସାନଭଉଣୀ, ପୁଣି ମୋର ସାଥୀ ।

ଆଉ ଶତ୍ରୁ ?

ହୋଇପାରିବ ନାହିଁ । ତାକୁ ମୁଁ କୋଳରେ ଥାନ ଦେବି । ତା ପାଖରେ ମୁଁ ନିଜକୁ ସମର୍ପିଦେବି । ସଉତୁଣୀର ଧାରଣା ତା ମନରେ ମୁଁ ଅଣେଇଁ ଦେଲେ ତ ?

କେଉଁ ଉପନ୍ୟାସରୁ ଗୃଣପଦ ମୁଖସ୍ଥ କରି ପୁନରାବୃତ୍ତି କଲାପରି ଲାଗୁଛି । କଲବଜାର ସଙ୍ଗୀତ ପରି ମନେ ହେଉଛି । ସେତିକି ଆଉ । ଆଉ କହନା ।

ମନର ବାସନା ଖୋଲି କହିବ ନାହିଁ ?

ନନ୍ଦିକା ସୁନନ୍ଦର ମୁହଁରୁ ଦୃଷ୍ଟି ଫେରେଇନେଲା । ଅଣ ଉଠିଲା ଗ୍ଧ ଉତ୍ତର । ସତ ସେ କହୁଛି ? ମନର କଥା ? ସ୍ୱାମୀ ଦେବତାଙ୍କର ଆଗରେ ଠିଆ ହୋଇ ମୁଣ୍ଡର କେଶ ସାଉଁଳୁଣୁ ସେ ମିଛ କହୁଛି । ପ୍ରତାରଣା କରୁଛି । କହିଦେବ କି ସତ କଥାଟି, ତୁମ ବୋଉଙ୍କର ଆଉ ଧୈର୍ଯ୍ୟ ନାହିଁ । ସେ ନାତିର ମୁହଁ ଦେଖିବାକୁ ବ୍ୟାକୁଳ । ସେଇ ନାତିଟି ହୋଇଥିବ ତମର ରକ୍ତମାଂସରୁ ଉଦ୍ଭବ !

ନନ୍ଦିକା ସୁନନ୍ଦର ମୁଣ୍ଡରୁ ଅଚଳ ହାତ ଓହ୍ଲାଇଲା । ଭାବିଲା, କହିଦେବ ସତ କଥାଟି, ନିର୍ମଳ ପାଦ ଦିଓଟିରେ ମୁଣ୍ଡ ରଖି ସେ ସ୍ୱୀକାର କରିବ, ସେ ଆଉ କାହାର ସନ୍ତାନର ମୁହଁରେ ବୋକ ଦେବାକୁ ଚାହେଁ ନାହିଁ । ସୁନନ୍ଦର ସନ୍ତାନ ଅନ୍ୟ କାହାର ପେଟରୁ ଜନମିବ ଏକଥା ସେ ଚାହେଁ ନାହିଁ । ସହିବ ବା କିପରି ?

ଉମୁଲ କାଣ୍ଡ ଘଟିବ । ବୋଉ ଆଶା କର ଗୁହିଁରହିଛନ୍ତି, ନନ୍ଦିକା ଅବଶ୍ୟ ସୁନନ୍ଦାକୁ ପ୍ରବର୍ତ୍ତାଇପାରେ । ଦେ ଅଇ କୋଟିଏ ଝିଅର ହାତ ଧାରବାକୁ ମାଗିବ । ସେ ନାତ ମୁହଁ ଦେଖିବେ । ଆନନ୍ଦରେ ଆଖି ବୁଜବେ । ସ୍ୱର୍ଗପୁରକୁ ଯିବେ ।

ସିଧା ସଳଖ କେବେ ସେ ପଚ୍ଚର ନାହାନ୍ତି । ତାଙ୍କର ଚଡ଼୍ଢ଼ୋଲ ଢ଼ଙ୍ଗରୁ ତାଙ୍କ ମନର କଥା ପ୍ରକାଶ ପାଉଛି । ଯେଉଁ ବୋହୁକୁ ଦଣ୍ଡେ ନ ଦେଖିଲେ ଦନେ ସେ ଲୁଆଖାଇ ବଲେଇ ପର ହେଉଥିଲେ, ସେ ପୁଣି ପାଖକୁ ଗଲେ ପଗ୍ଚର ଉଠୁଛନ୍ତି, କଅଣ ଗୋ ?

ଏଇ ତାର ଜୀବନସର୍ବସ୍ୱ ।

ଆଗରେ ନବୋଧ ପର ବସିଛନ୍ତି । କଅଣ ସେ ବୁଝୁଛନ୍ତି ତାଙ୍କୁ ହିଁ ଜଣା । ପିଲାଟୁଆ କଥା ଆଜଯାଏ ମନରେ ତାଙ୍କର ଆନ ପାଇ ନାହିଁ । କେବେ ସେ ମୁହଁ ଖୋଲି କହୁନାହାନ୍ତି । ସବୁବେଳେ ଖୁସି ଆନନ୍ଦ, ଖେଳ କୌତୁକ । ପିଲାଟିଏ ପର ଅଳି । ଅଢ ଛୋଟ କଥାରେ ଅଭିମାନ ।

କାହିଁକି ତମେ ପଥରବସା କଙ୍କଣ ନାଇନ, ସେ ନେଳିଆ ସିଲ୍କ ଶାଢ଼ୀ ପିନ୍ଧନ ? ସାଇତ ରଖିବାକୁ ମୁଁ କଲକତାରୁ କଣି ଆଣିଥିଲି ?

ଭୁଲିନାହିଁ ଯେ, ବେଳ ପାଇ ନ ଥିଲି । ଯାଉଛି । ପିନ୍ଧିଆସିବ ।

ସତେ କି ଉତାଣୀ ପିଲା । ବିଭାଘରର ପ୍ରଥମ କେଇଟି ବର୍ଷ, —ଲାଜ, ସଙ୍କୋଚ, ଛପିଲା ଭୟ, ତରଲି ଅଭିମାନ, ସେ ସବୁ ଦୂର ହୋଇଛି । ପିଲାଟି ପରି କୋଳରେ ମଥା ରଖି ଘୁଡରେ ମୁହଁ ଗୁଞ୍ଜି ଅଳି କରନ୍ତି, ମତେ ଗେଲ କର ।

ଛି, କିଏ ଆଉଥିବେ, ଉଠିବଟି ।

ଅପୁ କିଏ, ଉଠିବ ନାହିଁ । ଗେଲ କର, ନୋଇଲେ ··

ତରତର କରି ଗେଲ କରଛି । ପିଲାପରି ତାଙ୍କର ଟହ ଟହ ହସ । ସେ କେଡ଼େ ଖୁସିରେ ଉଠିଯାଆନ୍ତି ।

ସତେକି ଟିକି ପୁଅଟି । ନନ୍ଦିକାର ଆଉ କେଉଁ ପୁଅରେ ଲୋଡ଼ା ?

ଆଗରେ ସେ ମୁହଁ ଶୁଖାଇ ବସିଛି, ନନ୍ଦଆଟା ! କିଏ କହିବ ଆଠ ବର୍ଷର ଚନ୍ଦ୍ରା ପଢଚ ? ଓଃ, କେବେଠାରୁ । ବୟସର ବୁଢ଼ା ତାଡ଼ ସେ ଦେଖୁନାହିଁ । ନନ୍ଦଆ ଚଗଲାଟା, ମୁହଁ ଶୁଖେଇଛି । ଅଭିମାନ କରି ବସିଛି ଗୋ, ଗେଲ ହେବ ।

ଲୁଲୁଲୁଲିଆ ସୁନ୍ଦର ମୁହଁ, ଗଳୁଣ୍ଠିଆ ସୁଛ ନିଶ । ନାକ ତଳର ପ୍ରଜାପତିଆ ନିଶ କେବଠୁ କାଟିପକେଇଛି । ଆଖିରେ ଚଷମା ନାହିଁ । ପଛକୁ ଓଲଟିଥିବା କେଶ ଛୋଟ କରାହେଇଛି ।

ଏଇ ପିଲାଟା, ମଥାର କେଶ ଧଳା ହେବ, ଦୁଇପାଟିର ଦାନ୍ତ ଦ'ଧାଡ଼ି ଝଡ଼ି ପାକୁଆ ହେବ । ସେତେବେଳେ ବି ବସ୍ତ୍ରର ଧାରଣା ନଥିବ ମନରେ । ସେତେବେଳେ ବି ଅଳି କରି ମାଗୁଥିବ ଗେଲ ବକଟେ ।

କି ହେବ ତାର ଅଲଗା ପିଲାଟିଏ ? ସେ ସିନା ପେଟରୁ ଜନମିବ, ଏଇ ନଢଆଟା, ଜନମିଛି ତା ଆତ୍ମାରୁ । ତା ଆତ୍ମାରୁ ଅଧିକ ସେ । ମୁହଁ ଶୁଖେଇ ବସିଛି । ଆକାଶ ପାତାଳ କେତେ କଅଣ ଭାବୁଛି ।

ନଢକା ନିଜର ଭାବନାରେ ବିଭୋର ହେଲା । ନିଜକୁ ଭୁଲିଲା । ସୁନନ୍ଦର ମୁହଁକୁ ଟେକି ଧରି ଦେଲେ କରିବାକୁ ମନ କଲା । ପାରିଲା ନାହିଁ । ସୁନନ୍ଦର ଆଖି ପଡ଼ିଲା ତା ଆଖିରେ । ସରମରେ ସଂକୁଚିତ ହେଲା । ସୁନନ୍ଦ ତାର ହାତ ଧରି କଅଁଳେଇ କହିଲା, ବସ, ଏଇଠି ମୋ ପାଖରେ ।

ନଢକା କଥା ମାନିଲା ।

କଅଁଳେଇ ସୁନନ୍ଦ କହିଲା, ପିଲାଟିଏ ପାଇଁ ତମେ ଆକୁଳ ହୋଇ ପଡ଼ିଲଣି ଦେଖୁଛି । କଥାଟିଏ କହିବି, ମାନିବ ?

ନଢକାର ଆଖିରେ ଛଳ ଛଳ ଲୁହ ।

ଯେଉଁ ଔଷଧ ମୁଁ ଆଣି ଦେଇଥିଲି ତାକୁ ତମେ ମୋଟେ ଖାଇନା । ଆଲମାରୀ ଭିତରେ ସେ ସେମିତି ରଖା ହୋଇଛି । ସେଇ ଔଷଧ ତମେ ଖାଅ ।

ଆଖିରୁ ଲୁହ ପୋଛି ନଢକା କହିଲା, ମୁଁ ଆଉ ଔଷଧ ଖାଇବି ନାହିଁ । ମନ୍ତୁର ପାଣିରୁ ଆରମ୍ଭ କରି ହୋମିଓପାଥି, କବିରାଜି ଏଲୋପାଥି ସବୁ ଖାଇ ହଜମ କଲିଣି । ସେଥିରୁ କେବଳ ଗଣ୍ଡି ବଢ଼ାଉଛି, ଲୋକହସା କରାଉଛି । ଆଉ ଔଷଧ ଖାଇବାକୁ ତମେ କହନା । ମଣିଷର ଭାଗ୍ୟକୁ ଔଷଧ ବଦଳାଇପାରିବ ନାହିଁ ।

ତମେ କଟକ ଚାଲ । ସ୍ତ୍ରୀମାନଙ୍କ ସମ୍ବନ୍ଧରେ ଅତି ଅଭିଜ୍ଞଡାକ୍ତରାଣୀ ଶ୍ରୀମତୀ କୁମାରୀ ଖେଇ ଥରେ ତମକୁ ଦେଖନ୍ତୁ, ପରୀକ୍ଷା କରନ୍ତୁ । ପାଞ୍ଚ ବରଷ କାଳ ବିଲାତ, ଆମେରିକା, ଜାପାନରେ ଶିକ୍ଷା ପାଇ ସେ ଫେରିଛନ୍ତି । ଥରେ ସେ ଦେଖନ୍ତୁ । ତେଣିକି ସେ ଯାହା କହିବେ, କରିବା ।

ନିଜର ଦକ୍ଷତା ସମ୍ବନ୍ଧରେ ଛପି ଛପି, ଭରି ଥରି, ଭାବନାଟିଏ ଅସୁଣ୍ଡ ପରର ପାଚେରୀ କାନ୍ଥକୁ ଆଉଜି ସେ ଦୃଢ଼ ହୋଇ ଠିଆହେଲା । ଶୁଦ୍ଧନା ନିଜେ ପିଲା ଦିଓଟିଙ୍କୁ ସଙ୍ଗରେ ଧରି ଅତନୁବାବୁଙ୍କ ପୁରୁଣା ଗାଡ଼ିରେ ମଲପୁର ଜନ୍ମଦିନକୁ ନିମନ୍ତ୍ରଣ କରିବାକୁ ଆସିଥିଲେ । ମୋଟେ ପାଞ୍ଚ ସାତ ମିନିଟ୍ ସେ ରହିଥିଲେ । ସୁନନ୍ଦ ଯାଉନାହିଁ ବୋଲି ଅଭିମାନ କରି କେତେ କଅଣ କହୁଥିଲେ—

—ସିନେମା ଭଲରେ ଚାଲିଛି ! ଆଶାନୁରୂପ ଲାଭ ହେଉନାହିଁ । ସର୍ତ୍ତ ଅନୁଯାୟୀ ଅତନୁବାବୁ ମାସକୁ ମାସ ତାଙ୍କର ପ୍ରାପ୍ୟ ପାଉଣା ପାଇପାରୁଛନ୍ତି । ଠନ୍ ଠନ୍ ଓ୍ୱାଲ ଅଧୀର ହୋଇପଡ଼ିଲେଣି ।

ଭାଗଲପୁରରେ ସେମାନେ ଭଲ ଅଛନ୍ତି । ବ୍ୟବସାୟ ଭଲରେ ଚାଲିଛି । ହୃମାମାନଙ୍କର ଶାଶୂ ଶଶୁର ଡକାଡ଼କ ହେଇ ଦିନ ଘଣ୍ଟାରେ ସଂସାର ଛାଡ଼ି ଚାଲିଗଲେ । ସେ ଏବେ ଦିହଗଣ୍ଡ ହେଉଛନ୍ତି । ଟିକ ପିଲାଟି କୌତୁକଆ ହେଇଛି ।

ଟିକ ପିଲାଟି କୌତୁକଆ ହୋଇଛି !

ନନ୍ଦକାର ମେଡ଼ିକାଲକୁ ଯାଇ ପରୀକ୍ଷା କରାଇବାର କଥା, ଭଲ ମନ୍ଦ ବଳେ ଜଣାପଡ଼ିବ ।

କାହିଁକି କଟକ ଆସିଛି, ଝିଅବେଳକୁ ଛୁଡ଼ି ଅଣଉଠେ । ପରୀକ୍ଷା ! ସେ ଓ ଦୁନଆର ସମସ୍ତେ ଜାଣିବେ, ନନ୍ଦକା ମା ହୋଇପାରିବ କି ନାହିଁ ।

ଜନ୍ମ ହାତରେ ଶ୍ୱେତଣା ଶାଶୁଙ୍କର ଦାୟିତ୍ୱ ସେ ସମର୍ପିଦେଇ ଆସିଛି । ସାତଟି ଯୁଗ ପରି ସାତଟି ଦିନ ଲାଗେ, ଯେତେବେଳେ ଶାଶୁଙ୍କର କଥା ମନେ ପଡ଼ିଯାଏ । ପୁଣି ଏଇ ସାତଟି ଦିନ ସାତଟି ନିମେଷ ପରି ବି ଲାଗେନାହିଁ, ଯେତେବେଳେ ସ୍ୱାମୀଙ୍କର ସ୍ନେହ ସୋହାଗ ମନେପଡ଼େ । ଏଥର ସେ କଟକ ଆସିଛି ଏକା । ସେ ସ୍ୱାଧୀନ । ଡରଭୟ କାହାକୁ ନାହିଁ । ଆକଟ କରିବାକୁ କେହି ନାହିଁ । ଯେଉଁମାନେ ଅଛନ୍ତି, ସେମାନେ ଚାକରବାକର । ଠିକା ଚାକରାଣୀଟିଏ ଓସ୍ତା ହୋଇଛି । ସଭିଙ୍କ ମୁଣ୍ଡରେ ଖାଲି ମା, ମା ଡାକ ।

ତାଙ୍କୁ ଡର ମିଳୁନାହିଁ । ତାଙ୍କର ଗୋଡ଼ ତଳେ ଲାଗୁନାହିଁ । ଘର ଛାଡ଼ି ପଦାକୁ ଗିବାକୁ ସେ କୁଣ୍ଠିତ । ଗଲେ, ଅଳପ ସମୟ ରେ ଫେରିଆସୁଛନ୍ତି । ଖାଲି ଗପିବାକୁ ମନ । ଗପ କରୁ କରୁ ଖେଳ । ଖେଳ କରୁ କରୁ ହସ । ହସୁ ହସୁ ଲୋଟିଯାଉଛନ୍ତି, ଲୋଟି ଯାଉଛନ୍ତି କୋଳରେ । ହସପେଡ଼ୀର ଚାବିକାଣି ଫିଟିଛି । ହସର ସୁଅରେ ଭାସିଆସୁଛି ଅସରନ୍ତି ପ୍ରେମର କୁସୁମ, କେଉଁ ଅଜଣା ସରଗର ପାରିଜାତ ମାଳା ।

ସତେକି ସେ ସାତ ବରଷର ପିଲା ଟୋକୀ । ହୁଁ, ଆଖିକି ତ ସେମିତି ଦିଶୁଛନ୍ତି । ଖେଳ ହେବାକୁ ଅଳି । ନନ୍ଦକାର ଅକୁଣ୍ଠିତ, ନିଃସଙ୍କୋଚ ଦାନ ।

ଆଠବରଷ ତଳେ, ସେ କେବଳ ଦେହର ଉତ୍ତେଜନା, ମନର ଅରଣା ଦାଉଡ଼ । ଖାଲି ଗପ, ବୃନ୍ଦାବାଡ଼ ଡେଇଁ ମହୁଆ ମନ ଧାଏଁ । ନନ୍ଦକାର ଉଚ୍ଛଳ ଅଫଳ ଚମତ୍କାର

ତରଙ୍ଗ ତରଙ୍ଗ ଢଙ୍ଗ । ଆଖିପଡା ମୁଦ କେହ ନାହିଁ, କିଛି ନାହିଁର ଧାରଣାରେ ନିର୍ଦ୍ଧିତ ହେବାର ଚେଷ୍ଟା !

ଆଜ ସେସବୁ ନାହିଁ । ଟିକି ଟିକି ପିଲା ଦଉଡ଼ିଙ୍କର ସଙ୍କୋଚସ୍ଥାନ, ପର ଆପଣା ଭେଦସ୍ଥାନ, ହସି ହସି ନହସିପଡ଼ିବା ଖେଳକୌତୁକଳ । ଦୁହେଁ ଦୁହିଁଙ୍କର ଖେଳ କଣ୍ଢେଇ । ଦୁହେଁ ଦୁହିଁଙ୍କର କଣ୍ଢେଇକୁ ସମ୍ପ୍ରତିମାଜ ସଫାସୁତର କରନ୍ତି । ଦାମିକା, ଭଲଭଲକା ଶାଢ଼ୀ, ଲୁଗା, ଗହଣାରେ ସଜାଇ ଦେଖନ୍ତି, ଦେଖନ୍ତି ଆଖି ପୂରାଇ ।

ଧୂଅରେ ବାଇଆ ଧୋଉ ।

ଦୁଇଟି ଜୀବନର ମିଳନରେ ଏତେ ଆନନ୍ଦ '

କଅଣ ମିଳିବ ପିଲାପିଚକାରୁ ?

ପନ୍ଦର ଦିନ କଟିଲା । ଡାକ୍ତରଣୀ ଦୁଇ ଥର ଆସି ଏଣ୍ଡେଭେଣ୍ଡୁ ପଚାରି, ଦେହମୁଣ୍ଡ ପରୀକ୍ଷା କରସାରଲେଣି । ଅଧା ଉମର, ମୋଟା ସୋଟା ଚମ୍ପାଫୁଲରଙ୍ଗ, ସୁନ୍ଦରିଆ ମାଇପିଟିଏ । ବେଶି କଥା କହନ୍ତି ନାହିଁ । ଯେତକ କହନ୍ତି, ହସି ହସି, ଗେହ୍ଲେଇ କହନ୍ତି । ପ୍ରତି ପଦ କଥାରେ ଭଉଣୀ ଯୋଡ଼ନ୍ତି । ଠାକୁର ଓ ଭାଗ୍ୟ ଉପରେ ପୂର୍ଣ୍ଣ ବିଶ୍ୱାସ ।

କହନ୍ତି, ଶୁଣ ଭଉଣୀ, ମଣିଷ ଚେଷ୍ଟା ସିନା କରେ, ଭଗବାନଙ୍କର ଇଚ୍ଛା ନ ଥିଲେ କଅଣ ହୋଇପାରେ ? ଯାହାର ପିଲା ହେବାର କଥା, ଦେହର ଯନ୍ତ୍ର ସବୁ ଠିକ ଅଛି, ତାର ବି ପିଲା ହୁଏ ନାହିଁ । ଯାହାର ଯନ୍ତ୍ର ବିଗିଡ଼ିଛି, ତାର ତ ପିଲା ନ ହେବାରକଥା । କିନ୍ତୁ ଅସମ୍ଭବ ବି ସମ୍ଭବ ହୁଏ । ଡାକ୍ତର କାରଣ ଖୋଜେ । ଆମର କାମ, ଔଷଧ ଦେଇ, ନଇଲେ ଅପରେସନ୍ କରି, ବାଟ ସଫା କରିଦେବା । ସହଜ କଥା, ଭଉଣୀ, ଡରଭୟ କିଛି ନାହିଁ । ମୁଁ ଯନ୍ତ୍ର ଦେଇ ଦେଖେଁ ।

ଯନ୍ତ୍ର ଦେଇ ଦେଖା ହୋଇନାହିଁ ।

ବେଳ ମିଳୁଛି କେଉଁଠି ? କଟକ ସହରରେ ଯିଏ ଯେଉଁଠି ଚିହ୍ନା ପରିଚ, ବନ୍ଧୁବାନ୍ଧବ ଅଛନ୍ତି, ସମସ୍ତଙ୍କ ଘରକୁ ସେ ଯାଇ ବୁଲିଆସିଲଣି । ସେମାନଙ୍କ ମଧ୍ୟରୁ କେହି କେହି ସମ୍ଭୋଳି ଗଲେଣି । ଥିଏଟର, ଟକି ବି ବେଳେ ବେଳେ ଦେଖା ଚାଲିଛି ।

ଜୀବନକୁ ପୂର୍ଣ୍ଣମାତ୍ରାରେ ଉପଭୋଗ କରୁଛନ୍ତି ସେମାନେ । ସତେ, ସମସ୍ତ ଯଦି ଇମିତି ଆନନ୍ଦରେ କଟିପାରନ୍ତା, ମନରେ ଚିନ୍ତା ନ ଥାନ୍ତା !

କା

କଟେ ନାହିଁ । କିଏ ପଛରୁ ଡାକ ପକାଏ, ରହ । ନ ରହିଲେ ଓଢ଼ଣା ଧରେ । ଆଉ କିଏ ଆଗରେ ଠିଆହୋଇ ପଥ ଓଗାଳେ ।

କିଏ ?

ଚିହ୍ନିପାରିବ ନାହିଁ ।

ମତେ ଚିହ୍ନି ହେଉ ନାହିଁ । ଆଉ କେବେ ଦେଖିଲି ପରି ମନେ ହେଉ ନାହିଁ । ଏତେ ସୁନ୍ଦର ରୂପ ! ତନୁ କଦମ୍ବର ରଙ୍ଗ ଦେଖିଲେ ସତେମତେ ଲୋଭ ହେବ । ଭ୍ରୂଲତା ଦିଓଟି କିଏ କେତେ ଯତ୍ନରେ ତୁଳିରେ ଆଙ୍କିଛି । ଓଠରେ ବୋଳିଛି ଅଳତା । ତାଳୁରୁ ତଳପାଦଯାଏ କିଏ ପୁଣି ବାଛିବ ? ସତର ଅଠର ବର୍ଷର ଝିଅଟିଏ ପରି ଦିଶୁଛି । ଦୁଇଟି ପିଲାର ମା । ଦୁଇ ପିଲା, ସେମାନେ ବି ସୁନ୍ଦର, ଅବିକଳ ମାଆ ପରି ।

ଆରେ ମଲୟ, ମାଉସୀଙ୍କୁ ପ୍ରଣାମ କର । ଛବିଲା, କାଣରେ ମୁହଁ ଲୁଚାଉଛୁ କାହିଁକି ? ତୁ ବି ମାଉସୀଙ୍କୁ ପ୍ରଣାମ କର । ହଁ, ସୁନା ଝିଅ ।

ନନ୍ଦିକା ଚିହ୍ନିଲା । ରୁହିନା, ହେମାଙ୍ଗୀଦେବୀଙ୍କ ସାନ ଭଉଣୀ । ଆର ଘରେ ଅତନୁବାବୁ ସୁନନ୍ଦ ସଙ୍ଗେ ଗପ କରୁଛନ୍ତି । ରାତି ହେବ ଆଠଟା । କେତେ ଭଲ, କେତେ ଢଙ୍ଗର ମଣିଷ ସେ ରୁହିନା, କି ସୁନ୍ଦର କଥା କହନ୍ତି, ସତେକି କିଣିନେବେ ।

ମୁଁ ସୁନନ୍ଦବାବୁଙ୍କର ଦୋଷ ଦେବି । ସେ ଆଉ ଯାଉନାହାନ୍ତି । ଖାଲି କାମର ଆଳ । ତମେ ଆସିଲଣି ଏତେଦିନ ହେଲା, ଖବର ଦେଉନାହାନ୍ତି ।

ନନ୍ଦିକାର ଆଖି ପିଲା ଦିଓଟିଙ୍କ ଉପରେ । ମନ ହେଉଛି, ତାଙ୍କୁ କୁଣ୍ଢରେ ଜାକି ଧରିବ, ଛାଡ଼ିବ ନାହିଁ । ସାହସ ହେଉ ନାହିଁ । ଟିକି ଟିକି ହାତଟିମାନ ଧରି ନାମ ପଚାରିବାପାଏ ସାହସ । ମୁହଁରେ ବୋକ ଦେବାକୁ ମନରେ ଆସୁଛି ସଙ୍କୋଚ ।

ନନ୍ଦିକା ଅମିତ୍ରଙ୍କର ଚର୍ଚ୍ଚା କଲା । ବିଦାୟ ନେଲା ବେଳକୁ ରୁହିନାଙ୍କ ହାତ ଧରି ଆଉଥରେ ଆସିବାକୁ ଅନୁରୋଧ କଲା । ମନର ସବଟକୁ ଅଟକାଇ ନ ପାରି ମଲୟକୁ କୋଳ କଲା । ଛାତିରେ ଜାକିଲା । ମୁହଁରେ ବୋକ ଦେଇ କହିଲା, ଆରେ, ମୁଁ ତୋର ଆଉ ଜଣେ ମାଉସୀ ମ !

ସେ ତ ଖଡ଼ଗପୁର ଯାଇଛି ।

ରୁହିନା କହିଲେ, ଏ ତୋର ଆଉ ଜଣେ ମାଉସୀ ।

ଛବିଲା ମା କାଖରୁ ଓହ୍ଲାଇଲା ନାହିଁ ।

ରୁହିନା କହିଲେ, ତୁମେ ଆମର ଗରିବ ଘରେ ଥରେ ପାଦ ନ ଦେଲେ ମୁଁ ଆଉ କେବେ ଆସିବି ନାହିଁ । ସୁନନ୍ଦବାବୁ, ନନ୍ଦକାଙ୍କୁ କାଲି ନେଇ ନିଶ୍ଚୟ ଆମ ଘରେ ପହଞ୍ଚିବ । ଠିକ୍ ଆଠଟାବେଳେ । ନୋହିଲେ ଧାରୁଆ ରହିବ ।

ସୁନନ୍ଦ ହସିଲା ।

ନନ୍ଦକା କହିଲା, ମୁଁ ତାଙ୍କୁ ସଙ୍ଗରେ ନେଇଯିବି ।

ଜନ୍ନ ଚିଠି ପଠେଇଛନ୍ତି, ମାଆଙ୍କର ଦେହ ଖରାପ ଥିଲା, ଭଲ ହୋଇଗଲେଣି । ନୂଆବୋହୂ କଟକରେ ଦିନାକେତେ ରହନ୍ତୁ । ତରତର ହୋଇ ଫେରିବା ଦରକାର ନାହିଁ । ସୁମିତ୍ରା ଭାଉଜ ତତ୍ତ୍ୱ ନେଉଛନ୍ତି ।

ନନ୍ଦକା ମଣିଲା, ଜନ୍ନ ଯେପରି ଡାକ ଛାଡ଼ୁଛନ୍ତି, ଶାଶୁଙ୍କର ଦେହ ଭଲ ନାହିଁ, ତୁମେ ସେଠି ନାହିଁ ଗଲ ? ସେବା କରିବ କିଏ ? ଜାଣ ତ, ସେ ସୁମିତ୍ରାଙ୍କୁ ଦେଖିପାରନ୍ତି ନାହିଁ ! ଫେରିଆସ ।

ସ୍ୱାମୀଙ୍କୁ ଏକୁଟିଆ ଛାଡ଼ି ଗାଆଁକୁ ଫେରିଯିବାକୁ ପ୍ରାଣ ଡାକୁନାହିଁ । ଶାଶୁଙ୍କ ପାଖରୁ ଦୂରରେ ରହିବାକୁ ବି ମନ ହେଉନାହିଁ । କେଡ଼େ ଦହଗଞ୍ଜିଆ ଏ ମାଇପି ଜୀବନ, କଳବଳ, ଛଟପଟ । ଡାକ୍ତରଣୀ ଯଦି ତାଙ୍କର ପରୀକ୍ଷା ଶେଷ କରି ଭଲମନ୍ଦ କହିଦିଅନ୍ତେ, ମନର ଦୁଃଖ ଏକାଥରେ ତୁଟନ୍ତା ।

ସାହସ କରି ନନ୍ଦକା ସୁନନ୍ଦକୁ କହିଲା, ବୋଉଙ୍କର ଦେହ ଭଲ ନାହିଁ ।

ସୁନନ୍ଦ ଉତ୍ତର ଦେଲା, ଭଲ ନ ଥିଲା କୁହ ।

ଜନ୍ନଙ୍କର ସେ ଠାରୁ ଖବର ।

ଫେରିଯିବାକୁ ମନ ହେଲାଣି ?

ତୁମେ ବୋଉଙ୍କୁ ଏଠିକି ନେଇଆସ । ତାଙ୍କର ଦେହ ଏବେ ଭଲ ରହୁ ନାହିଁ । ଦିନୁଦିନ ଦୁର୍ବଳ ହୋଇପଡ଼ୁଛନ୍ତି । ତୁମେ ଜିଦ୍ ଧରିଲେ ସେ ଆସିବାକୁ ମଙ୍ଗିବେ । ମୁଁ କହିଲେ ଶୁଣିବେ ନାହିଁ । ତାଙ୍କୁ ଡାକ୍ତରଣୀଙ୍କୁ ଦେଖାଇବା ।

ସୁନନ୍ଦ ନନ୍ଦକାର କଥାର ମର୍ମ ବୁଝିଲା । ସେ ଜାଣେ, ଗୁରୁବ୍ରହ୍ମା କହିଲେ ମଧ୍ୟ ବୋଉ କଟକ ଆସିବାକୁ ମଙ୍ଗିବେ ନାହିଁ । ସେ ଯେଉଁ ଘରବାରି, ଜମି, ଟୋଟା, ଗାଈଗୋରୁ ତିଆରି କରିଛନ୍ତି, କାହାରି ତତ୍ତ୍ୱ ନେଇ ନ ପାରନ୍ତୁ ପଛେ, ତାଆରି ମଝିରେ ବେଳ କଟାଇବାକୁ ଚାହାନ୍ତି । କଟକ ଆସିବାକୁ କେତେଥର ସୁନନ୍ଦ ଅନୁରୋଧ କରିଛି । ବୋଉ ଆଖି ଦେଖାଇ ମନା କରିଦିଅନ୍ତି । ଯେତେଥର ସେ କଟକ ଆସନ୍ତି,

ଦୁଇବର୍ଷ ଧରି ରହି ଗାଁକୁ ଫେରିଯିବାକୁ ଉଚ୍ଛନ୍ନ ହୁଅନ୍ତି । ଏଠି ତାଙ୍କୁ ଅଣନିଶ୍ୱାସୀ ଲାଗେ । ବାରପ୍ରକାର ଶବ୍ଦରେ ତାଙ୍କର କାନଅତଡ଼ା ପଡ଼େ ।

ନନ୍ଦିକା ଫେରିଯିବାକୁ ଚାହେଁ । ଗୋଟିଏ ପାଖରେ ସ୍ୱାମୀ, ଆଉ ପାଖରେ ଶାଶୂ । ତାର ବେକରେ ପ୍ରେମ ଓ ଭକ୍ତିର ପବନ୍ଧ ଡୋର ବନ୍ଧା ହୋଇଛି । ଦୁହିଁଙ୍କୁ ସେ ସଙ୍ଗରେ ଧରି ଚାଲିବାକୁ ଚାହେଁ । କର୍ତ୍ତବ୍ୟ ! ତା ପାଖରେ ଦୁଓଟି କର୍ତ୍ତବ୍ୟ ସମାନ । ଏଥିରେ ଅଭିମାନ କରି ମୁହଁ ଶୁଖାଇବାର କିଛି କାରଣ ନାହିଁ । କୁଟୁମ୍ବ ଭିତରେ ସମସ୍ତେ ସମାନ । ନନ୍ଦିକା ପରଘର ଝିଅ, ଏ ଧାରଣା କାହାରି ମନକୁ ଆସେ ନାହିଁ । ସତ୍ୟଟା ସପନ ପରି ଲାଗେ ।

ନନ୍ଦିକା ହିଁ ଘରର କର୍ତ୍ତ୍ରୀ । କୁଳଲକ୍ଷ୍ମୀ । ଅନ୍ୟମାନେ ତାର ଆଦେଶ ପାଳିବେ । ଦଶରଥ ଜୀବନରେ ଥିଲେ ସୀତାଙ୍କର ନିର୍ବାସନ ଦଣ୍ଡ ସମ୍ଭବ ହୋଇ ନ ଥାନ୍ତା । ବିଚଳିତମତି ପୁତ୍ରକୁ ସେ ବୁଝାଇ କହିଥାନ୍ତେ, କୁଳଲକ୍ଷ୍ମୀ ମୋର ସୀତା, ଇକ୍ଷ୍ୱାକୁ ବଂଶର ଜନନୀ ସେ ହେବେ, ସେଇ ବଂଶର ଭବିଷ୍ୟତକୁ ପେଟରେ ଧରି ସେ ହେବେ ନିର୍ବାସିତା ? ଅସମ୍ଭବ ! ମୁଁ କିଏ, ତମେମାନେ କିଏ ? ଲମ୍ବି ଆସିଥିବା ଜୀବନମାଳାର ଗୋଟିଏ ଲେଖାଏଁ ମାଳି । ଅତୀତ ପୁରୁଷ ଗଣା ସରିଛନ୍ତି । ମୋ ଉପରେ ଇକ୍ଷ୍ୱାକୁ ବଂଶର ହାତ । ଗଣା ସରିଲେ ପଛକୁ ଯିବ । ତା ପରେ ତମେ । ତା ପରେ ଯେ ଅଛି ମୋର କୁଳବଧୂର ପେଟରେ । ଜାଣୁ ଜାଣୁ ମାଳା ଛିଣ୍ଡାଇବ ? ଶୁଣ ରାମ, ନାମର ମୋହରେ ଅନ୍ଧ ହୁଅ ନାହିଁ । ଅବାଧ ହେଲେ ଏ ବଂଶର ହାତ ତୁମକୁ ଡେଇଁଯିବ । ଗଣନାରେ ଏକ ମିଶାଇ ତମକୁ ହିଁ ଦେବ ନିର୍ବାସନ ଦଣ୍ଡ !

ନନ୍ଦିକା କୁଳଲକ୍ଷ୍ମୀ, କିନ୍ତୁ ବଂଶର ଭବିଷ୍ୟତକୁ ସେ ପେଟରେ ଧରି ପାରି ନାହିଁ । ସେଇଥିପାଇଁ ତାର ବ୍ୟାକୁଳତା । ସେଇଥିପାଇଁ ସେ ମନେ ପକାଇ ଦେଇଛି, ଡାକ୍ତରାଣୀ !

ଏମିତି ମୁହଁ ଶୁଖାଇ ବସିଲ କାହିଁକି ?

ନନ୍ଦିକାର ଆଖିରେ ଛଳ ଛଳ ଲୁହ । ସେ ସୁନନ୍ଦ ପାଖକୁ ଆସିଲା । ପଲଙ୍କ ବାଡ଼କୁ ଆଉଜି କହିଲା, ମୁଁ ଗାଁକୁ ଫେରିଯିବାକୁ ଚାହେଁ ନାହିଁ । ତମେ ବୋଉଙ୍କୁ ଏଠିକି ନେଇ ଆସ । ବୁଢ଼ୀମଣିଷ, ଗାଁରେ ସେ ଏକା ରହିବେ ନାହିଁ ।

ସୁନନ୍ଦ ନନ୍ଦିକାର ହାତ ଧରି ପାଖକୁ ନେଲା । ହସିଲା ମୁହଁରେ କହିଲା, ବୋଉ ଗାଁରେ ଏକୁଟିଆ ରହିପାରିବ ନାହିଁ । ମୁଁ ଜାଣେ, ପୁଅ ଅପେକ୍ଷା ବୋହୂକୁ ସେ ଅଧିକ ଭଲ ପାଏ । ତମକୁ ନ ଦେଖି ସେ ଝୁରି ଝୁରି ମରିଯିବ ।

ଏ କି ଅଶୁଭ କଥା ତୁଣ୍ଡକୁ ଆଣୁଛ ? ଛି !

ଏତିକି ଶୁଣିବ ବୋଲି । ଏତିକି ଶୁଣି ମୋ ମନରେ ଯେଉଁ ଆନନ୍ଦ ହୋଇଛି, କଥାରେ କେମିତି କହିପାରିବି, ନନ୍ଦିକା ? ଏ ସଂସାର ତମର । ତମେ ଯାହା କହିବ ତାହାହିଁ ହେବ । ଆଖିରୁ ତମର ଲୁହ କାହିଁକି ଝରିବ ? ହସିବ ନାହିଁ, ହସିବ ନାହିଁ ?

ନନ୍ଦଜାର ଆଖିରେ ଲୁହ, ମୁହଁରେ ହସ ।

ବେଳ ଅଛି, ରାତି ମୋଟେ ଆଠଟା । ଚାଲ ଆଜି ଅନ୍ନପୂର୍ଣ୍ଣା ଥିଏଟରକୁ, କାଳିବାବୁଙ୍କର "ଗଣ-ଦେବତା" ଦେଖିଆସିବା । ଯିବ ?

ରୁହନା ଦେବୀଙ୍କୁ ସଙ୍ଗରେ ନେଲେ ହୁଅନ୍ତା ନାହିଁ ? କେଡ଼େ ଭଲ ମଣିଷ ସେ ! ଦୁଇଥର ଆସିଲେଣି, ତାଙ୍କ ଘରକୁ ମୁଁ ଥରେ ବି ଯାଇପାରି ନାହିଁ ।

ବାହାରିପଡ଼ ଜଲଦି ।

ଗଣ-ଦେବତା ।

ପରଦା ଉଠୁଛି, ପରଦା ପଡ଼ୁଛି । ପ୍ୟାଣ୍ଡାଲ ଉପରକୁ ପୋଷାକପିନ୍ଧା ଅଭିନେତା ଓ ଅଭିନେତ୍ରୀମାନେ ଆସୁଛନ୍ତି, ଯାଉଛନ୍ତି । କେତେ କଥାଭାଷା, ରାଗରୋଷ, ହସକାନ୍ଦ, ଗୀତ, ବାଦ୍ୟ, ପାଟିତୁଣ୍ଡ ।

ରୁହନା ତନ୍ମୟ ।

ନନ୍ଦକା ବି ତନ୍ମୟ ! କିଛି ସେ ଦେଖିନାହିଁ, କିଛି ସେ ଶୁଣିନାହିଁ, କେବଳ ଅନୁଭବ କରୁଛି ଛୁଆଟାର ଦେହର ପରଶ । ଟିକି ହୃଦଟିର ସ୍ପନ୍ଦନ ଭେଦୁଛି ତାର ଶିରପ୍ରଶିରରେ । ପିଲାଟି ଶୋଇପଡ଼ିଛି ତାଆରି କୋଳରେ । ରୁହନା ମାଗିଲେ ବି ସେ ଦେଇନାହିଁ ।

ଅତନୁବାବୁଙ୍କ ପାଖରେ ମଳୟ, ଚେଇଁଛି । ଡବଡବ କରି ଚାହିଁଛି ପରଦା ଆଡ଼କୁ ।

ତାକୁ ବି କୋଳକୁ ଆଣିବାକୁ ନନ୍ଦକାର ମନ । ସେ ଆସୁନାହିଁ ।

ଅଭିନୟ ଚାଲିଛି ।

ଅଭିନୟ ଶେଷ ହୁଏ । ମଣିଷ ଫେରିଆସେ ବାସ୍ତବତାର ମାଟିକୁ, ଶତ ପରୀକ୍ଷାର ବନ୍ଧନୀ ଭିତରକୁ ।

ଯନ୍ତ୍ର ଆଲୋକ ଓ କେତେ ପ୍ରକାର ପରୀକ୍ଷା ସରିଲା । ଡାକ୍ତର ଶ୍ରୀମତୀ ଘୋଷ ହସହସ ହୋଇ କଅଁଳେଇ କହିଲେ, ପେଟରେ ଯନ୍ତ୍ର ଟିକିଏ ବଢ଼ିଯାଇଛି, ଔଷଧ କାଟୁ

କରିବ ନାହିଁ, ଅପରେସନ୍ ଲୋଡ଼ା । ତମ୍ଭ କ ସନ୍ଦେହର କାରଣ ନାହିଁ । ଅପରେସନ୍ ପରେ ସବୁ ଠିକ୍ ହୋଇଯିବ ଯେ ।

ନନ୍ଦିକା ସେଥିପାଇଁ ପ୍ରସ୍ତୁତ, ଜୀବନମରଣ ସମସ୍ୟା ହେଉ ପଛେ ।

ସୁନନ୍ଦ ପ୍ରତିବାଦ କଲା, କହିଲା, ମୋର ସନ୍ତାନ ଲୋଡ଼ା ନାହିଁ, ନନ୍ଦିକା, ତମ ଅପେକ୍ଷା ପୃଥିବୀର କ ଶ୍ରିଅଟିଏ ମୋତେ ଅଧିକ ସୁଖୀ କରିପାରିବ ନାହିଁ ।

ନନ୍ଦିକାର ମୁହଁରେ ଗେଲ, ଅପରନ୍ତୁ ଗେଲ, ସତେ କ ସୁନନ୍ଦର ପ୍ରଥମ ସନ୍ତାନ, ଅତି ଅଲିଅଳ ପ୍ରଥମ କନ୍ୟା ।

କଥା ଚାପି ରହିଲା ନାହିଁ ।

ପ୍ରମାଦ ହେଲା । ଗାଁ ମାଇପେ ଜଣ ଜଣ ହୋଇ, ଦଳ ଦଳ ହୋଇ, ବେଳ ଅବେଳ ନ ମାନି, ବୁଝିବାକୁ ମାଡ଼ିଆସିଲେ । କହିବାକୁ ପଗ୍ଚରିଲେ ସେ ମୁହଁ ମୋଡ଼େ । ଅଭଙ୍ଗାଙ୍କୁ ପଚାରିବାକୁ ସାହସ ହୁଏ ନାହିଁ । ନନ୍ଦିକାକୁ ପଚାରିବାକୁ ତୁଣ୍ଡ ଖୋଲେ ନାହିଁ, ମନ ମାନେ । ନନ୍ଦିକାର ମ୍ଳାନ ଚଳଣି ଢଙ୍ଗଢାଙ୍ଗରୁ ସେମାନେ ଉତ୍ତର ପାଆନ୍ତି, ସତ କଥା, ସେ ଜନନୀ ହେବ ନାହିଁ, ସେ ବାଞ୍ଝ ।

ଆଶା ତୁଟିଛି । ଆଶା ସଙ୍ଗେ ମନର ଶକ୍ତି ହଜିଯାଇଛି । ପୁତ୍ରକାମନା କରି ନନ୍ଦିକା ଦେବାଦେବୀଙ୍କ ଏଲିଗି ହୁଏ ନାହିଁ । ସେ ପ୍ରାର୍ଥନା କରେ, ମୋର ମରଣ ହେଉ, ଠାକୁରେ !

ନାରୀ ଜନମ ତାର ବ୍ୟର୍ଥ ହୋଇଛି ।

ଆଖିରୁ ଲୋତକ ଝରେ ।

ଶାଶୁଙ୍କର କୋପ ନାହିଁ । ସେ ମୌନୀ ହୋଇଛନ୍ତି । ପଗ୍ଚରିଲେ ସେ ଉତ୍ତର ଦିଅନ୍ତି ନାହିଁ ।

କହ ଗୋଡ଼ରେ ଅଲତା ମଣ୍ଡିଲେ ଗାର ବଙ୍କେଇଯାଏ । ଆପଣ୍ଡି ଭରି ସେ କହେ ନାହିଁ, ଆଜ ପର୍ବ ଭଳ ଆସିବେ, ଏଇ ପୁରୁଣା ଲୁଗାଟା ପିନ୍ଧିଛ ? ମୁଣ୍ଡ ଫରୁଫରୁ । ଭଲ ମନେ କରିବେ, କହ ନୂଆଘର ଯତ୍ନ ନେଉନାହିଁ ।

କେବଳ ସେତକ ତ ମନେ କରେ ନାହିଁ, ସୁନନ୍ଦ ନନ୍ଦିକାକୁ ଗ୍ଚହିଁଦେଲେ ପ୍ରାଣ ତାର ଛଟପଟ ହୁଏ । ରାଗ ଅଭିମାନ ହୁଏ ସଭିଙ୍କ ଉପରେ, କେହି ତାର ଯତ୍ନ ନେଉନାହାନ୍ତି । ସେ ଶୁଖିଯାଉଛି । ମୁହଁ ମଳିନ ଦିଶୁଛି ।

ତାହିଁକି ଲୋ କହ ?

ଝିଅଙ୍କ ମୁହଁରୁ ଏ ପ୍ରଶ୍ନ ଶୁଣିବ ବୋଲି ସେ କେବେ ଆଶା କରି ନ ଥିଲା । ସେବାରେ ସେ ତ୍ରୁଟି କରୁନାହିଁ, ତଥାପି ନନ୍ଦିକା ଶୁଖିଯାଉଛନ୍ତି । କଟକରୁ ଫେରିଲା ଦିନୁ ସେ ଅଧାପେଟ କରି ଖାଉଛନ୍ତି । ଥାଳିଆରେ ହାତ ନ ପଶି ଚଳେ ବାଳକଲେ ଯାଇଁ ସେ ବୁଝୁଛନ୍ତି ନିଜର ଭ୍ରମ ।

ହୁଁ, ସେ ପୁଣି କଟକ ଯିବେ । ଗାଆଁରେ ସେ ଆଉ ଚଳିପାରିବେ ନାହିଁ । ତମେ ସମସ୍ତେ ଏକାଠି ହୋଇ ତାଙ୍କୁ ମାରିଦେବାକୁ ବସିଛ ।

ସୁନନ୍ଦ ପଦାକୁ ବାହାରିଗଲା । କେଉଁଠି ତାର ମନ ଲାଗୁନାହିଁ । କଟକ ଗଲେ ଯେତେ ସମସ୍ତ କାମକାର୍ଯ୍ୟରେ ବ୍ୟସ୍ତ ରହୁଛୁ, ସବୁ କଥା ଭୁଲିଯାଉଛୁ । ନିରୋଳାବେଳରେ ସବୁ ମନେ ପଡ଼ୁଛି । ଘରର ସୁଆଡ଼କୁ ଚାହିଁଲେ ନନ୍ଦିକା ଦିଶୁଛି ଆଖିରେ । ସୁଖ ଆନନ୍ଦ, କୌତୁକରେ ଅଖି ପିଛୁଡ଼ା ପଡ଼ିଲା ପରି ଦିନ କେତୋଟି କଟିଗଲା । ପୁଣି ସେଇ କଥାକୁ ହେଲା କଥା । ଏକୁଟିଆ ନୀରସ ଜୀବନ । ଚିନ୍ତାଗ୍ରସ୍ତ ଝରିଲା ଜୀବନ । ନନ୍ଦିକା ହତାଶ ହୋଇଛି, ତଥାପି ସେ ହସିଛି, ହସି ହସିକା ଫେରିଛି । ଥରେ ଦେଖିଆସିବ ।

ଏଇଆ ଦେଖିଲ ? ମଳିନ ମୁହଁ । ନିଜର ଦେହ ପ୍ରତି ଅସାବଧାନ । ନନ୍ଦିକା ଚେଷ୍ଟାକରି ହସୁଛି, ବାଧ୍ୟହୋଇ କଥା କହୁଛି । ଅନ୍ୟ କେହି ପଛରୁ ଠେଲିଲା ପରି ସେ ଆତଯାତ ହେଉଛି । ଅନ୍ୟମନସ୍କ । କାହିଁକି ଏପରି ହେଲା ? ପଚାରିଲେ ସେ କହୁନାହିଁ । କିନ୍ତୁ, ସୁନନ୍ଦ ବୁଝିପାରିଛି ସତ କଥାଟି । ପଦାକୁ ଗୋଡ଼ କାଢ଼ିଲେ ଯିଏ ଦେଖୁଛି ପଚାରୁଛି, ଡାକ୍ତରଣୀ ଏଇଆ କହିଲା ? କେଉଁଠୁ ଦେଖି ପିଲାଟିଏ ଆଣ । ରକ୍ତର ସମ୍ପର୍କ ଭଲ ।

ଗାଁ ମାଇପେ ନନ୍ଦିକାକୁ ଏମିତି ନାନାକଥା କହୁଥିବେ । କାହା ତୁଣ୍ଡରେ କିଏ ତାଳବଟା ଦେବ ? ସେ ସହିପାରୁନାହିଁ । ମନର କଥା କାହାକୁ କହିପାରୁ ନାହିଁ । ଏ ଗାଆଁରେ ରହିବା ତା ପକ୍ଷରେ ଅସମ୍ଭବ । ଏଇଥର ସେ ତାକୁ କଟକ ନେଇଯିବ, ବୋଉଙ୍କୁ ମଧ୍ୟ ସଙ୍ଗରେ ନେବ । ଜଣକୁ ଛାଡ଼ି ଆଉ ଜଣେ ରହିପାରିବ ନାହିଁ ।

ସନ୍ଧ୍ୟା ଗଡ଼ିଗଲାଣି । ମାର୍ଚ୍ଚ ମାସ ଅଧ । ଅଧା ଜହ୍ନ ଆକାଶ ଉପରୁ ହସି ହସି ଖସି ଆସୁଛି । ଅଗଣାରେ ସପ ଖଣ୍ଡେ ପାରି ତୁନି ହୋଇ ବସିଛନ୍ତି ଅଭୟା । ଆଗରେ ବସିଛି ସୁନନ୍ଦ । ନନ୍ଦିକା ରୋଷଘରେ । କାମ ସେଇଠି । ଗରମ ପଡ଼ିଲାଣି । ଆଜି ପବନ ନାହିଁ । ଜହ୍ନ ଅଲୁଅ ମନକୁ ପ୍ରଫୁଲ୍ଲ କରିପାରୁନାହିଁ । ବିରକ୍ତ ଲାଗୁଛି ।

ଯାହା କହିବାକୁ ସେ ମନ କରିଥିଲା, କହିପାରିଲା ନାହିଁ ।

ଏକ ତାର ଦୁଃଖିନୀ ଜନନୀ । ବୟସ ସରିଆସିଲାଣି । କେତେବେଳେ ଟଳିପଡ଼ିବ କେହି ଜାଣେ ନାହିଁ । ସେ ଜାଣେ, ମା କଟକ ଯିବାକୁ ମଙ୍ଗିବେ ନାହିଁ । ତାଙ୍କର କାମନା, ଯେଉଁ ମଶାଣିରେ ପୂର୍ବପୁରୁଷେ ଅଛନ୍ତି, ସେଇଠି ସେ ଚିତା ସେଜିବେ, ଆଉ ସୁନନ୍ଦ ଦେବ ମୁଖାଗ୍ନି । ସେଇଆ ସେ ବାରମ୍ବାର କହନ୍ତି । ଏବେ ବି କହୁଥିଲେ ।

ନନ୍ଦିକା କଟକ ଯାଇପାରିବ ନାହିଁ । ଯିବା ମଧ୍ୟ ଉଚିତ ନୁହେଁ । ଥାଉ ଏଇଠି । ଯାହାଥିବ ତା ଭାଗ୍ୟରେ । ତା ସମ୍ବନ୍ଧରେ ମାଆଙ୍କ ଆଗରେ ପଦେ କହିବାକୁ ସାହସ ହେଉନାହିଁ । ଭୁଲରୁ ପଦେ କଅଣ ଖସିଗଲେ କାଳେ ମାଆଙ୍କ ମନରେ କଷ୍ଟ ହେବ ! ବେପାର କଥା, ଜମିବାଡ଼ି, ଗାଈଗୋରୁ, ଦୁଇ ଭଉଣୀ, ଗାଆଁର ଖବର, ରାଜାବର ପ୍ରଶଂସା, ଏଇସବୁ ଗପ ।

ଅଭସ୍ୱା ମନଦେଇ ଶୁଣିଲେ । ମନ ଖୋଲି ପୁଅ ସଙ୍ଗେ କଥା ଭାଷା ହେଲେ । ନନ୍ଦିକା ସମ୍ବନ୍ଧରେ ପଦେ ହେଲେ ସେ ପଚାରିଲେ ନାହିଁ । ମୋ ବୋହୂ, ମୋ ସୁନାକଣ୍ଢେଇ ବୋଲି ଯେ ପାଞ୍ଚ ପଦ କଥାରେ ଦୁଇ ପଦ ଲଗାନ୍ତି, ସେ ଆଜି ନନ୍ଦିକାର ନାମ ଧରନାହାନ୍ତି । ନନ୍ଦିକାର ଦୁର୍ଭାଗ୍ୟ ପାଇଁ ମା ତାକୁ ଘୃଣା କଲେଣି ।

ଅଧ ରାତିରେ ସୁନନ୍ଦ ଉଠିଲା । କଡ଼େଇ ଚାହିଁଲା, ନନ୍ଦିକା କାର୍ଯ୍ୟବ୍ୟସ୍ତ । ଧୀରେ ଧୀରେ ସେ ଚାଲିଆସିଲା ବାରିଅଡ଼କୁ । ପୋଖରୀକୂଳରେ ବସିଲା । ନିସ୍ତବ୍ଧତା ମନରେ ଆଣିଲା ଉଦାସ ଭାବ । ଆଗରେ ନିର୍ମଳ ଜଳରେ ଆକାଶ ଓ ଚନ୍ଦ୍ରର ପ୍ରତିବିମ୍ବ । କୂଳପାଖେ ନାନା ଜାତି ଗଛ । ଅଜଣା ଚଢ଼େଇଙ୍କର ଫଡ୍ ଫଡ୍ ଶବ୍ଦ ।

କିଛି ସେ ଦେଖିଲା ନାହିଁ, କିଛି ସେ ଶୁଣିଲା ନାହିଁ, କେବଳ ଭାବିବାକୁ ଲାଗିଲା ।

ନନ୍ଦିକା ଆସିବା ପରି ଲାଗିଲା । ମୁହଁ ବୁଲାଇ ସୁନନ୍ଦ କଣେଇ ଚାହିଁଲା ।

ନନ୍ଦିକା ଆସିବ ପାଦ ଚିପି ଚିପି । ପଛରେ ଥାଇ ଆଖି ବୁଜି ଧରିବ । କେଡ଼େ ନିର୍ବୋଧ ! ଜଣକ ବ୍ୟତୀତ କିଏ ଆଉ ସୁନନ୍ଦ ଆଖି ବୁଜିପାରେ ? ସବୁଥର ସେ କହେ, ଛାଡ଼, ନନ୍ଦିକା ! ଆଜି ସେ ମଜା କରିବ ହାତ ଚିପି ଚିପି କହିବ, ସୁଷମା, ସେଇଠୁ, ହେମାମୀ, ନୁହଁ, କହିବ ଇନ୍ଦିରା !

ଚମକି ଉଠିବ ନନ୍ଦିକା । ଆପେ ଆପେ ହାତ ଖୋଲିବ । ଭେଁ ଭେଁ ହୋଇ କାନ୍ଦିଉଠିବ ପରା '

କିଏ ସେମାନେ ?

ତୁମରି ନାମ ମ, ଯେତେ ଯେଉଁଠି ସୁନ୍ଦର, ଗୁଣର ଝିଅବୋହୂ ଅଛନ୍ତି, ସେମାନଙ୍କୁ ମୁଁ ଜମାଁ ଦେଖେଁ ।

ମତେ ଦେଖାନ ତ ସେମାନଙ୍କୁଠିଁ ?

କି ଉତ୍ତର ସେ ଦେବ ?

ନନ୍ଦିକା ପଛରେ ଠିଆ ହେଲାଣି । ଚମ୍ପାଫୁଲର ମହକ ବାଜୁଛି ନାକରେ । ଏଥର ସେ ଆଖି ବୁଜିବ । ସୁନନ୍ଦ ଭାବିଲା, କି ଉତ୍ତର ସେ ଦେବ ?

ଖାଇବ ନାହିଁକି ?

ନାଇଁ ।

ରାଗିଛ ମୋ ଉପରେ ?

ନନ୍ଦିକା ପାଖରେ ଠିଆ ହୋଇଛି । ସୁନନ୍ଦ ବୁଝିଲା, ନିଜ ଅଭିଳଷିତ ପ୍ରଶ୍ନର ଉତ୍ତର ଦେଇ ନନ୍ଦିକାର ମନରେ ସେ ସନ୍ଦେହ ଆଣି ନାହିଁ । ସେ ନନ୍ଦିକାର ହାତ ଧରି ପାଖରେ ବସାଇଲା । କହିଲା, ସତରେ ମୁଁ ତମ ଉପରେ ରାଗିଛି । କେତେଦିନରୁ ଦେଖିଲି ଦିନରୁ ତମେ ଖିଆପିଆ ଭୁଲିଛ । ନିଜର ଦେହ ପ୍ରତି ଯତ୍ନ ନେଉନ । ଦିନୁଦିନ ଦୁର୍ବଳ ହୋଇପଡ଼ୁଛ ।

ମିଛ କଥା ।

ଛି, କାହିଁକି ନିଜକୁ କଷ୍ଟ ଦେଉଛ, ଶୁଣେ ? ସନ୍ତାନଟିଏ ହେବ ନାହିଁ ବୋଲି ତ ଡ଼କ୍ଟରାଣୀ କହୁନାହାନ୍ତି ? ଯେ କହିଲେ ଅପରେସନ୍ କରି ପେଟ ସଜାଡ଼ିଦେବେ । ଭାବୁଚନ୍ତି ମୁଁ ସ୍ଥିର କରିଛି, ଅପରେସନ୍ କରାଇବା ।

ହୋଇ ଖାଲି କରି, ଆଣ୍ଠୁକୁଡ଼ୀ ହୋଇ, ଅପରେସନ୍ ଟେବୁଲ ଉପରେ ମୁଁ ମରିବାକୁ ଚାହେଁ ନାହିଁ ।

ଶୁଖି ଶୁଖି, କାନ୍ଦି କାନ୍ଦି— ।

ସେମିତି ପଛେ ମରିବ ।

ଲୋକଙ୍କର କଥା ଶୁଣି— ।

କାହାର କଥା ଶୁଣି ମୁଁ ରାଗ, ଅଭିମାନ କି ଦୁଃଖ କରିନାହିଁ । ସେମାନେ ସମସ୍ତେ ସତ କହୁଛନ୍ତି । ମୁଁ ଭାବୁଛି କେବଳ ବୋଉଙ୍କ କଥା । ସେ ମୁହଁ ଖୋଲି ପଦେ କହୁନାହାନ୍ତି; କିନ୍ତୁ ଝୁରିହେଉଛନ୍ତି ନାତିଟିଏ ପାଇଁ ।

ଭଲ କଥା । ମୁଁ ପୁଅ କରିବ । ମୋର ଭଉଣୀମାନଙ୍କର ଏତେ ପିଲା ଅଛନ୍ତି । ସେମାନଙ୍କ ଭିତରୁ ଯାହାକୁ ତମର ଇଚ୍ଛା, କି ବୋଉଙ୍କର ଇଚ୍ଛା, ତାକୁ ହିଁ ମୁଁ ପୁଅ କରିବ ।

ବୋଉଙ୍କର ଇଚ୍ଛା ତାହା ନୁହେଁ । ସେ ମୃତ୍ୟୁ ଭୂମର ପୁଅ ।

ତା ହେଲେ କଲିକତାରେ ଅପରେସନ୍ କରାଇବା ।

ମୋର ମରଣ ଯଦି ଲେଖିଛି ।

ଆମର ପୁଅ ଲୋଡ଼ା ନାହିଁ । କାହାର ପୁଅ କାହାକୁ ସ୍ୱର୍ଗକୁ ନେଇଯାଇନାହିଁ । ଜାଣି ଜାଣି ଆମର ସୁଖ ଆନନ୍ଦର ସଂସାର ଭିତରେ ଜଟିଳତା ସୃଷ୍ଟି କରିବା ନାହିଁ ନନ୍ଦିକା, କଅଣ ମିଳିବ ସେଥିରୁ ? ଆମର କପାଳରେ ସନ୍ତାନ ନାହିଁ । ଠାକୁରଙ୍କର ଯଦି ତାହାହିଁ ଉଦ୍ଦେଶ୍ୟ, ସେଥିରେ ବାଧା ଦେବ କିଏ ? ନନ୍ଦିକା, ବୋଉ ନାତିଟିଏ ପାଇଁ ଝୁରୁଛନ୍ତି । ପାଇବେ ତ ନାହିଁ, ଆଖି ବୁଜିବେ । ବୁଜନ୍ତୁ । ସେଥିକି ତମେ କାହିଁକି ଭାବୁଛ ? କାହିଁକି ଶୁଖି ଶୁଖି ଏ ଦଶା ହୋଇଛ ?

ନନ୍ଦିକା ଚାଦରର କୋଣ୍ଡ ଅଟକାଇ ରଖିଲା । ଓଠ ଚିପିଲା ।

ସୁନନ୍ଦ କହିବାକୁ ଲାଗିଲା, ମୁଁ ଆଉ ଗାଆଁକୁ ଫେରିବ ନାହିଁ । ତମର ମଳିନ ମୁହଁ, ସବ୍ରଗହୀନ ଚଳନ, କାନ୍ଦିଲା ପରି ଆଖି, ଅନ୍ୟମନସ୍କ ଢଙ୍ଗ ଦେଖିବାକୁ କଟକ ଛାଡ଼ି ଗାଆଁକୁ ଧାଇଁଆସିବାକୁ ଇଚ୍ଛା ନାହିଁ ।

ତମର ଗୋଡ ଧରୁଚି, ସେପରି କହ ନାହିଁ ।

କହିଁ କହିଁ ହୋଇ ନନ୍ଦିକା କାନ୍ଦିଉଠିଲା । କାନ୍ଦ ଚାପିବାକୁ ଚେଷ୍ଟା କରି ପୁଣି କହିଲା, ଏ କି କଥା ତମେ କହୁଛ ? ତମର ଗୋଡ଼ ଧରି କହୁଛି, ଏ ସବୁ ତମେ ଆଉ କେବେ ଦେଖିବ ନାହିଁ । ମୁଁ, ମୁଁ ଏଣିକି ଖାଲି ହସିବି, ନୂଆବୋହୂଟି ପରି ନିଜକୁ ସଜାଇ ତମ ଆଗରେ ଆସି ଠିଆ ହେବି ।

ସୁନନ୍ଦ ଚମକି ଉଠିଲା । ନନ୍ଦିକା କାନ୍ଦୁଛି । ଗୋଡ଼ ଧରି ଅଳି କରୁଛି, ସେ ଏଣିକି ହସିବ, ସେ ଏଣିକି ନୂଆବୋହୂ ସାଜି ଆଗକୁ ଆସିବ । ସୁନନ୍ଦ କଅଣ କେବଳ ନନ୍ଦିକାର ହସ ଓ ରୂପକୁ ଭଲପାଏ ? ନନ୍ଦିକାର ମଳିନ ମୁହଁ, ରୋଗଣା ଦେହ, ଅସଜଡ଼ା ଅସାବଧାନ ରୂପ ଓ ମନର କୋହକୁ ଭଲ ପାଏ ନାହିଁ ? ନନ୍ଦିକା ଯାହା ହେଉ, ଯେପରି ଥାଉ, ସେ ତାର ପ୍ରେମମୟୀ, ଦୁଃଖପାସୋରା ପତ୍ନୀ ।

ସୁନନ୍ଦ ନନ୍ଦିକାର ମୁଣ୍ଡଟି ଛାତି ଉପରକୁ ଆଉଜାଇଆଣିଲା । ପିଠି ଆଉଁସି କହିଲା, ତମ ମନରେ ଦୁଃଖ ହେବ ବୋଲି ମୁଁ ଜାଣି ନ ଥିଲି । ମୋ ରାଣ, ଚୁପ୍ ହୁଅ । ପରିହାସ କରି କହିଲେ ଯଦି ସତ ମଣି କାନ୍ଦିବ, ମୁଁ ଆଉ କିଛି କହିବି ନାହିଁ । ଚାଲ, ଖାଇବାକୁ ଦେବ ।

ନନ୍ଦିକା ମୁଣ୍ଡ ଉଠାଇ କହିଲା, ରାଗିଲ ତମେ ?
ଏ ଧାରଣା ତମ ମନକୁ ଆସିପାରୁଛି ?
ସବୁ ଦୋଷ ମୋର । ଆସ, ବୋଉ ଶୋଇପଡ଼ିବେ ।

ଅଭସ୍ବା ଏତେଦିନକେ ଭଲ କରି କଥା କହିଲେ, ଚେଷ୍ଟା କରି ଲାଭ ନାହିଁ ମା’ ଆମ କପାଳକୁ ବିଧି ଯଦି ବାମ ହେଲା, କାହାର ଦୋଷ ଦେବା ? ତମର ପିଲାପିଲି ହେବାରେ ଆଶା ନାହିଁ ବୋଲି ଯେଣୁ ଡାକ୍ତରଣୀ କହିଲେ, ବୃଥାରେ ଅନେଇ ବସି, ହନ୍ତସନ୍ତ ହୋଇ ବେଳ ବିତାଇବା ଆଉ ଲୋଡ଼ା ନାହିଁ । ଯେଉଁ ପିଲାଟି ତମର ସ୍ନେହ, ଯାହାର ବାପ ମା ଦେବାକୁ ମଙ୍ଗିବେ, ସେଇଆକୁ ତମେ ପୁଅ କରି ଆଣ । ସୁମିତ୍ରାର କଅଣ ପିଲାପିଲି ହେବ । ଫୁଲନାଡ଼ କରି ସେଇ ପିଲାକୁ ତମେ ଝେକ-ଆଣିପାର ।

ଗୋଡ଼ ଘଷି ଘଷି ନନ୍ଦନାର ହାତ ଥରିଉଠିଲା । କାହିଁକି ଆଜି ଶାଶୂ ଏପରି କହୁଛନ୍ତି ? ଶନ୍ତୁର ପିଲା ପରା, ଘରକୁ ଆଣିବାକୁ ଉପଦେଶ ଦେଉଛନ୍ତି ? ମନ ବଡ଼ୁଛନ୍ତି ନା !

ନମ୍ରସ୍ବରେ ଉତ୍ତର ଦେଲା, ମୁଁ ସିନା ହୀନକପାଳୀ, ଆଉ ଯାହାକୁ ବୋହୁ-କରି ଆଣିବ, ତାର ସନ୍ତାନ ନ ହେବ କାହିଁକି ?

ବୋହୁ କରି ଆଣିବ ?

ତମେ ଅନୁମତି ଦେଲେ ହେବ ।

କିଏ ସେ ?

ଲଳିତା । ଲେଖାରେ ଶୋଭା ଅପାଙ୍କର ନଣନ୍ଦ । ଆଠ ବରଷ ତଳେ ଶୋଭା ଅପାଙ୍କ ସଙ୍ଗରେ ଯେଉଁ ଆଠ ନଅ ବର୍ଷର ଝିଅଟି ଏଠାକୁ ଆସିଥିଲା, ସେଇ । କେଡ଼େ ସୁନ୍ଦର ବିଚକ୍ଷଣ ପିଲା ! ମୋ ପାଖ ଛାଡ଼େ ନାହିଁ । କେବେ କେମିତି ମୋ ପାଖକୁ ଚିଠି ଲେଖେ । ମୁଁ ବି ଏବେ ଅବଧି ତା ପାଖକୁ ବେଉରା ଦେଇଛି । ସେଇ ପିଲାଟି ମୋ ମନକୁ ପାଉଛି । ଅପା ତାର ପ୍ରଶଂସା କରି ଲେଖିଛନ୍ତି ।

ଶୋଭା ?

ହଁ, ମୁଁ ତାଙ୍କୁ ଲେଖିଥିଲି ।

ତା ବାପ ମା ମଙ୍ଗିବେ ?

ଲଳିତାର ବାପ ମା ନାହାନ୍ତି, ଭାଇ ଭାଉଜ ଅଛନ୍ତି । ସେମାନଙ୍କର ଗୁଡ଼ିଏ ପିଲା । ସେମାନେ ଗରିବ । ଭାଉଜ ସେ ଲଳିତାକୁ ଦେଖିପାରନ୍ତି ନାହିଁ । ଧନବନ୍ତ ଖଟାନ୍ତି, ତଥାପି ଲଳିତା ଟିଁ ଟୁଁ କହେ ନାହିଁ । ଅପା ଲେଖିଛନ୍ତି, ପ୍ରସ୍ତାବ ପକାଇଲେ ତାର ଭାଇଭାଉଜ ରାଜି ହେବେ ।

ଅଭସ୍ବା ଉଠି ବସିଲେ । ମୁଣ୍ଡ ଟେକି ଚାହିଁଲେ ନନ୍ଦନାର ମୁହଁକୁ । ଦେଖିଲେ ତାର ଆଖିରେ ଆଗ୍ରହ, ଓଠରେ ଦରହାସ । ବୁଝିଲେ, ନନ୍ଦନା ହୃଦୟର ଭାଷା କହୁଛି, ମନ ବଡ଼ୁନାହିଁ ।

ନନ୍ଦକାର ହୃଦ ଭିତରେ ପଶି ତାର ଛଟପଟ ଆତ୍ମାର ସ୍ୱରୂପ ସେ ଦେଖି-ପାରିଲେ ନାହିଁ, ଆକୁଳ ବିକଳ କୁହାଟ ସେ ଶୁଣିଲେ ନାହିଁ !

ପଚାରିଲେ, ସୁନନ୍ଦର ମତ ନେଇଛ ?

ତାଙ୍କର ମତ ନେବା ଲୋଡ଼ା ନାହିଁ । ତମର ମନକୁ ଆସିଲେ ହେଲା । ତମେ ଅନୁମତି ଦେଲେ—

ସେ ଜାଣେ ?

ମୁଁ ତାଙ୍କୁ କହିନାହିଁ ।

ଯଦି ସେ ମନାକରେ ?

ମାଆଙ୍କ କଥାର ସେ ପ୍ରତିବାଦ କରିପାରିବେ ନାହିଁ ।

ଲଳିତା ପିଲାଟି ଯଦି ତମ ମନକୁ ପାଉଛି, ମୁଁ କାହିଁକି ମନା କରିବି ? ମୁଁ ଆଉ କେତେଦିନ ବଞ୍ଚିବି ? ତମେ ସୁଖ ଆନନ୍ଦରେ 'ସଂସାର କରୁଛ, ଏତିକି ଦେଖିଲେ ମୋର ଆନନ୍ଦ, ମା '

ମୁଁ କାହିଁକି ମନା କରିବି ?

ଯୁଆଡ଼େ ଚାହିଁଲେ ସିଆଡ଼ୁ ଭାସିଆସୁଛି ଏହି ପ୍ରଶ୍ନଟି । ରାତି ଅଧ । ଅନ୍ଧାର ଘୋଟିଛି । ଆକାଶରେ ଅସୁମାର ତାରା । ଧୀର ଶୀତଳ ପବନ । ନୀରବତା । ସମସ୍ତେ କହୁଛନ୍ତି ସେଇ ଗୋଟିଏ କଥା ।

ନନ୍ଦକାର ହୃଦ ଥରଉଠିଲା । ଆଖିରୁ ଝରିଲା ଲୁହଧାର । ଯେତେ ପୋଛିଲେ ମନା ମାନିଲା ନାହିଁ, ଅଟକିଲା ନାହିଁ । କେମିତି ସେ କାନ୍ଦୁରା ମୁହଁ ଧରି ଘରେ ପଶିବ ?

ସେ ବିଛଣାରେ ଶୋଇଛନ୍ତି । ଧୋବ ଫରଫର ମଶାରି । ଆଲୁଅ କମା ହୋଇଛି । ମଶାରିରେ ହାତ ଦେଲେ ନିଦ ଭାଙ୍ଗିବ । ମୁହଁକୁ ଚାହିଁଲେ ପଚାରିଦେବେ, କାହିଁକି କାନ୍ଦୁଛ ? ମନର କଥା ସେ କହିପାରିବ ନାହିଁ । ହୃଦର କଥା କହିବାକୁ ସାହସ ନାହିଁ । କଅଣ ସେ କରିବ ?

ଆଉ ପାଖ ଘରଟି ଖୋଲା ପଡ଼ିଛି । ଜନ୍ତିର ଦିଆ ହୋଇନାହିଁ । ସେଇ ଘରେ ସେ ବେଶ ହୋଇଛି । ନିର୍ଲଜ୍ଜା କନକ ତାକୁ ସଜାଇଦେଇଛି । ଏ କି ବିଡ଼ମ୍ବନା ! କାହିଁକି କନକ ତାକୁ ଲୋକହସା କରୁଛି ? ଛି, ବେଶଭୂଷା ତାର ଲୋଡ଼ା ନାହିଁ ।

ଏ ଘରେ ଆଉ ତାର କଣ ଅଛୁ ? ସେ ହେବ କନ୍ଦ୍ରୁ ଖ୍ନ, ଅଖୋଜା, ଅଲୋଡ଼ା, ଗୋଟାଏ ଅପଦାର୍ଥ !

ଆଗ ଧାନ୍ଦ୍ରଡ଼ର ମଝି ବଖରାରେ କନ୍ଦ ଶୁଏ । ହେ ଶୋଇପଡ଼ିଲାଣି । ନିଜ ହାତରେ ପରିମାଜ୍ଜ ପରିଷ୍କାର କରି କନ୍ଦ ତାକୁ ସଜାଇଛୁ । ଭଲ ଶାଢ଼ି ପିନ୍ଧାଇଛୁ । ନିଜେ ସେ ଦେହରେ ଖଞ୍ଜିଛୁ ଅଳଙ୍କାର । ଆଖିରେ କଜଳ । ଖୋପାରେ ଫୁଲମାଳ । ଦୁଇ ପାଦରେ ଅଳତା ! ସତେକି ଆଜି ତାର ଚଉଠି ଘର । ବେହେଲ ।

କାହିଁକି ?

ସେ ଖୁସି ହେବେ ?

ମଇଳା ଦେହ, ମଳିନ ମୁହଁ, କାନ୍ଦୁରା ଆଖି, ଅଭିମାନିଆ ଚାଳ ଦେଖିଲେ ତାଙ୍କ ମନରେ ଦୁଃଖ ହେବ । ସେ ଗୃହାନ୍ତ, ନିଶ୍ଚିନ୍ତ ଶାନ୍ତ, ଆନନ୍ଦ, ଚିରଦିନ ପିଲ୍ଲାଆ ପରି ।

ସେଇଆ ହେଉ ।

ସେ ବି କହିବେ, ମୁଁ କାହିଁକି ମନା କରିବି ?

ନାହିଁ, ନାହିଁ । ଏକୁନାଆରେ ଏକା ସେହି ଜଣକେ ଯିଏ ତା'ର ମନତଳର ଛପିଲା, କାଦଲା କଥା ବୁଝିବେ । ଯେତେବେଳେ ଗେହ୍ଲେଇ ହୋଇ ବିଷପାଣିଭରା ଗିଲାସକୁ ଅମୃତ କହି ପିଇବାକୁ ବସିଲେ, ସେହି ଜଣକ ହିଁ ମନା କରିବେ, କହିବେ, ଛୁଇଁ, ପିଅନା, ପିଅନା, ଛିଃ !

ସେହି ଜଣକେ !

ନନ୍ଦକା ଘର ଭିତରକୁ ଆସି କବାଟ କଲାଲ୍ଲ । ଆଲୁଅ ଡେଜଲ୍ଲା । ଗୃହିଁଲ୍ଲ ଦର୍ପଣକୁ । ଆଖିଲୁହରେ ସବୁ କଜଳଗାର ଦୋହିଆସିଛୁ । ଅଞ୍ଚଳରେ ଆଖି ତଳ ପୋଛିଲ୍ଲ ।

ଏଥର ହେଲ । ଜାଣିପାରିବେ ନାହିଁ । ଦେଖି ଆଶ୍ଚର୍ଯ୍ୟ ହେବେ । ଦୁଇଘଣ୍ଟା ତଳେ ନନ୍ଦକାକୁ ସେ ଦେଖିଥିଲେ । ସେ କେମିତି, ଏବେ ଦେଖୁଛନ୍ତି କେମିତି ? କାହୁଁ ଜାଣିବେ ସେ ମିଣିପି ଜାତି, କିପରି ଆମେ ମୁହୂର୍ତ୍ତିକରେ ବଦଳିପାରୁଁ ?

ପାଖକୁ ଆସିଲ୍ଲ । ଧୀରେ ଧୀରେ ମଶାରି ଟେକି ଗୃହିଁଲ୍ଲ । ଶୋଇଛନ୍ତି ନିଶ୍ଚିନ୍ତରେ । ଶୁଅନ୍ତୁ । ସେ ସୁଖୀ । ମନରେ ଭଲମନ୍ଦ ପଣେ ନାହିଁ । ହିଂସାବାଦ ଜଣା ନାହିଁ । ସମସ୍ତଙ୍କୁ ସ୍ନେହ କରନ୍ତି । କାହାରିଠାରେ ସନ୍ଦେହ ନାହିଁ । ଶୁଅନ୍ତୁ ସେ ନିଶ୍ଚିନ୍ତରେ । ଉଠି ପଡ଼ିଲେ ସେ ଦେଖିବେ । ବୁଝିବେ, ନନ୍ଦକା ଅବାଧ ଲୁହେଁ । ତାଙ୍କୁ ଖୁସି କରିବାକୁ ନନ୍ଦକା ନିଜକୁ ଆଠ ବର୍ଷ ପଛକୁ ଫେରାଇ ନେଇ ପାରିଛୁ ।

ଆଲୁଅ କମେଇବାକୁ ନନ୍ଦନା ଟେବୁଲ ପାଖକୁ ଫେରିଆସିଲା । ରାତି ଅଧ ହୋଇଆସୁଛି ।

ଅଲୁଆ ତେଜ !

ନିଦ ଭାଙ୍ଗିଗଲା କି ?

ତମେ ମୋର ନିଦ ଭାଙ୍ଗିଲ । ଏତେ ରାତିଯାଏ କ'ଣ କରୁଥିଲ ଶୁଣେ ? ବେଳ କେତେ ହେଲାଣି ?

ନନ୍ଦକା ଘଣ୍ଟା ଆଡ଼କୁ ଚାହିଁଲା । କହିଲା, ମୋଟେ ଏଗାରଟା ।

କଟକ ହୋଇଥିଲେ କାମ ସରି ନ ଥାନ୍ତା । ଗାଆଁକୁ ଆସିଲେ ମଣିଷ ଅଳସୁଆ ହୋଇଯାଏ । ମୋର କେତେ ନିଦ ହୋଇ ପୁଣି ଭାଙ୍ଗିଲାଣି । ଆଉ ନିଦ ହେବ ନାହିଁ ।

ସୁନନ୍ଦ ମଶାରି ଟେକିଲା । ଚାହିଁଲା ନନ୍ଦକା ଆଡ଼କୁ । କେବଳ ଆଖି ନୁହେଁ, ତାର ମନ ବି ପୁଲକିଉଠିଲା । ଭାବିଲା, ନନ୍ଦକାର ମନରେ ସାମାନ୍ୟ ଦୁଃଖ ହୁଏତ ହୋଇଥିଲା, ସେ ଦୁଃଖ ଅପସରିଛି । ନିଜ ହାତରେ ନିଜକୁ ସଜାଇ ସେ ଆସିଛି ସ୍ୱାମୀ ପାଖକୁ । ସରମରେ ପାଖକୁ ନ ଆସି ଟେବୁଲ ପାଖରେ ଠିଆ ହୋଇଛି । କାଗଜପତ୍ର ସଜାଡ଼ୁଛି, ବାଆଁରେଇ ହୋଇ ।

ସୁନନ୍ଦର ଇଚ୍ଛା ହେଲା, ନିଜେ ଉଠିଯାଇ ନନ୍ଦକାର ହାତ ଧରି ପାଖକୁ ଆଣିବ । ପଚାରିବ, କାହିଁକି ସେତେବେଳେ କାନ୍ଦୁଥିଲ ? ମୁହଁ ଶୁଖାଇଥିଲ ? ନା, ସେକଥା ସେ ପଚାରିବ ନାହିଁ । ତାର ନିଷ୍ଫଳ ଜୀବନର ଅଭିଶାପ ମନେ ପକାଇ ପୁଣି ତା ମନରେ ଦୁଃଖ ଆଣିବ ନାହିଁ ।

କହିଲା, ଆସ, କେତେ ମଜାର କଥାଟିଏ କହିବ ।

କି କଥା ଶୁଣେ ?

ନନ୍ଦକା ଚାହିଁଲା ସୁନନ୍ଦକୁ । ସେ ବସିଛନ୍ତି । ଆଗ୍ରହଭରା ଆଖିରେ, ହସିଲା ମୁହଁରେ ଚାହିଁ ରହିଛନ୍ତି । । ସେ ଦୃଷ୍ଟି ଓ ପରିହାସର ଅର୍ଥ ନନ୍ଦକା ବୁଝେ ।

ଅତି ଗୁପ୍ତ !

ସତେ ? ମତେ ନିଦ ମାଡ଼ିଲାଣି । ଗପ ଶୁଣିବାକୁ ମୋର ଆଉ ଆଗ୍ରହ ନାହିଁ ।

ଶୋଇ ଶୋଇ ସପନ ଦେଖୁଥିଲ ।

ସପନ କାହାଣୀ ?

ହଁ, ମୋଟେ ପଦେଟିଏ । ବେଶି ଗୁଡ଼ାଏ ଗପି ତମ ନିଦରେ ବ୍ୟାଘାତ ଘଟାଇବି ନାହିଁ । ଆଲୁଅ ନିଭାଇଦେଇ ଆସ । କାମ କରି କରି କ୍ଳାନ୍ତ ହୋଇଛ ।

ଆଲୁଅ ନିଭିଲା ।

ନନ୍ଦିକାର ହାତ ଧରି ସୁନନ୍ଦ ପାଖକୁ ନେଲା । ମଶାରି ପଡ଼ିଲା ।

ନନ୍ଦିକା ପଚାରିଲା, କହିବ ପରା ଗୁପ୍ତ କଥାଟିଏ, ସପନ କାହାଣୀ ?

କହୁଛି ଶୁଣ । ମୁଁ ସପନ ଦେଖିଲି, ତମର ପୁଅଟିଏ ହୋଇଛି । ଡାକ୍ତରାଣୀ ଶ୍ରୀମତୀ ଘୋଷ ହସି ହସି କହୁଛନ୍ତି, କେମିତି ଆପଣଙ୍କୁ ଠକି ଦେଇଥିଲି ଦେଖିଲେ ତ ? ସତେ ନନ୍ଦିକା, କି ସୁନ୍ଦର କଇଁଫୁଲ ପରି ପୁଅଟିଏ, ଆଖିରେ ଦେଖିଲା ପରି ଲାଗୁଛି । ତାର କୁଆଁ କୁଆଁ ଡାକ ଏବେ ବି ମୋ କାନରେ ବାଜୁଛି । ଏମିତିକା ସପନ ମୁଁ ଆଉ କେବେ ଦେଖିନାହିଁ । ନନ୍ଦିକା, ସପନ ମୋର ସତ ହେବ । ବିବାହର ପନ୍ଦର ଷୋହଳ ବର୍ଷ ପରେ ମଧ୍ୟ କେତେଙ୍କର ସନ୍ତାନ ହେଉଛି । ଆଉ ତମେ, ତମେ ତ କାଲି ଆଇଚ, ମତେ କାଲି ପରି ଲାଗୁଚି । ଡାକ୍ତରମାନେ ମିଛ ନ କହିଲେ ବି ବେଳେବେଳେ ଅଜାଣତରେ ଭୁଲ କହିପକାନ୍ତି । ଶ୍ରୀମତୀ ଘୋଷ ଦିନେ ତାଙ୍କର ଭୁଲ ନିଶ୍ଚୟ ମାନିବେ ।

ନନ୍ଦିକା ଓଠ ଚିପି, ଦାନ୍ତ ଚିପି, ଭିତର କୋହ ଅଟକାଇ ରଖିଲା । ଅଗାଇ ଅଗାଇ ଦୀର୍ଘଶ୍ୱାସ ଛାଡ଼ିଲା । ସତରେ ସେ ସପନ ଦେଖିଲେ ? ସପନ ସତ ହେବ ? ନନ୍ଦିକା ଅପେକ୍ଷା କରିବ ପନ୍ଦର କି ସତର ବରଷ ? ଅଥବା ତାର ମନରେ ଲିଭିଯାଇଥିବା ଆଶାର ଦୀପଟିକୁ ଜଳାଇବାକୁ ମିଛ ସପନର ଅବତାରଣା ! ଅଜର ଛଟପଟ କାମନାର ସପନ ପ୍ରଥମ ସେ ଦେଖିଲେ ?

ନନ୍ଦିକା ଉତ୍ତର ଦେଇପାରିଲା ନାହିଁ ।

ଶୋଇପଡ଼ିଲ କି ?

ନା ।

ଚୁପ୍ ରହିଲ ଯେ ?

ସପନ କଥା ଭାବୁଛି ।

ମିଛ ମଣୁଛ ?

ତମର କେଉଁ କଥା କେବେ ମୁଁ ମିଛ ମଣେ ନାହିଁ । ତମର ସପନ ଦିନେ ସତ ଫଳିବ । ଯେଉଁ କୁଳୁ କୁଳିଆ କଇଁଫୁଲିଆ ଶିଶୁଟି ସପନରେ ଆସିଥିଲା, ସେ ସତକୁ ସତ ଏ ଘରକୁ ଆସିବ । ତାକୁ କୋଳରେ ଧରି ମୁଁ ତା ମୁହଁଟେ ବୋଳ ଦେବ । ଆଉ ମୁଁ ଅପେକ୍ଷା କରିପାରିବି ନାହିଁ ।

ସତେ, ଏତେ ଆତୁରତା ?

ଦେହରେ ଉଷୁମ ପରଶ । ଚିବୁକରେ ଶିଶୁର ନିମନ୍ତ୍ରଣଚଟାଉର ମୋହର । ନନ୍ଦିକାର ବାହୁଟି ସୁନନ୍ଦର ପିଠି ଉପରେ ଖସି ପଡ଼ିଲା । ସେ ପିଠି ଆଉଁସିଲା । ଗେଲେଇ

କହିଲି, ଅତି ଗୁଣି ଗୁଣି, ମନକାମନା ମୋର ପୂର୍ଣ୍ଣ କରିବ ? ସବୁ ଦିଅଁ ଦେବତା ଖେଗରଗର ଖାଇ, କାନରେ ହାତ ଦେଇ, ମୁହଁ ବୁଲାଇଲେ । ତମେ ମୋର ଚଳନ୍ତି ଦେବତା, ମନାକାମନା ତମେ ମୋର ପୂରଣ କରିବ ?

ସୁନନ୍ଦର ରକ୍ତରେ ଅନଳର ତେଜ । ସ୍ନାୟୁରେ ବିଜୁଳିଲତା । ସେଇ ଲତାର ପୁଲକିତ ପଲ୍ଲବପାଶରେ ନନ୍ଦିକାର ନିବିଡ଼ ବନ୍ଧନ । ସୁମଧୁର ସୁଗନ୍ଧ ସୁମନସ୍ରାଣିର ସୁଷମା ପରି ନନ୍ଦିକାର ଆନନରେ ଚୁମ୍ବନର ପରଶ, ମୂର୍ଚ୍ଛାଳିଆ ଆକୁଳ ହରଷ । ଅଳିର ଗୁଞ୍ଜନ ପରି କାନରେ ବାଜିଲା ପଦେଟିଏ କଥା, ସୁନନ୍ଦ କହୁଛି, ଅବଶ୍ୟ ।

ନନ୍ଦିକାର ଅବଶ ଆଖିରେ ଲୋତକଧାର ଲୁଗୁଇ ରଖିଲା ନିଶୀଥର ନୀରବ ଅନ୍ଧାର ।

ଆନନ୍ଦର ଧାରାବାରରେ ମନଫୁଲ ଲହଡ଼ିମାଳ ପରି ସେ ଚଞ୍ଚଳ । ଟଳିଲା ଲହଡ଼ିର ଶବ୍ଦ ପରି ସେ ମୁଖର । ଫେଣାଇଉଠୁଛି ହସ । କେବଳ ତତ୍ପର ନୁହେଁ, ସହଜ । ସମସ୍ତଙ୍କ ପ୍ରତି ସଦୟ ସହାନୁଭୂତିଶୀଳ ବ୍ୟବହାର । ନିଜ ପ୍ରତି ମଧ୍ୟ । ଦିନକୁ ତିନି ଥର ତିନି ବେଶ । ନୂଆ ଶାଢ଼ି, ନୂଆ ଗହଣା । ଲୋକେ ହୁଏତ ମନେକରୁଥିବେ ନନ୍ଦିକା ଫୁଲେଇ, ବେହିଲ, ଗର୍ବୀ । ଯିଏ ଯାହା ମନେକରୁ, ସେକଥା ସେ ଭାବୁନାହିଁ । ଶାଶୁଙ୍କ କଥାହିଁ ମନରେ ଲହଡ଼ି ଭାଙ୍ଗୁଛି ।

ବୋହୂ, ସେ ମାଗିଲା ?

ସେ ମାଗିବେ, ବୋଉ, ଅପାଙ୍କୁ ଲେଖି ମୁଁ ଲଳିତା ସମ୍ବନ୍ଧରେ ଆଗ କଥା ସ୍ଥିର କରିସାରେଁ ।

ଆଉ ଦିନେ ଅବସ୍ଥା ଅଭିମାନ କରି କହିଲେ, ପଚାରିଲ ?

ସୁବିଧା ଦେଖି ପଚାରିବ ।

ମୋ ମଲା ପରେ ?

ମୋତେ ଅବିଶ୍ୱାସ କରନା ବୋଉ, ସେ ବଳେଇଯିବେ ନାହିଁ । ଅପା ଲେଖିଛନ୍ତି, ଲଳିତାର ବାହାବାଲି ଭାଉଜ କୁଆଡ଼େ ଅମଙ୍ଗ ହେଉଛି । କହୁଛି, ସହରୁଣୀ ପାଖକୁ ଲଳିତାକୁ ସେ ପଠାଇବ ନାହିଁ । ତାର ଭାଇ ଅମଙ୍ଗ ନୁହନ୍ତି । ତା ଭାଉଜ ପାଖକୁ ମୁଁ ନିଜେ ଚିଠାଉ ଲେଖିବି ।

ଏମିତ ଚଳ ଗଢ଼ ଗୃହଥିବ, ମୋର ମରଣ ହେବ ।

ଏତେ ଦୂରକୁ କଥା ଯିବ ନାହିଁ । ଯାହା ପାଇଁ ତା ଶ୍ୱଶୁରଙ୍କର ଆପତ୍ତି, ବରଂ ସେ ବାଟ ସଫା କରିଦେବ । ଅଲୋଡ଼ା ଆଦର, ବେହୁଆ ଚଳନରେ ମୋର ପ୍ରୟୋଜନ ନାହିଁ ।

ନନ୍ଦକା ହସିଉଠିଲା କଣ କଣ । ଆଗରେ ଶାଶୂ ବସିଛନ୍ତି । ଏମିତି ମନ-ଫୁଲଣିଆ, ବେପରବା ହସ ଯେ କୁଳବଧୂକୁ ସାଜେ ନାହିଁ, ଏକଥା ସେ ଭୁଲିଗଲା ।

ଚଇତ ମାସର ଦୁଇ ପହର । ଥିରି ଥିରି ଚଇତି ବାଆରେ ଆମ୍ବ ବଉଳର ମଧୁର ବାସନା ମନ ଭୁଲାଉଛି ।

ଅଭସ୍ୱା କଟମଟ କରି ଚାହିଁଲେ । ଦେଖୁ ଦେଖୁ କଠୋର ଦୃଷ୍ଟି ଦାରବଗଲା । ଆରେ, ବୋହୂ କ କଥା କହୁଛୁ ? ସତେ ତା ମନରେ ସେଇଆ ଅଛି ? କାହିଁକି ଏ କଥା ସେ କହିଲା ? କାଲି ସକାଳେ ଡୋଲିରୁ ଗୋଡ଼ କାଢ଼ିଲା ପରି ଦିଶୁଛି । କିଏ କହିବ ଆଠ ବରଷର ବୋହୂ ? ଦେହର ସୁବର୍ଣ୍ଣ ବରନ ଚହଟିଉଠୁଛି । ପାନପତର ପରି ସୁନ୍ଦରିଆ ମୁହଁରେ ଆନନ୍ଦର ଆଭା । ମଥାରେ ଝଟକୁଛି ସିନ୍ଦୂର ଗାର । କପାଳ ଉପରେ ଟୋପି ଟୋପିକା ଚନ୍ଦନ ପାଟି, ମଝିରେ ନେଳିଆ ବିନ୍ଦୁ । ଦେହରେ ଆକାଶିଆ ସୁନ୍ଦିନ ବସନ ସର୍ବାଙ୍ଗରେ ସୁନାର ଗହଣା ।

ଅଭସ୍ୱାଙ୍କର ଆଖି ଓହ୍ଲାଇଆସିଲା ତାର ତାଳୁରୁ ତଳିପାଯାଏ । କିଏ କହିବ ନନ୍ଦକା ଆଠ ବରଷର ବୋହୂ ?

ଏଗୁଡ଼ା କଥଣ ଭଣ୍ଡକୁ ଆଣୁଛ ବୋହୂ, ଲଳିତାଠି କଅଣ ମୋହର ମରିଛି ? ସଂସାରରେ ଆଉ କେହି ଝିଅ ନାହିଁ ? ପୁଅ ମଙ୍ଗିଲେ ଆଉ ଯେଉଁଠି ହେଲେ ହେବ ।

ସମସ୍ତେ ଆଗ ଖୁଣିବେ । କହିବେ, ସଉରୁଣୀ ଅଛି ।

ହୁଁ । ତେବେ, ମୋର ଆଉ ଗୋଟାଏ ବୋହୂ ଲୋଡ଼ା ନାହିଁ । ତମେ ପୁଅଟିଏ କର, ଯେଉଁଠି ତୁମର ମନ ମାନୁଛି ।

ନନ୍ଦକା ମୁରୁକେଇ ହସିଲା ।

କିଏ ପଞ୍ଚାଏ ଗାଁ ମାଇପେ ଆସିଲେଣି । ପାଟି ଶୁଭୁଛି । କହର ପାଟି ବି ଶୁଭୁଛି । କାହିଁକି ସେମାନେ ଆସିଛନ୍ତି ନନ୍ଦକାକୁ ଅଜଣା ନାହିଁ । ଅଠ ବରଷର ବୋହୂକୁ ନୂଆ ରୂପରେ ଦେଖିବେ, ନିଜ ମନକୁ ନିଜେ କୁରୁକୁରୁ କରିବେ । ପଛରେ କୁହାକୁହି ହେବେ, ଦେଖ ଗୋ, କେଡ଼େ ଫୁଲେଇ । ଘରେ କା ନାହିଁ କି ନଣନ୍ଦ

କା

ନାହିଁ, କଏ ତାକୁ ବେଣ କରୁଅଛ ? ନଜେ ନଜେ । ଗେଳ୍ପ କଣ୍ଠରେ, କାହା ପାଇଁ ଏ ସଜ ?

ଉତ୍ତର ତାର ମନ ଭିତରେ, ନଜପାଇଁ । ଏତକ ମୋର ସମ୍ବଳ । ନୂଆବୋହୂ ଆସୁଛି । ସବୁ ସେ ପିନ୍ଧିବ, ସବୁ ସେ ନାଇବ । ମୋ ବେଳକାଳ ସରିଆସିଲା । ଲଳିତା ଆସିବ । ତା ପାଖରେ ନୂଆ ବୋହୂ ହୋଇ ମୁଁ ଠିଆ ହେବ ନାହିଁ । ମୁଁ ନନ୍ଦକା, ବୃଦ୍ଧୀ ପାଲଟିବ ।

ଲଳିତା, ବାଲିକାର ପିଲା । ସେଇ ହେବ ନୂଆ ବୋହୂ । ଏ ସବୁର ଅଧିକାରିଣୀ ସେ ହେବ । ମୁଁ ଆସିଛି ଆଗ, ମୁଁ ସବୁ ଭୋଗ କରିବ । ପାଲଟା କରିବ । ବୟସ୍କ ସେମାନେ ଗାଁ ମାଇପେ, କରନ୍ତୁ ଟାହିଟାପରା । ଲଳିତା ନ ଆସିଲେ, ଆଉ କାହାର ଆସିବା ପାଇଁ ମୁଁ ବାଟ ସଫା କରିଦେବ ।

ବେଳକାଳ ମୋର ସରିଆସିଲା !

ଅବାଧ ଲୋତକ ଝରିଆସିଚ ଆଖିରୁ । ଗାଁ ମାଇପେ ଖଟ୍ଟାରେ ପଶିଲେଣି । ସେମାନଙ୍କୁ ବିଦାୟ କରି ଆଜ ସେ ଦୁଇଟି ଚିଠି ଲେଖିବ । ଆଗ ଲେଖିବ ସୁନନ୍ଦକୁ, ତମେ ଆସ ।

କାନ୍ଦୁଛ, ବୋହୂ ?

ନାହିଁ ତ !

ଆଖିରୁ ଲୁହ ପୋଛି ନନ୍ଦକା ଉଠିଲା । ଅଭସ୍ଥା ଥକ୍କା ହୋଇ ଗ୍ରହି-ଚାହିଁଲେ ।

ବଡ଼ ଭାଉଜ କଲାହାଣ୍ଡିରୁ ଚିଠି ଲେଖିଛନ୍ତି । ନନ୍ଦକାର ବଡ ଭାଇ ସେଠି ପୋଲିସ ଇନ୍‌ସପେକ୍‌ଟର । ଭାଉଜଙ୍କ ପେଟରୁ ଜନମିଲେ ପୁଅ ଝିଅ ହୋଇ ପାଞ୍ଚଟି । ଦୁଇଟି ବାହୁଡ଼ିଲେ । ସବା ବଡ଼ଟି ଛଅ ବରଷର ଝିଅ । ହାଉଡ଼ୀଟିଏ । ଆଜଯାଏ ଭଲହୋଇ ପାଟି ଫିଟିନାହିଁ । ମଝିଆଁଟି ତିନି ବରଷର ପୁଅ । ଅପଢ଼ାଆଣୀ । ସମ ଅଇଁଠା । କେଉଁ ପୁଅରେ ସେ ଲେଖା ? ସବା ସାନଟି ଏଲୁଡ଼ିଶାଳରୁ ଗଲା । ଭାଇ ହେଲେଣି ଉଦାସ । ଭାଉଜଙ୍କ ଆଖିରେ ସବୁବେଳେ ଲୁହ । ଗ୍ରେଟ ଚିଠି ଟଣ୍ଡିକରେ ବି ଲୁହର ଦାଗ ।

ପଢ଼ୁ ପଢ଼ୁ ନନ୍ଦକାର ଆଖିରେ ଲୁହ ଛଳ ଛଳ ହେଲା,—ଏ କି କଥା କରିବାକୁ ଯାଉଛି, ନନ୍ଦୀ, ନିଜ ହାତରେ ଜହର ଗୋଳି ପିଇବ ? ଦଅ ବଥାଏ ସିନା, ଆଉ ବଥାଏ

ନାହିଁ । କେଉଁ ପୁଅ କାହାର ? ମୋ ଯାନକୁହା ମାନ, ନିଜେ ଫାଶ କରି ଦେଇଥିରେ ନିଜ ବେକ ଗଳେଇଦେଉଥିଲା ।

ନିଧିକାର ଛାତି ଦମଦମ, କାଲେ କିଏ ଚିଠିଖଣ୍ଡି ଦେଖିବ, କାଲେ ପଡ଼ିଯିବ ତା ସ୍ୱାମୀଙ୍କ ହାବୁଡ଼ରେ ? ସେ ଚିଠିଖଣ୍ଡି ଟିକି ଟିକି କରି ଚିରିପକାଇଲା । ଦୀର୍ଘଶ୍ୱାସ ଛାଡ଼ି ଆଖି ପୋଛିଲା । କବାଟ କିଳି ସେ ଚିଠି ପଢ଼ୁଛି । ବି ପହରର ଆଲୁଅ ଝରକା ସେପାଖେ ଉପହାସ କରୁଛି । ଚାଇଠ ବାଆର ମୁଖର ହସ ।

ଆଖି ଫେରିଗଲା ଯାନ ଭାଉଜଙ୍କର ଚିଠି ଉପରକୁ,—ତମ ପରି ବୁଦ୍ଧିଆ ଝିଅର ବୁଦ୍ଧି କିଏ ପୋଡ଼ି ଜାଳି ଅଙ୍ଗାର କଲା ମ ? ମିଣିପଙ୍କଠେଇଁ ବିଶ୍ୱାସ ? କଅଣ ସେମାନେ ବୁଝିବାନ୍ତ ତମେ କାହିଁ ଜାଣିବ ? ମଙ୍ଗ ଛାଡ଼ି ପର ହାତକୁ ବଢ଼ାଇଦେଲେ ତମେ ଚାହିଁବ ମଙ୍ଗୁଆଳର ମରଜି ଉପରେ । ବଲବଲ କରି ଅଥଳ ପାଣିକି ଗୁହିଁରହିଥିବ । ଦେଖ ମୋର ଅବସ୍ଥା । ଗୁଣ୍ଡା ପିଲା ନେଇ ଫୁଲବାଣୀ ପରି ଆନରେ କେଡ଼େ ଦାହଣଗସ୍ତ ହେଉଛି । ଭାଇ ତମର ଅବକାଶ ବାବୁ । ଯେଉଁଠି ଥିଲେ ସେଇଠି । ହବୁବେଳେ ମଦ ଖାଇ ମାତାଲ । ଘରକୁ ଆଇଲେ ପିଲାଠୁଁ ଆରମ୍ଭ କରି ମୋ ଯାଏ କିଏ ନ ସହୁଛି ତାଙ୍କ ହାତ ଗୋଡ଼ର ତାପ ! ମତେ ମରଣ ହେଉ ନାହିଁ । ଗୁରି ପୁଅରୁ ଯେଉଁ ଗୋଟିକୁ ମନ, ତମେ ନିଅ ନିଧିକା, ତମର ଧରମ ହେବ । ଜାଣି ଜାଣି କାଳସାପ ଆଣି ବେକରେ ପକାଇବ କାହିଁକି ?

ନିଧିକା ଭାବିଲା, ଯାନଭାଇ ଏକଥା ଧ୍ୱେଲେ ? ଧାଇଁଯାଇ ଆକଟ କରିବାକୁ ମନ ହେଉଛି; କିନ୍ତୁ ନାଗୁର । ଭାଉଜଙ୍କ ଉପଦେଶ ସେ ଗ୍ରହଣ କରିପାରିବ ନାହିଁ । ତାଙ୍କର ଅନୁରୋଧ ମଧ୍ୟ ସେ ରକ୍ଷା କରିପାରିବ ନାହିଁ । ସେ ସାହସ ତାର ନାହିଁ ।

ଆହୁରି ଗୋଟିଏ ଦୀର୍ଘଶ୍ୱାସ । ଚିଠି ଚିରା ହେଲା ।

ବଡ଼ ନଣନ୍ଦ ଶୋଭାଙ୍କର ଚିଠି,—ଶେଷକୁ ସେ ମର୍ଜିଲ ମ ନୂଆବୋହୂ । ନଣନ୍ଦ ଲଳିତାକୁ ଏତେ ଭଲ ପାଏ ବୋଲି, ତାର ସେଇ ସ୍ୱାଦାଳୀ ଭାଉଜ ଦେଦେଇ ହେଉଥିଲା । କାହା ପାଖରେ ଏ ଗୃତର ? ଗାଆଁ ଲୋକେ ସମସ୍ତେ ତା ଗୁଣ ଜାଣନ୍ତି । ଖଣ୍ଡିଆ ଘରକୁ ସମ୍ପତ୍ତି ଭିତରେ ଦି'ମାଣ ଜମି, ଭାଗ ଦିଆ ହୋଇଥାଏ । ଗେରସ୍ତ ତେଲ, ଲୁଣ, ଡାଲି, ଚାଉଳ ପକେଇ ଗ୍ରେଟ ଦୋକାନଟିଏ କରିଛି । କି ଲାଭ ହେବ ସେଥିରୁ ଯେ ସୁରୁଖୁରୁରେ ସଂସାର ଚଳିବ ? ବେଳେ ବେଳେ ସ୍ୱାଙ୍କ ଘରେ, ତାଙ୍କ ଘରେ ଲେଖାପଢ଼ି କାମ କରି ଗୁଜୁରାଣ ମେଣ୍ଟାଏ ।

ହେଲେ, ବଂଶୀଧର ଲୋକଟି ଭଲ । ଯେତେ ଯାହା କାହ, ହସ ଛଡ଼ା ମୁହଁ ଶୁଖା ଜାଣେ ନାହିଁ । ଲଳିତାର ବସ୍ୟସ ହେଲା । ଗରିବ ଘର । ଦେଇପାରିଲେ ସିନା ବଡ଼

ଘରେ ଜମିତ୍ୟ କରିବାକୁ ମନ କରିବ, ନୋହିଲେ ଲୋକହସା ହେବା ଯାହା। ସମ୍ଭାଧର ସେ କଥା ଜାଣେ। ମୋ ଭାଇ ତ କିଛି ବୁଢ଼ାହଡ଼ା ହୋଇ ନାହାନ୍ତି, ପୁଣି ଜନେ ଭାଉଜ ମୋର ତଠି ଲେଖି ପ୍ରସ୍ତାବ ପକେଇଛନ୍ତି, କିମ୍ବା ଧର ନ ମଙ୍ଗନ୍ତେ କାହିଁକି ?

ତାଙ୍କ ଘରଣୀ ମାଗୁଣା, ଆଉ ମଙ୍ଗିଲେ ନାହିଁ। ଲଳିତା ତାଙ୍କର ହାତବାରିସି। ଦଶ ବରଷରୁ ଦଶ ମାସ ଯାଏ ପାଞ୍ଚଟି ପିଲା। ଗୁହାଳଗୋଠ, ବାସନମଜାରୁ ଅର୍କ କୁଟା, ଚୂଲିଚୁଲ୍ଲୀ ଯାଏ ସବୁ କରେ ଲଳିତା। ତଥାପି, ଭାଉଜଙ୍କର ଟୋଡ଼ ହିଙ୍ଗୁଳ ସହେ। ମନ ମାରି, ମୁହଁ ଶୁଖାଇ ରହେ। ପଚାରିଲେ ଲଳିତା ପଦେ ନିନ୍ଦା କରି କହିବ କି ? ସେକାଠିକା ଝିଅ ଏବକାଳେ ମିଳନ୍ତି ନାହିଁ ମ ଭାଉଜ !

ମାଗୁଣା ଯେମିତି ଶୁଣିଲେ, ବାହାଘରରେ ତାଙ୍କର ପଇସାଟିଏ ଖରଚ ହେବ ନାହିଁ, ଯାହା ଲୋଡ଼ା, କେହି ଜାଣିବେ ନାହିଁ, ସବୁ ଅମେ ଦେବା, ମୁଣ୍ଡହଲ ବନ୍ଦ କରି କହିଲେ, ଯାହା ଭଲ ମଣୁଛ କର। ବାପା ମା ନାହାନ୍ତି, ଛେଉଣ୍ଡ ପିଲା। ସେ ସୁଖ, ଆନନ୍ଦରେ ରହୁ।

ଭାଉଜ ମ, ଲଳିତାକୁ ଦେଖିଲେ ତମେ ଖୁସି ହେବ। ଆଠ ବରଷ ତଳେ ଯେମିତି ଦେଖିଥିଲ, ସେ କଣ ସେମିତି ଅଛି ? କେଡ଼େ ସୁନ୍ଦରଆଟିଏ ହେଲଣି। ତମ ପାଖରେ ଅବିକଳ ତମ ସାନ ଭଉଣୀ ପରି ଦିଶିବ। କାନ କାଟିଲେ ବଚନ ବାହାରିବ ନାହିଁ। ତମର ସେ ଅବାଧ ହେବ, ଏହା ମୁଁ ଭାବି ପାରୁ ନାହିଁ। କିନ୍ତୁ ଭାଉଜ, କଥାଟିଏ ନ ଲେଖି ରହି ପାରୁନାହିଁ।

ନନ୍ଦିକାର ଆଖି ସ୍ଥିର ହେଲା ଶୋଭା ଦେବୀଙ୍କର ଶେଷ ଧାଡ଼ିରେ। ଯେତିକି ସେ ବାରମ୍ବାର ପଢ଼ିବାକୁ ଲାଗିଲା; ନୂଆ କଥାଟିଏ କରିବାକୁ ମନ କରିଛ। ଯେତେହେଲେ ବି ହେବ ସମ୍ପୂର୍ଣ୍ଣ। ସଂସାର କଥା ତ ଜାଣ। ଯଦି ଭେଣ୍ଡି ହୁଏ, କର୍ମକୁ ନିନ୍ଦିବ ସିନା ! ତମର ଆତୁରତା ଦେଖି ସମ୍ବନ୍ଧ ପକାଇଲି। ସବୁ ସ୍ଥିର ହେଲା। ତଥାପି, ଭଲକରି ଭାବିଚିନ୍ତି, ବୁଝି ବିଚାରି ଯାହା କରୁଛ କର। ପଛେ ଯେପରି ଅନୁତାପ ନ କର।

ନନ୍ଦିକାର ମନରେ ଘୋଟିହେଇ ହେଲା ସେଇ ଧାଡ଼ିକ, ନିଜ ସୁନା ଯଦି କେବେ ଭେଣ୍ଡି ହୁଏ !

ଭାବିପାରିଲା ନାହିଁ। ମୁଣ୍ଡ ବଥେଇଲା। ଏହା କେବେ ସମ୍ଭବ ହୋଇପାରେ ? କାହାକୁ ପଚାରିବ, କିଏ ସଦୁପଦେଶ ଦେବ ?

ନନ୍ଦିକା ପଲଙ୍କ ଉପରେ ଶୋଇ ଛଟପଟ ହେବାକୁ ଲାଗିଲା। ନିଦ ହେଉନି। ଶୋଭା ଦେବୀଙ୍କର ସତର୍କ ବାଣୀର ଉତ୍ତର ସେ ଖୋଜି ପାଉନାହିଁ।

ଝର୍କିର ଖଡ଼ ଖଡ଼ କରି ଶାଶୁ ଡାକିଲେ, ବୋହୂ, ବୋହୂ !

ନନ୍ଦକା ଧଡ଼ପଡ଼ ହୋଇ ଉଠିଲା । କବାଟ ଖୋଲିଲା । ନୂଆ କଥା । ଶାଶୁ ଏମିତି କେବେ ନିଜେ ଆସି ଡାକି ଯାଉନ୍ତି ନାହିଁ । କ'ଣ ସେ ଚାହୁଁଛନ୍ତି ? କାହିଁକି ନିଜେ ସେ ଧାଇଁଆସିଛନ୍ତି ?

ଅଭସ୍ୱା ଘରଭିତରକୁ ନ ଆସି ପଦାରେ ଠିଆ ହୋଇ ପଚାରିଲେ, କଏ ସବୁ ଚିଠି ଦେଇଛନ୍ତି କି ?

ଶୋଭା ଅପା ।

ଆଗ୍ରହରେ ଉଜ୍ଜ୍ୱଳ ଦିଶିଲା ଅଭସ୍ୱାଙ୍କର ଶୁଖିଲା ମୁହଁ । ସେ ଘରଭିତରକୁ ପଶିଆସିଲେ । ଖଟ ଉପରେ ବସି କହିଲେ, କ'ଣ ଲେଖିଛି, ପଢ଼ । ସମସ୍ତେ ଭଲ ଅଛନ୍ତି ନା ?

ହଁ ।

ନନ୍ଦକା ଚିଠିଖଣ୍ଡି ଧରି ପଢ଼ିବାକୁ ଲାଗିଲା । ଶେଷ କେଇପଦ ପଢ଼ି ଶାଶୁଙ୍କୁ ଶୁଣାଇବାକୁ ତା'ର ସାହସ ହେଲା ନାହିଁ । ବୁଢ଼ୀଙ୍କର ମନର ନଗର ଭାଙ୍ଗିବ । ହସିଲା ଆଖିକୁ ଘୋଟିଆସିବ ସନ୍ଦେହର କଳାବାଦଲର ମେଘ । ବରଷିବ କରଡ଼ା ମଥାରେ । ତୋଫାନ ବହିବ, ବିଜୁଳି ମାରିବ । ଘଡ଼ଘଡ଼ିର କାଳକାଳା ରଡ଼ିରେ ମେଦିନୀ ଥରିବ । ସବୁ ଉତ୍ପାତ, ସବୁ ତୋଡ଼ ସହିବ ଏକା ଜଣେ, ସେ ନନ୍ଦକା । ତାର ଦୁଃଖ ଓ ନୈରାଶ୍ୟର ଭାଗ ନେବାକୁ ଆଉ ଜଣେ କେହି ନାହିଁ ।

ଟିକିଏ ରହି ଅଭସ୍ୱା କହିଲେ, ଭଲ ପିଲାଟିଏ ଲଳିତା ! ପିଲାଦିନେ ଏଠିକି ଆସିଥିଲା । ମୋ ପାଖ ଛାଡ଼େ ନାହିଁ । ସତେକି ସେ ଏଇ ଘରପାଇଁ ଜନମିଥିଲା ଗୋ ! ଆଠ ନଅ ବରଷର ଝିଅଟାଏ, ସେ ପୁଣି ମୋ ଗୋଡ଼ରେ ହାତ ଦିଏ !

ଭଲ ପିଲାଟିଏ !

ହଁ ମା, ସେମିତି ଝିଅଟିଏ ଲୋଡ଼ା । ଭୂଷାର ବୋଲିତ ହେବ । ସବୁ କାମକୁ ଆଗ ଅଣ୍ଟା ଭିଡ଼ି ବାହାରିବ । ଗୁରୁ ପଦ କହିଲେ ସହିବ । ତମ ମନକୁ ତ ପାଉଛି, ସୁନନ୍ଦ— ?

ନନ୍ଦକାର ବନ୍ଦୋବସ୍ତ କୋହ ମଥା ଟେକିଲା । ଧୈର୍ଯ୍ୟର ବାଣ ଖଣ୍ଡ ବୋହିଯାଇଦେଲା, ସତେକି ପଘା ଛିଣ୍ଡାଇ ଗୋଟିଆ ଶିଙ୍ଗରେ ଭୁଷିବାକୁ ଛୁଟି-ଆସିବ । ଆରେ, ଦୁନିଆର ଢଙ୍ଗ ଏଇଆ ! ଆଠବରଷର ସେବା, ଭକ୍ତି, ଭଲ ପଣିଆ, ସର୍ବଂସହଣୀ ଗୁଣର ଏଇ ପରିଣତି ? ଭାଗ୍ୟ ପଛେଇଗଲା ବୋଲି ଏମାନେ ସବୁ ଦାଉ ସାଧିବେ ? ମୁହଁକୁ ମୁହଁ ମୁହଁ ଶାଶୁ ତାକୁ ଅଜାଣରେ ଜଣାଇଦେବାକୁ

ସ୍ୱଭାବ ! ପୁଅ ଆଗରେ ମନର କଥା କହିବାକୁ ସାହସ ନାହିଁ, ପରଝିଅର ସର୍ବନାଶ କରିବାକୁ ତାଙ୍କୁ କିଏ କହିବେ ବୁଢ଼ୀକା ?

ଦୁର୍ଗାଇଦେବ ଅସହାୟ୍ୟ ତାର ପଣା ? କହିବ କି, ଏ ସମ୍ବନ୍ଧ ହୋଇପାରିବ ନାହିଁ, କୌଣସି ସମ୍ବନ୍ଧ ହୋଇପାରିବ ନାହିଁ ? ତମର ସୁନନ୍ଦ ଥରେ ବିବାହ କରିଛନ୍ତି, ପତ୍ନୀ ବଞ୍ଚିଥାଉଣୁ ଅନ୍ୟ ବିବାହ ସେ କରିପାରିବେ ନାହିଁ । ଜାଣି ଜାଣି ନନ୍ଦିକା ଆତ୍ମହତ୍ୟା କରି ମରିବ ନାହିଁ । ବରଂ, ତୁମେ—

ଶାଶୁଙ୍କର ପ୍ରସ୍ନିଳ ମୁହଁରେ ଅଶ୍ରୁ । ସେ ନନ୍ଦିକାର ମରଣ କାମନା କରନ୍ତି । ନଜର ଆଶାଦେବୀ ପାଖରେ ନନ୍ଦିକାକୁ ବଳି ଦେବାକୁ ଚାହାନ୍ତି । ହେଉ, ତାହାହିଁ ହେଉ । ଗ୍ରହ ତଳର କୋହ ନାଚ କୁହ ହତାଶ ହୋଇଛି ପଣା ଛୁଣ୍ଡାଇ ପାରି ନାହିଁ । କ୍ଲାନ୍ତ ହୋଇ ମଥା ନୋଇଁଛି । ତଳେ ପଡ଼ିଛି ଏଥର ଘାତକର କର୍ମ ଭରସା କେବଳ ଆଖିର ଲୁହ ।

ତମେ କାନ୍ଦୁଛ ?

ନାହିଁ ତ !

ନନ୍ଦିକାର ଆଖିରୁ ଲୁହ ଝରିଲା । ଅଞ୍ଚଳରେ ଯେତେ ପୋଛିଲେ, ସେ ଅବାଧ ଲୁହ ଅଟକିଲା ନାହିଁ । ସେ ଅନୁଭବ କଲା, ଅଜାଣତରେ ସେ ତାର ମନର କଥା ପ୍ରକାଶ କରି ଦେଇଛି, ଦୁନିଆକୁ ଜଣାଇ ଦେଇଛି । ଯାହା ସେ କହୁଛି ଯାହା ସେ କରୁଛି, ସବୁତାର ଭଲପଣିଆର ସୁନାମ ପାଇଁ ପ୍ରତାରଣା । ସେ କାହା ଗୃହେ ନାହିଁ କାହାକୁ ଲୋଡ଼େ ନାହିଁ । ସେ ଲୋଡ଼େ ଜଣକୁ, ସେ ତାର ଜୀବନସର୍ବସ୍ୱ ସୁନନ୍ଦ, ତାର ଧନ ଦଉଲତ ହେଉ ଜଣଙ୍କର ସ୍ନେହ । ତାଙ୍କ ପାଖରେ କି ନନ୍ଦିକାକୁ ପ୍ରତାରଣା କରିବାକୁ ପଡ଼ିବ ?

ବୁଝିଲି ।

ନନ୍ଦିକା ଚମକି ଉଠିଲା । ହଠାତ୍ କହିଲା, ମୋ ଉପରୁ ତମର ବିଶ୍ୱାସ ତୁଟିଛି ବୋଲି, ସେତିକ ମୋର ଦୁଃଖ । ତମର ପୁଅ ଝିଅଙ୍କ ହେବେ ଏ ଧାରଣା ଯଦି ମୋର ଥାଆନ୍ତା, କେଉଁ ମୁହଁରେ ଶୋଭା ଅପାଙ୍କ ପାଖକୁ ଚିଠିଟିଏ ଲେଖି ମୁଁ ନିଜେ ଲଳିତାର ସମ୍ବନ୍ଧ ସ୍ଥିର କରିଥାନ୍ତି, କୁହ ?

ପୁଣି ନନ୍ଦିକାର ଆଖିରୁ ଲୁହ ଝରିଲା ।

ଅଭୟା କହିଲେ, ତେବେ ମୁଁ ଭୁଲ ବୁଝିଥିଲି ।

ନନ୍ଦିକା ନଇଁପଡ଼ି ଶାଶୁଙ୍କର ଗୋଡ଼ ଧରିଲା । ଅଶ୍ରୁଳ କଣ୍ଠରେ କହିଲା, କେବେ ତମର ଅବାଧ ହୋଇନାହିଁ, କି ଆଜି ହେବାକୁ ଚାହୁଁନାହିଁ । ଭଲ ଦିନ, ଭଲ ତିଥି ଦେଖି ବାହା ସ୍ଥିର କଲେ ବାହାଘରର ଆୟୋଜନ କରିବି ।

ଅଭୟା ଉତ୍ତର ଦେଲେ ନାହିଁ । ଧୀରେ ଧୀରେ ଖଟ ଉପରୁ ଉଠି ନିଜ କୋଠରି ଭିତରକୁ ଗଲେ । ପଛକୁ ଫେରି ଚାହିଁଲେ ନାହିଁ ।

ନନ୍ଦିକା ଥକା ହୋଇ ଅନାଇଁ ରହିଲା । ମନ କହିଲା, ସେ ବିଶ୍ୱାସ କରିନାହାନ୍ତି । ସେ ଚାହାନ୍ତି ପରୀକ୍ଷା । ନୀରବ ଭାଷାରେ ସେ ମୋର ପ୍ରାଣଦଣ୍ଡ ଆଦେଶ ଦେଇଗଲେ । ମଥା ପାତି ସେ ଆଦେଶ ମୁଁ ଗ୍ରହଣ କରିବି ।

ନନ୍ଦିକାର ଦୁଇ ଗାଲ ତିତାଇ ଦୁଇ ଧାର ଲୁହ ଝରି ଆସିଲା ।

ଫାଶୀଖୁଣ୍ଟ ଲୋଡ଼ା ନାହିଁ । ଘାତକ ବା ତାର କୃପାଣ ମଧ୍ୟ ଲୋଡ଼ା ନାହିଁ । ସେ ନିଜେ ନିଜର ଘାତକ ହେବ । ସେ ହେବ ନିଜର କୃପାଣ । ହସି ହସି, ହସିହସିକା ସେ ମଶାଣିଭୂଇଁକୁ ଯିବ । କେହି ତାର ବାଟ ଓଗାଳିପାରିବେ ନାହିଁ । ପଛରୁ କେହି ପାଟି କଲେ ସେ କାନରେ ହାତ ଦେବ । ଆଖିର ଲୁହ ଶେଷ ହେଉ ।

ନନ୍ଦିକା ହସିବାକୁ ଲାଗିଲା । ଶୋଇବାର ଚଟିଟି ମଧ୍ୟ ଟିକି ଟିକି କରି ଚିରି ପଦାକୁ ପକାଇଲା । ସେ ଚଟିରେ ଟିକିଏ କାନ୍ଦୁ ଅଛି । କୌଣସି କାନ୍ଦୁ ତାକୁ ବାଧା ଦେବ ନାହିଁ ।

ସେ ସତେକି ଉନ୍ମାଦିନୀ ହୋଇଛି । ଘରର ଏ ପାଖରୁ ସେପାଖ ହୋଇ ସେ କେବଳ ହସୁଛି ।

କନି ପାଖକୁ ଆସିଲା । ମୁହୂର୍ତ୍ତେ ଚାହିଁଲା । ନୂଆଉ ବାଇଆ ହେଲେ କି ? ମାଇପଣ୍ଡି କେତେ ଡେରି ଅଛି । ଘରଭିତରେ ଏପାଖରୁ ସେପାଖ ହୋଇ ଖାଲି ସେ ହସୁଛନ୍ତି । ଯାହାଙ୍କ ଦେହରୁ ଭୁଲରେ ବି ଟିକିଏ ଲୁଗା ଖସେ ନାହିଁ, ତାଙ୍କର ଆଜି ଦରନଙ୍ଗୁଳୀ ବେଶ ! ଆର ଝଙ୍କାରେ ନିଜ କୋଠରିରେ ବୁଢ଼ୀ କାନ୍ଦୁଛନ୍ତି । ପାଖକୁ ଗଲେ ଚହିଁକି ଉଠୁଛନ୍ତି । ପାଟି ଶୁଭୁନାହିଁ । କଅଣ ଆଜି ଏ ଘରେ ହେଉଛି ?

ନୂଆଉ !

କଅଣ କି, କନି ?

ଭାଇ ଆଜି ଆସିବେ ବୋଲି ରାଜୀବ ଖବର ପଠେଇଛନ୍ତି ।

କେବେ ତ ରାଜୀବ ଆଗରୁ ଏମିତି ଖବର ପଠାନ୍ତି ନାହିଁ ?

ତାଙ୍କର ଆଜି ଆସିବାର ଥିଲା ଯେ ଜ୍ୱର ଆସିବେ ବୋଲି ସେ ଆସିପାରିବେ ନାହିଁ । ଏଇ ଖବର ସେ ପଠାଇଛନ୍ତି ।

ସତେ ?

ନନ୍ଦିକା ଗମ୍ଭୀର ଦେଖାଗଲା । ନିଜର ଦେହକୁ ଚାହିଁ ନିଜକୁ ସେ ଧିକ୍କାରିଲା, ଛି, କେଡ଼େ ଅନନା !

ଏକ କଲ ପର କହିଲା, ମୋର ମୁଣ୍ଡ ବାନ୍ଧିଦେବ ନାହିଁ, କନି ?

କନି ଖୁସି ହେଲା । ପାଖକୁ ଆସି ନନ୍ଦିକାର ହାତ ଧରି ପଚାରିଲା, ତମର ଆଜି କଅଣ ହୋଇଛି ନୂଆ, ଏମିତି କାହିଁକି ଦିଶୁଛ ? ତେଣେ ଅପା କାହିଁକି କାନ୍ଦୁଛନ୍ତି ? କହିବନାହିଁ ?

ଆଜି ଦିନକ ମୋ କାନ୍ଦିବେ ଗୋ କନି, କାଲିଠୁଁ ସେ ହସିବେ । ଦେଖିବ ନାହିଁ ଫେର୍ । ତମ ଭାଇ ପରା ଆସିବେ କନି, ଟିକେ ମୋର ମୁଣ୍ଡ ବାନ୍ଧିଦିଅ । ମତେ ଅସନା ଦେଖିଲେ ସେ ବିରକ୍ତ ହେବେ । ଆସ, କନି ।

କନି ଭୁଲିଲା, ନନ୍ଦିକା ହସି ହସି କାନ୍ଦୁଛି । କେଉଁ ଦୁଃଖରେ କେଜାଣି, ନିଜ ଉପରୁ ବିଶ୍ୱାସ ହରାଇ ସେ ହୋଇଛି ଅଳାଜୁକା ।

ଯେଉଁ ଘରେ ପିଲା ନାହିଁ ସେ ଘର ଘରରେ ଲେଖା ନୁହେଁ, ସେ ଘର ଅପନ୍ତରାଠୁଁ ବଳି । ପର ମଣିଷର ଔରସ ପିଲାକୁ ନିଜର ବୋଲି ଗ୍ରହଣ କଲେ ବାହାର ମନ, ନୈତିକତାର ଜଗଲା ଥଣ୍ଡା ଏମନ୍ତ ଧିଆ ମନ ମାନିବ ସିନା, ଆତ୍ମାର ଅତୃପ୍ତ ନାଦ ନାହିଁ ନାହିଁ କରିଉଠିବ । ତମେ ସପନ ଦେଖିଛ । ସପନ ତମର ସତ ଫଳିବ । ମୋର ମନକାମନା ପୂର୍ଣ୍ଣ ହେବ । ତମେ କଥା ଦେଇଛ । ସେଇ ଭରସାରେ ମୁଁ ସବୁ ସ୍ଥିର କରିସାରିଛି । ତମ ତୁଣ୍ଡରୁ ନାହିଁ ପଦ ଶୁଣିବାକୁ ମୋର ଆଉ ଧୈର୍ଯ୍ୟ ନାହିଁ ।

ସୁନନ୍ଦ ଚାହିଁ ରହିଲା ନନ୍ଦିକାକୁ । ରାତି ଅଧ । ଜାଗର ଉଆଁସ ରାତି ଦିନ ଅଛି । ବାହାରେ ଅନ୍ଧାର । ଘର ଭିତରେ ଆଲୁଅ ଜଳୁଛି । କିନ୍ତୁ ସେ ଆଲୁଅ ନନ୍ଦିକାର ରୂପର ଶିଖା ପାଖରେ ନିଷ୍ପ୍ରଭ । ନନ୍ଦିକା ବସିଛି ଟୁଲ୍ ଉପରେ । ପଲଙ୍କ ଉପରେ ତଳକୁ ଗୋଡ଼ ଲମ୍ବାଇ ଗମ୍ଭୀର ହୋଇ ବସିଛି ସୁନନ୍ଦ । ଚାହିଁ ରହିଛି ନିର୍ବୋଧ ପରି ।

ସତେ, ଦସ୍ୱସ ଧାଇଁ ପଳାଇଲା ? ସନ୍ତାନ ହେବାର ଆଉ ଆଶା ନାହିଁ ? ନନ୍ଦିକାକୁ ଚବିଶି ବର୍ଷ, ଆଉ ତାକୁ ପଚିଶି ଧରିଛି । କିନ୍ତୁ ନନ୍ଦିକା ଏବେ ବି ଷୋଳ ବର୍ଷର ଝିଅଟି ପରି ଦିଶୁଛି । ହଁ, ଶ୍ରୀମନ୍ତ ହୋଇ ତାକୁ ଚିରଦିନ ପାଇଁ ହତାଶ କରିଛନ୍ତି । ଶ୍ରୀମନ୍ତ

ଲୋକଙ୍କୁ ଦେଖାଇବା ଭୁଲ ହୋଇଛି । ଯେତେ ସପନର ଅବତାରଣା କଲେ ବି ସେ ପରଦେ ଯିବନାହିଁ ।

ନନ୍ଦକା ଉଠିଆସିଲା । ପଲଙ୍କ ଉପରେ ବସି ଟେଳେଇ କହିଲା, ମୁଁ ଲଳିତାକୁ ଚିହ୍ନେ । ସେ କାଳିକାର ପିଲା ବକଟେ । ଦିନ କେଇଥର ମୋ ପାଖରେ ଥିଲା । ଦେଖିଛି । ଯେମିତି ସୁନ୍ଦର, ସେମିତି ଗୁଣର ଝିଅଟି । ମୋ ମନ ମାନୁଛି । ସେଇ ମତେ ପୁଅ ଆଣିଦେବ । ତମର ରକ୍ତକୁ ସେ ଗର୍ଭ କଣ୍ଢେଇ କରି ମୋ କୋଳରେ ଦେବ । ମୁଁ ତାକୁ ପାଖକୁ ଆଣିବ ।

ଦୁନିଆ ଆଖିରେ ମତେ ଲୋକହସା କରିବ ?

କାହିଁକି ? କିଏ କହିବ ତମର ବୟସ ହୋଇଛି ? ବୟସ ବା ତମର କେତେ ? ଆମେ ମାଇପି ଜାତି ସିନା ଆଖି ପିଛୁଳାକେ ବୁଢ଼ୀ ହେଇଯାଉଁ—

ଥାଉ, ସେତକ କହ ଥା । ତମର ଯଦି ଇଚ୍ଛା ହେଉଛି, ତମେ ଯାଇ ବାହା ହେଇପଡ଼ ।

ନନ୍ଦକା ହସିହସି ଲେଟିଗଲା । ଦୁଇ ହାତରେ ସୁନନ୍ଦର ଗଳା ବେଷ୍ଟନ କରି ମୁହଁରେ ଚୋକ ଦେଇ । କହିଲା, କିଏ ଆଉ ବାହା ହେବ କି ? ଭାବଛ କି ତୁମେ ? ତା ହେଲେ ମୁଁ କାହିଁକି ଲଳିତାକୁ ସ୍ଥିର କରିଥାନ୍ତି ? ସତରେ, ମୁଁହି ତାକୁ ବାହାହେବ । ତମେ ଖାଲି ମୋପାଇଁ ବରବେଶ ସାଜି ଯିବ । ଲଳିତାକୁ ଆଣି ମୋ ପାଖରେ ଛାଡ଼ିଦେବ । କେତେଥର ମତେ କହିଛ, ମୋ ପାଖରେ ତମର ଅଦେୟ କିଛି ନାହିଁ । ମୁଁ ତମକୁ ହରଗର ମୁଦଟିଏ ମାଗୁନାହିଁ । ମାଗୁଛି ମୋ ପାଇଁ ସାଥୀଟିଏ, ମୋ ପାଇଁ ସାନ ଭଉଣୀଟିଏ । ସେଇ ଲଳିତା । ଦେବ ନାହିଁ ?

ନିବିଡ଼ ଆଲିଙ୍ଗନ । ଚୁମ୍ବନ । ପ୍ରତ୍ୟୁତ୍ତର ।

ନୂଆ କଥା କରିବାକୁ ଯାଉଛ, ନିଜେ ବରବେଶ ସାଜି ତମର ଲଳିତାକୁ ଆଣିବାକୁ ଯାଉନା ?

ସେଇଆ ହେବ । ତମେ ମତେ ସଜେଇଦେବ । ଆଉ, ତମେ ଶାଢ଼ୀ ପିନ୍ଧି ମୁଣ୍ଡୁସୁଲି ହେଇ ମୋ ସାଙ୍ଗରେ ଯିବ । ମୁଁ ତମକୁ ସଜେଇଦେବ । ହେଲା ତ ? ରହ, ମୁଁ ଶାଢ଼ୀ ନେଇଆସେ ।

ନନ୍ଦକା ପଲଙ୍କ ଉପରୁ ତଳକୁ ଓହ୍ଲାଇଲା । ନୂଆ ଜଡ଼ା ପିନ୍ଧିଲା ଶାଢ଼ିର ପଣତ ସୁନନ୍ଦ ହାତରେ । ସୁନନ୍ଦ କହିଲା, ଥାଉ, ଏଇଖଣ୍ଡ ଚଳିବ ।

ଛି—କହି ନନ୍ଦକା ହସିହସି ଫେରି ଆସିଲା ସୁନନ୍ଦ ପାଖକୁ । କହିଲା, ଛାଡ଼ ।

ବସ ମୋ ପାଖରେ ।

ନନ୍ଦିକା ହସିଲାରୁ ସୁନନ୍ଦ କହିଲା, କାହିଁକି ମତେ ତମେ ଲୋକହସା କରିବାକୁ ବସିଛ, ଶୁଣେ ?

ତମେ ମୋତେ ଭଲପାଅ ବୋଲି ! ଲୋକେ ଯଦି ହସିବେ ତ ହସନ୍ତୁ । ସେମାନେ କେବେ ହସିବେ ବୋଲି, ଆମେ ଆଗରୁ କାନ୍ଦୁଥିବା କି ? ଆମ ଆଖିକି ଯାହା ଭଲ ଦିଶିବ, ଆମେ କରିବା ।

ଘରେ ଅଶାନ୍ତି ସୃଷ୍ଟି କରିବା ? ଲୋକଙ୍କୁ ତାଳି ମାରି ଟୁହାଟ ଛାଡ଼ିବାକୁ ସୁଯୋଗ ଦେବା ?

ଘରେ ଅଶାନ୍ତି ସୃଷ୍ଟି ହେବ ନାହିଁ । ଲୋକେ ତାଳି ମାରି ଟୁହାଟ ଛାଡ଼ିବେ ନାହିଁ । ହେଲା ଏବେ ?

ନନ୍ଦିକାର ମୁଖଭଙ୍ଗୀ, ଉଜ୍ଜ୍ୱଳ ହସିଲା ଆଖିଡୋଳାର ଚାଳନା, ବସନବନ୍ଧନ କ୍ଷୀଣ ବ୍ଲାଉଜ ପରିହିତ ସୁପୁଷ୍ଟ ଅଙ୍ଗର ଆଲୋଡ଼ନ, ନିଜ ଦେହରେ ତାର କୋମଳ ଉଷ୍ମ ହାତର ପରଶ, ସୁନନ୍ଦର ଝଟକା ଆଗ୍ରହକୁ ଉତ୍ତେଜିତ କଲା । ନନ୍ଦିକାର ହାତ ଧରି ସେ ଆହୁରି ପାଖକୁ ଟାଣିଲା । କହିଲା, ଲୋକଙ୍କ ପାଟିରେ କିଏ ହାତ ଦେବ ?

ମୁଁ । ସମସ୍ତେ ଜାଣିବେ, ମୁଁ ଲଳିତାକୁ ମୋ ପାଇଁ ଆଣିଛି । ତମର ସେଥିରେ ଚିନ୍ତା ନାହିଁ । ତମେ କେବଳ—

ମୁଁ ପାରିବି ନାହିଁ ।

ତେବେ, ମୁଁ ପାରିବି । ଦେଖ, ବରବେଶରେ ମୁଁ କେମିତି ଦିଶିବି । ଛାଡ଼ ମୋ ହାତ ।

ନନ୍ଦିକା ପଲଙ୍କରୁ ଓହ୍ଲାଇ ହଲି ଦୋହଲି ମଟି ଘର ଭିତରକୁ ଗଲା । ଚାହିଁ ରହିଲା ସୁନନ୍ଦ । ଭାବିବାକୁ ଲାଗିଲା, କିଏ କଣ ଭାବିବ, କି କହିବ ବୋଲି ପ୍ରିୟତମା ପତ୍ନୀର ମନର ସରାଗ ସେ ଭାଙ୍ଗିବ କାହିଁକି ? ସେ ଚାହେଁ ସାଥୀଟିଏ । ସେ ଚାହେଁ ସନ୍ତାନଟିଏ । ଯିଏ ଆସିବ ସେ ହେବ ନନ୍ଦିକାର ସେବିକା । ସ୍ନେହର, ଆଦରର, ଆଦେଶର ଖେଳଣା ଗୋଟିଏ । ପୋଷା ବଲେଇଛୁଆ । କ୍ଷତି କ'ଣ ?

ଲଳିତା ! ହଁ, ଝାପ୍‌ସା ଦିଶୁଛି ଗୋଟିଏ ପିଲାର ମୁହଁ । ଦୁର୍ବଳ, ସୁନ୍ଦର, ସୁନା ଖଡ଼କା ପରି ନଅ ବର୍ଷର ଝିଅଟିଏ ! ତାର ବି ସେ ଚର୍ଚ୍ଚା କରିଥିଲା । ଅଳପ କଥା କହେ । ଭଉଣୀର ନଣନ୍ଦ ଲେଖାରେ ଥଟ୍ଟା କଲେ ପିଲାଟି ମୁରୁକେଇ ହସି ପାଖରୁ ପଳାଏ । ନନ୍ଦିକା ପାଖରେ ବସିଥାଏ । ସୁନନ୍ଦ ଘର ଭିତରକୁ ପଶିଲେ ସେ ଉଠି ଚାଲିଯିବାକୁ ବସେ । ହସହସ ସୁନନ୍ଦ ବାଟ ଛେକି କହେ, କୁଆଡ଼େ ପଳାଉଛୁ ? ରହ ।

ଆଉ ?

ନନ୍ଦିକା ତାର ହାତ ଧରି ପାଖକୁ ନେଇ । ଶୁଣ ଶୁଣ କହୁଛି, ବସ ମୋ ପାଖରେ, ଯାଅନା ।

ନିଦ ମାଡ଼ିଲାଣି ମ ।

ସେ ଉଠି ପଳାଏ ।

ମନେ ପଡ଼ୁଛି ସେହି ଟିକି ପିଲାଟି ।

ସେହି ? ହଁ, କିନ୍ତୁ ନନ୍ଦିକା ତାକୁହିଁ ଚାହେଁ । ନନ୍ଦିକା ତାକୁ ଚିହ୍ନେ, ଜାଣେ, ଭଲ ପାଏ । ଲଳିତା ତାର ସେବା କରିବ, ଅବାଧ ହେବ ନାହିଁ ।

ନନ୍ଦିକାର ଆଶା ସେ ପୂରଣ କରିବ । ସୁନନ୍ଦର ଜୀ ଥାଏ, ତହିଁରେ ସେ ବାଧା ଦେବନାହିଁ । ନନ୍ଦିକାର ମନକାମନା ପୂର୍ଣ୍ଣ କରିବ !

ଆଗରେ ଉଭା ନନ୍ଦିକା, ବରବେଶରେ ନୁହେଁ, ପୁରୁଷ ବେଶରେ '

ଚାଆରି ପାଳିଆ ଲୁଗା ସେ ପିନ୍ଧିଛି । ଲମ୍ବି ଯାଇଛି ଲୁଗା କୁଞ୍ଚ ପାଦତଳକୁ । ଦେହରେ ପୁରାହାତ କାମିଜ । ଲମ୍ବ ବନ୍ଧକ ପଡ଼ିଛି । ଛାତି ପକେଟରୁ ଉଙ୍କିମାରୁଛି ରୁମାଲ, ପୁଣି ଝରଣା କଲମ । ସୁନା ବୋତାମ ପୁଞ୍ଜିକ ଝଟକ ଉଠୁଛି ।

ତନ୍ମୟ ହୋଇ ନୂଆ ବେଶରେ ପୁରୁଣା ମଣିଷଟିକୁ ସୁନନ୍ଦ ଅନେଇ ରହିଲା । ନନ୍ଦିକାର ଆଖିରେ କଜଳ । କପାଳ ଉପରେ ଚନ୍ଦନପାଟି ମଝିରେ ସିନ୍ଦୂରବିନ୍ଦୁ । କଜଳ କଳା ଝଟକିଲା ଚିକ୍କଣ କେଶ ମଝିରେ ସିନ୍ଦୂରଗାର । ଖୋସାରେ ବଉଳ-ଫୁଲର ମାଳ ଗୁଡ଼ା ହୋଇଛି । କାନରୁ ଲମ୍ବି ଆସିଥିବା ଧଳା ପଥରବସା ଡ଼ୁପ ହଅଣ୍ଟି ଦୋହଲି ଉଠୁଛି ।

ସେମିତି ଅନେଇ ରହିଛ କାହିଁକି ?

ଦେଖୁଛି ।

କେମିତି ମାନୁଛି, କହିଲ ?

ଉହୁଁ, ମନକୁ ଆସୁନାହିଁ । ପାଖକୁ ଆସ, ମୁଁ ଟିକଏ ଶିଖେଇଦେବି, ଆସ ।

ନନ୍ଦିକା କଥା ମାନିଲା ।

ସୁନନ୍ଦ ତାର ହାତ ଧରି ଆଇନାର ପାଖକୁ ଟାଣିଆଣିଲା । ପକେଟରୁ ରୁମାଲ କାଢ଼ି ନନ୍ଦିକାର ମଥାର ସିନ୍ଦୂର ଲିଭାଇବାକୁ ହାତ ବଢ଼ାଇଲା । ତାର ଉଦ୍ଦେଶ୍ୟ ବୁଝିପାରି

ନନ୍ଦିକା ଖପ୍ କରି ତାର ହାତ ଧରି ଅଶଳ ସ୍ୱରରେ କହିଲା, ଏ କ'ଣ କରିବାକୁ ବସିଛ, ଏଡ଼େ ସାହସ ?

କେଉଁ ଅଜଣା ଭୟରେ ତାର ଅନ୍ତରାତ୍ମା ଥରିଉଠିଲା । ହସିଲା ମୁହଁ ମଳିନ ଦିଶିଲା । ଆଖିରେ ଛଳଛଳ ହୋଇଗଲା ଲୋତକ ! ବେହେଲ ହେବାର ପରିଚୟ ସେ ପାଇଛି । ଯାହା ପାଇଁ ମଥାରେ ସେ ବାଳାରୁଣର ପ୍ରତୀକ ଧରିଛି, ସେଇ ନିଜେ ଅମାଅନ୍ଧାର ଘୋଟାଇବାକୁ ବଢ଼ାଇଛନ୍ତି ହାତ ? ଅଭିନୟ ସେତିକି ଥାଉ । ସେ ସହିପାରିବ ନାହିଁ । ମଥାରେ ହେ ପ୍ରଜ୍ୱଳିତ ତପନର ଗରିମା ଧରି ଚିରଦିନ ପାଇଁ ଆଖି ବୁଜିବ । ଶାଶୁଙ୍କର ମନକାମନା ପୂରଣ କରିବାକୁ ସେ ଆଉ ଅଭିନୟ କରିବ ନାହିଁ ।

ସୁନନ୍ଦ କହିଲା, ଏତିକି ରହିଲେ ଧରା ପଡ଼ିଯିବ ।

ସେତିକି ରହୁଥା ।

ନନ୍ଦିକା ଦୃଢ଼େଇ ଆସିଲା । କହିଁ କହିଁ ହୋଇ କାନ୍ଦିଉଠିଲା । ବ୍ଲାଉଜର ବୋତାମ ଖୋଲୁ ଖୋଲୁ କହିଁଥିବା ସ୍ୱରରେ କହିଉଠିଲା, ବରବେଶ ହେବା ଲୋଡ଼ା ନାହିଁ । ପିଲାଟିଆ କୋଳରେ ଧରି ଝୁଲାଇବାକୁ ଆଉ ମୋର ଆଗ୍ରହ ନାହିଁ । ଲାଲଫିତା ପ୍ରୟୋଜନ ନାହିଁ । ସେ ନ ଆସୁ । ମୋ ମଥାର ସିନ୍ଦୂର, ମୋ ମଥାର ସିନ୍ଦୂର—

ହଠାତ୍‌ କେ ସେ ବାଇଆଣୀ ହୋଇଛି । ଦେହରୁ ଖୋଲୁଛି କାମିଜ । ଆଲୁଅରୁ ଯାହାର ଏତେ ସରମ, ସେ ଦେହକୁ କରୁଛି ବସନହୀନ । ନିଜକୁ ସେ ଭୁଲିଛି ସତେ । ଆ' ରୁନ୍ଦ୍ରୁ ଛୁଟିଛି, ମୋ ମଥାର ସିନ୍ଦୂର, ଲାଲଫିତା ମୋର କି ପ୍ରୟୋଜନ ?

ସୁନନ୍ଦ ବିଚଳିତ ହୋଇ ଉଠିଆସିଲା । ନନ୍ଦିକାର ହାତ ଧରି କାଁଦେଇ କହିଲା, ମେ. ରାଟ କାନ୍ଦ ନାହିଁ । ମୋର ଭୁଲ ହୋଇଛି ।

ଏତେ ବଡ଼ ଭୁଲ ? ଏଡ଼େ ସାହସ ?

ଦୋଷ ହୋଇଛି ନନ୍ଦିକ, ଆଉ ତମର ଅବାଧ୍ୟ ହେବି ନାହିଁ ।

ଏଁ — ?

ନନ୍ଦିକାର ହାତ ଅଟକିଲା । ଅଧା ଖୋଲା କାମିଜ୍ ମଝିରେ ମୁହଁ ଲୁଚିଛି । ବିଶ୍ୱାସ ହେଉ ନାହିଁ କାନରେ ଯାହା ଶୁଣିଲା ।

ସେପୁରର କୁହାଟ ନୁହେଁ ତ ?

ଅବାଧ୍ୟ ହେବି ନାହିଁ ନନ୍ଦିକା, ତୁମ ପାଇ ମୁଁ ବରବେଶ ସାଜ ଯିବି ।

ନନ୍ଦିକା ଅବାକ୍ ହୋଇ ମୁହୂର୍ତ୍ତେ ଠିଆହେଲା । କାର୍ଯ୍ୟଜଟି ତଳକୁ ଟୋକି ପଡ଼ାକୁ ମୁହଁ କାଢ଼ିଲା । ସେ ମୁହଁ ଯେପରି ଆଉ କାହାର । ସବୁ ଲୁହ ଶେଷ ହେବ କି ? ସାରା ଦେହ ଥରଉଠୁଛି କାହିଁକି ? ମୁଣ୍ଡ ବୁଲଉଛି । 'ସତେ କି ଟଳିପଡ଼ିବ ? ଆଗରେ ଜୀବନସର୍ବସ୍ୱ ଠିଆ ହୋଇଛନ୍ତି । ଶୁଖିଲା ମୁହଁ । ଅତି ଦୁଃଖରେ ସେ ପୁଣି କହୁଛନ୍ତି ତୁମର କଥାହିଁ ରହିବ । ଆଃ, କାନ୍ଦନା, ତୁମକୁ ମୋ ରାଣ ।

ନିଜକୁ ଆଉ ସେ ସମ୍ଭାଳିପାରିଲା ନାହିଁ । ଲଟମଟ କରି ଲୁହଭରା ଆଖିରେ ଚାହିଁ ରହିଲା ସୁନନ୍ଦକୁ । ମନେ ହେଲା, ଯେପରି ସେ ସ୍ୱପ୍ନ ସୃଷ୍ଟି ଦୂରକୁ ଦୂରକୁ ଚାଲିଯାଉଛନ୍ତି । ହାତ ପାଉ ନାହିଁ । ମୁହଁଟି ଦିଶୁଛି ଝାପ୍‌ସା ।

ଦୂରେଇଯିବେ ? ସତେ ସେ ଯିବେ ଦୂରେଇ ?

ନା, ମିଛ କଥା । ତା'ର ଜୀବନ, ତା'ର ଆଶାଭରସା ସମୂଳକୁ ସେ ବାନ୍ଧି ରଖିବ ଦୁଇ ବାହୁର ବନ୍ଧନରେ । ନିବିଡ଼ ବନ୍ଧନ । ଛାଡ଼ିବ ନାହିଁ । ଦୂରେଇବ ନାହିଁ । ବାନ୍ଧି ରଖିବ । ଆଲୁଅଟା ନାଚି ନାଚି ଚୁଲୁଉଛି । ସେ କି ଲିଭିବ ।

ସେ ପାଗଳିନୀ ହୋଇଛି ।

ଆଲୁଅ ଲିଭିଛି । ଟଳିପଡ଼ିଛି ଅଣଲା ନନ୍ଦିକା ସୁନନ୍ଦର ଛାତି ଉପରକୁ । କାନ୍ଧରେ ଥୋଇଛି ମୁହଁ । ତତଲା ଲୁହ ସୁନନ୍ଦର ଖୋଲା ପିଠି ଉପରେ ଦିଓଟି ଉତ୍ତପ୍ତ ଅଙ୍ଗାର ଟାଣିଦେଇଛି ।

ପଲଙ୍କ ଉପରେ, ପିଠି ଆଉଁସି ସୁନନ୍ଦ କହିଲା, ଆଉ କାନ୍ଦନା ନନ୍ଦିକା, ତମର ମନରେ ଦୁଃଖ ଦେବାକୁ ଆଉ ମୁଁ ଚାହୁଁନାହିଁ । ତମର ଲଳିତା ତମରି ପାଖକୁ ଆସିବ । ମୁଁ ନିଜେ ତାକୁ ଆଣି ତମ ପାଖରେ ଛାଡ଼ି ଦେବି । ହେଲା ତ ଏବେ ? ମୋ ରାଣ, କାନ୍ଦନା ।

ନନ୍ଦିକା ମଣିଲା, ତାର ସ୍ୱାମୀ ସୁନନ୍ଦ ସତେ ବା ଟିକି ଝିଅଟିକୁ ଅହ୍ଲାଦ କରୁଛନ୍ତି, ମୁଣ୍ଡରେ ହାତ ଘୂରାଇ ଧୀରେ ବାଇଆ କରି କହୁଛନ୍ତି, ଶୋଇପଡ଼ ନନ୍ଦିକା, ଖେଳଣା ଆଣି ଦେବି, ମନଇଚ୍ଛା ଖେଳୁଥିବ । କି ସୁନ୍ଦର ସୁନାକାଠି ପରି ନନ୍ଦିକା ସାପ ପିଲାଟିଏ । ଦୁଧ ଦେଇ ଯତ୍ନ କରି ତାକୁ ବଢ଼ାଇବ । ଗଳାର ମାଳ କରିବ । ସାବଧାନ, ତାକୁ ଚଳାଇବ ନାହିଁ । ଆଘାତ ଦେବ ନାହିଁ । ସେ ନିଜରୂପ ଧରିବଟି, ଦଂଶିବ । ସାବଧାନ !

ସେ ଆଉ କାନ୍ଦିବ ନାହିଁ । ମନର କଥା ନ ହେଲେ ବି ତୁଣ୍ଡର କଥାରେ ପରତେ ଯାଇ ସ୍ୱାମୀ ରାଜି ହୋଇଛନ୍ତି । ସରଳ ମନରେ ଭବିଷ୍ୟତର ଭଲମନ୍ଦ ଚିନ୍ତନ ପ୍ରବେଶ କରି ନ ଥିବ । ତାଙ୍କର ଦୋଷ ନାହିଁ । ଦଇବ ଦଉଡ଼ି ଟାଣିନେଉଛି । ଆଉ ଦୁଃଖ କାହିଁକି, କାନ୍ଦ କାହିଁକି ? ଶିଶୁପରି କୋମଳ ଓ ନିଷ୍କପଟ ଯାହାର

ମନ, ନନ୍ଦିକାର ପ୍ରତି କଥାରେ ବିଶ୍ୱାସ କରିବା ଯାହାର ପ୍ରକୃତି, ତାଙ୍କ ମନରେ ସେ ଦୁଃଖ ଦେବ ନାହିଁ ।

ସୁନନ୍ଦ, ସତେକି ସେ ନନ୍ଦିକାର ଉଠାଆଣି ପିଲାଟି, ତାଆରି କେଶ ଭିତରେ ଆଙ୍ଗୁଠି ଭରି ଗେହ୍ଲେଇ କହିଲା କାନ୍ଦିବ ନାହିଁ ଗୋଟିଏ ସର୍ତ୍ତରେ ।

ସର୍ତ୍ତଟି କଅଣ ସେ କହିପାରିଲା ନାହିଁ ।

ମନର କଥା ଜାଣିଲା ପରି ସୁନନ୍ଦ ଗେଲ କଲା, ମୂର୍ଚ୍ଛାଳିଆ ଗେଲ ନନ୍ଦିକାକୁ କୋଳକୁ ଟାଣି ଗୁଡ଼ାଇ ଧରିଲା । ସତେକି ସେ ତାଆରି ଗେଲବସର ଥଲଥଲ କଅଁଳିଆ ଅଙ୍ଗଟିଆ ଟିକି ଟୁଅଟି ।

ଅଭସ୍ତା ଭାବିବାକୁ ଲାଗିଲେ—

ଘରେ ଗହଳ ଚହଳ । କେତେ ଲୋକ ଯାଆସ କରୁଛନ୍ତି । ଦଆନଅ ଚାଲିଛି । ବିବାଦ ହେଉଛି । ଜନସମାଜ ସଙ୍ଗ୍ରହ କରାହେଉଛି ।

ପୁଅର ବାହାଘର !

ଭାଇଆ ପୁଅ ସେ ? ଅଭସ୍ତାଙ୍କର ? ନନ୍ଦିକାର କି ? ସତେ ତାର ପାଞ୍ଚ ପୁଅ, ଆଉ ଏଇ ନନ୍ଦଆଣ୍ଟା, ସବା ସାନ, କୋଡ଼ପୋଛା । ନନ୍ଦିକାର ଇଏ ଶେଷ ନମିତ୍ୟ ।

ସବୁ ସେ କରୁଛି, କରାଉଛି, ଘରବାରି ସଫାସୁତୁରାରୁ ଆରମ୍ଭ କରି ଗହଣାଗଣ୍ଠାଯାଏ । ପୁରୋହିତ, ନାହାକ, ଭଣ୍ଡାରୀଙ୍କର ତତ୍ତ୍ୱ, ସେମାନଙ୍କର ବିବାଦ । ଝୁଣ-ମହୁରୀ, ବାଇଦ-ବାଜଣା, ଫୁଲ-ଆଲୁଅ, ବାଣ, ସବୁ ବିବାଦ କରୁଛି ନନ୍ଦିକା । ଯାହାର ଗ୍ରୁଇ ପଦାରେ ପଡ଼ୁ ନ ଥିଲା, ସେ ହୋଇଛି ବୁଢ଼ୀ ଘରଣୀ । ବାତଚନ୍ଦ ପରି ବୁଲିଆସୁଛି । ଅଳସ ନାହିଁ । କେଉଁଠି ଠିଆ ହୋଇଗଲେ, କି ଯେତକ ଲୋଡ଼ା ସେତକରୁ ଅଧିକ ପଦେ କହିବାର କେହି ଦେଖୁନାହିଁ । ସବୁ ଅଧିଯାଏ କାମ ।

ମନରେ ବିରସ ଭାବ ନାହିଁ । କଷ୍ଟକରୁ ଫେରିଲା ପରେ ତା ଠାରେ ଯେଉଁ ସାରାକ୍ଷଣନତା ଅଭସ୍ତା ଦେଖିଥିଲେ, ସେତକ ଦୂର ହୋଇଛି ।

ମନେପଡ଼ୁଛି ଅଭସ୍ତାଙ୍କର, ହସିଲା ମୁହଁରେ ଅତି ଆଗ୍ରହରେ ନନ୍ଦିକା କହିଥିଲା, ସେ ରାଜି ହେଲେ ବୋଉ, ଜବାବ ଦେଇ ଦିନ ସ୍ଥିର କରିବାକୁ ମୁଁ ଅପାଙ୍କୁ ଲେଖିଦେଇଛି । ଲଳିତା ମୋର ସାନ ଭଉଣୀ ହୋଇ ଆସିବ ।

ନନ୍ଦକାର ହସ ସେଦିନ ତାଙ୍କର ଦେହରେ ଅଗ୍ନି ବରଷିଥିଲା । ତାର ପ୍ରତି ପଦ କଥା ତାଙ୍କର କଳିଜାରେ କଣ୍ଟା ଫୋଡ଼ୁଥିଲା । ଅଶିଳ ଗୁଣ୍ଡାରୁ ଆପଣାଛାଏଁ ବାହାରିପଡ଼ିଲା, ପରତେ ନ ଗଲା କଥା, ନନ୍ଦଆ ରାଜି ହେଲା ?

ମତେ ଅବିଶ୍ୱାସ କରନା ବୋଉ !

ଅଭୟା ବୁଝି ନୋହିଁଥିଲେ । ବୁଝିଲେ ଯାହାକୁ ବୋହୂ କରି ଆଠ ବରଷ ତଳେ ଏ ଘରକୁ ଆଣିଥିଲେ, ତା ପାଖରେ ସେ ଆଜି ଛୋଟ, ଅତି, ନଗଣ୍ୟ ହୋଇପଡ଼ିଛନ୍ତି । ତା ମୁହଁକୁ ଚାହିଁ କଥା କହିବାର ସାହସ ତାଙ୍କର ହଜିଛି । ନନ୍ଦକା ତାର ବୋହୂପଣର କର୍ତ୍ତବ୍ୟ କରିଯାଉଛି । ଗୋଡ଼ ଧୋଇ ପାଣି ନ ପାଇଲେ ତୁଣ୍ଡରେ କହି ଦେବ ନାହିଁ । ଦି' ପହରେ ପୁରାଣ ପତ୍ର ଶୁଣାଇବ, ରାତିରେ ଗୋଡ଼ ଚିପିବ । ତଥାପି, ଅଭୟା ତା'ର ମୁହଁକୁ ଚାହିଁ କଥା କହିପାରି ନାହାନ୍ତି ।

ଗୋଟିଏ ଭାବନା ମନକୁ ରାମ୍ପି ବିଦାରି ଲହୁଲୁହାଣ କରୁଛି, ନନ୍ଦଆ ମଙ୍ଗିଲା ? ସେ ତ ହେଲା ଦୁନିଆ ଲୋକଙ୍କ ପରି ଜଣେ । ମୋର କୁଳର ଲକ୍ଷ୍ମୀ, କୋଳର ସୁବର୍ଣ୍ଣ ପ୍ରତିମାକୁ ଦୂରକୁ ଆଡ଼େଇ ଦେବାକୁ ମନ ତାର ରାଜି ହେଲା ?

ଦୁନିଆ ତେବେ ଏଇଆ ! କେହି କାହାର ନୁହେଁ ?

ଏ ବିବାହ ହୋଇପାରିବ ନାହିଁ ।

କାହାକୁ ଏହା ସେ କହିବେ ? ଏଇ, ଲୋଟଣୀ ପାରି ନନ୍ଦକା, ଭାମରେ ଲୋଟିଯାଉଛି । ମୁଣ୍ଡବାଳ ଫୁରୁ ଫୁରୁ ଉଡ଼ୁଛି । ଦେହ ମୁଣ୍ଡରୁ ବହନ ଖସୁଛି । ମୁହୂର୍ତ୍ତେ ତାର ସମୟ ହେଉନାହିଁ । ବେଳ ପାଇଲେ ଧାଇଁଆସୁଛି ପାଖକୁ ।

ବୋଉ, ଅପା ଚିଠି ଲେଖିଛନ୍ତି । ଦିନ ବାର ଠିକ ହେଲା ।

ଦେଖିଲ ବୋଉ, ଏ ଶାଢ଼ୀସବୁ, ଏ ଗହଣା, ଅପାଙ୍କୁ ଲେଖି ଲଳିତାର ଆଙ୍ଗୁଠିର ମାପ ମଗେଇଥିଲି । ବିରାଦ ଦେଇ କଟକରୁ କଣେଇଆଣିଛି ।

ବୋଉ, ଆଭା ଆସିପାରିବେ ନାହିଁ ଲେଖିଛନ୍ତି ।

ଅଭୟା ଭାବିଲେ, ସତେ ନନ୍ଦଆ ମଙ୍ଗିଲା ?

ବିଶ୍ୱାସ ହେଉନାହିଁ । କାହାପାଇଁ ନନ୍ଦକା ପାଗଳ ହୋଇଛି ? ଏ ଅନିତ୍ୟ ହୋଇପାରିବ ନାହିଁ । କାହା ଆଗରେ ମୁହଁ ଖୋଲି ମନର କଥା କହିବେ ?

ଅଭୟା କେବଳ ଚାହୁଁଛନ୍ତି ।

କାହିଁକି ତମେ ବାଇ ହୋଇଛ, ଅଜ ପାଇଁ ଅଜେ ଗାତ ଖୋଳୁଛ ? ଲୋକେ ଭଲ କହୁନାହାନ୍ତି ଅପା, ଦୁନିଆ ବାହାର କଥା କରୁଛ । ଲୋକେ ପଚାରୁଛନ୍ତି, କାହା ବାହାଘର ?

ସେମାନଙ୍କୁ କହିଦେ ସୁମିତ୍ରା, ନଦୀଧାର ବାହାଘର !

ଆଖିର ଲୁହରେ ତମର ହସ ଆନନ୍ଦ ବୁଡ଼ିମରିବ ।

ଯାଉ କେବେ ଆଖିରୁ ଲୁହ ଝରେ ନା ସୁମିତ୍ରା, ନିଜ ହାତ ପିଠିରେ ସିନା ପୋଛିବ, ଆଉ କାହାକୁ ଦେଖିବାକୁ ଡାକିବ ନାହିଁ ।

ନୂଆବୋଉ !

କଟମଟ କରି ଅନେଇ ରହିଛ କାହିଁକି କହ ?

ତମକୁ ଦେଖୁଛି । କି ସବୁ ହେଲଣି ! କାହିଁକି— ?

ସତେ ? ତମ ଭାଇ କଟକରୁ ଆଜି ଆସିବେ କି ? ଏତେ ରାତିରେ ? ହଁ କହ, ସେଦିନ ସେ ସେମିତି ଆସିଥିଲେ । କହ, ମୋ ମୁଣ୍ଡ ଯାଉଁଳି ଦେବ ନାହିଁ । ଦେଖିଲ, ଦେହ ଅଦନା ଦିଶୁଛି । ମଥାଚୂଡ଼ାରେ ଆଉ ଫୁଲ ଫୁଟୁ ନାହିଁ କି ? ଆରେ, ଆଖିରେ ଆଜି କଜଳ ପିନ୍ଧନାହିଁ ! ଗୋଡ଼ରୁ ଅଳତା ଦାଗ ଲିଭିଛି । ଏମିତି ରୂପରେ ଦେଖିଲେ ସେ ମୁହଁ ଶୁଖେଇବେ । କହ, ମତେ ସଜେଇଦିଅ ।

ତମେ ବାଇଆଣୀ ହେବ କି ?

ସେଇଥିପାଇଁ କାନ୍ଦୁଛ ? ରାତି ଅଧରେ ଆଖିରୁ ଲୁହ ଗଡ଼ାଉଛ ? କେତେ ଡେରି କରୁଛ, ଅଳତା ଦି ଧାର ଗୋଡ଼ରେ ନାଇଦେବାକୁ ? ହେଇ, କାହାର ସାଇକଲ୍ ଘଣ୍ଟି ଶୁଭିଲାଣି । ରାତି ମୋଟେ ଦଶଟା । ଯେ ଆସୁଛନ୍ତି କହ, ମତେ ଜଲଦି ସଜେଇଦିଅ ।

ଭାଇଙ୍କୁ ମୁଁ ମନା କରିବି ।

ନନେ ସେ ସୁନା ଗହଣା କିଣି ପଠେଇଦେଇଛନ୍ତି । କେଡ଼େ ସୁନ୍ଦର ଗହଣା, ନୂଆ ଡିଜାଇନ !

ସତେ ନୂଆବୋଉ ?

ମୁଁ ଖାଲି ଲକେଟର ମାପ ପଠେଇଥିଲି ।

ତମେ ମନା କରିଦିଅ ।

ହେଲା ଏଥର । ଚନ୍ଦନ ଘୋରିଛ ?

ତମେ ନାହିଁ କରିହଅ ।

କାନ୍ଦି କାନ୍ଦି ମରିବା ଅପେକ୍ଷା ହସି ହସି ମରିବା ଭଲ ନୁହେଁ କି ଜନ ? ଯେଉଁ କଥା ସେମାନେ କରିଥାନ୍ତେ, ମୁଁ ତ ସେଇଆ କରୁଛି । ସେମାନେ ମତେ ଗୋଡ଼ରେ ଆଡ଼େଇ ଦେଇଥାଆନ୍ତେ, ବସ୍ଥିଆଉଣ୍ଟୁ ମୋତେ ମନ୍ଦ ବୋଲି ମଣି ଆଡ଼ ଆଖିରେ ନ ଚାହିଁ ତାଙ୍କର ମନକଥା କରିଯାଇଥାନ୍ତେ । କିଏ ବାଧା ଦିଅନ୍ତା ? ମତେ ସେ ଆଡ଼େଇ ଦେଇପାରିବେ ନାହିଁ ।

ଜନର ହାତ ଅଟକିଲା । ସତ କଥା ତ !

ଆସିବାକୁ ଖବର ପଠେଇଲି କେତେଥର, ଚିଠି ଲେଖିଲି, ତମେ ଆଜଯାଏ ଆସିଲ ନାହିଁ । ଭଲ ଚିଜଟିଏ ତମ ପାଇଁ ରଖିଛି । ଅତି ମୂଲ୍ୟବାନ୍ ।

ସୁନନ୍ଦ ମୁଗ୍ଧ ଆଖିରେ ଚାହିଁରହିଲା । ଆଗରେ ଠିଆହୋଇ ହସୁଛି ଅପ୍ସରା ! କହିଲା, କି ଚିଜ ଦେଖେଁ ?

ମତେ କଣ ଦେବ ଆଗ କହିଲ ?

ତୁମକୁ ତ ମୋର ସବୁ ଦେଇସାରିଛି । ଆଉ କ'ଣ ଲୋଡ଼ା ଅଛି କହ ।

ଲଳିତାର ଫଟୋ ପାଇଲି ।

ଫଟୋ ?

ଶୋଭା ପଠେଇଛନ୍ତି ।

ସୁନନ୍ଦ ଗମ୍ଭୀର ହେଲା ।

ଆଖି ଆଗରେ ଉଭା ହେଲା ନଅ ବର୍ଷର ଦୁର୍ବଳ, ସୁନ୍ଦର, ହସକୁଳୀ ଝିଅଟିଏ । କାହିଁ, ନନ୍ଦିକା ତାକୁ ଲୋକହସା କରିବାକୁ ବସିଛି ? ଏ ପ୍ରହସନ ଏଇଠି ଅଟକି ରହୁ । କର୍ମକ୍ଷେତ୍ର କଟକରେ ମଧ୍ୟ ବନ୍ଧୁମହଲରେ ଚହଲ ପଡ଼ିଗଲାଣି । କପଣ ସେମାନେ ଖବର ପାଇଲେ କେଜାଣି ! ଅତି ଗୋପନ କଥା ବି ଚହଟିଲା ପରି ଦୁନିଆରେ କେଡ଼େ ବେଗରେ ଚହଟିଯାଏ !

ଅତନୁବାବୁ ପରିହାସ କରି କହୁଥିଲେ, ଜଣେ ଗ୍ରାମରେ ରହିଲେ ଆଉ ଜଣେ କଟକରେ ରହିବେ, ବାରମ୍ବାର ଗ୍ରାମକୁ ଧାଇଁବାକୁ ହେବ ନାହିଁ ।

ବୃହନା ଛଲେଇ କହିଲେ, ପୁରୁଷଜାତଟା ଏମିତ ନିଷ୍ଠୁର ଓ ନିର୍ବୋଧ। ନନ୍ଦିତା ଦେବୀଙ୍କ ଭଳି ପତ୍ନୀ ଯାହାର ଅଛି, ସେ ପୁଣି ଆଉ ଗୋଟିଏ ପତ୍ନୀ ଆଣିବାକୁ ବ୍ୟାକୁଳ। ତେବେ ଏପରି ହେବ ବୋଲି ମୁଁ ଅନେକ ଦିନ ଆଗରୁ ଜାଣିଥିଲି, ସୁନନ୍ଦବାବୁ !

ଆପଣ ଭୁଲ ବୁଝିଛନ୍ତି।

ବିରକ୍ତ ହେବେ କି ? ଆପଣଙ୍କର କଥାକୁ ମୁଁ ଭୁଲ ବୁଝିଥିଲି। ନନ୍ଦିତା ଦେବୀଙ୍କୁ ଦେଖି, ତାଙ୍କ ସଙ୍ଗେ ମିଶି କଥାବାର୍ତ୍ତା ହେଲା ପରେ ମୁଁ ବୁଝିଲି, ମୋର ଭୁଲ ବୁଝିବାଟା ହିଁ ଭୁଲ। ମୁଁ ଅନୁମାନ କରିଥିଲି, ଆପଣ ହୁଏତ ଆଉ ଗୋଟିଏ ବିବାହ କରିବେ, ଅଥବା ଅବାଟକୁ ଗୋଡ଼ ବଢ଼ାଇବେ।

ଥରିଲା ସ୍ୱରରେ ସୁନନ୍ଦ କହିଲା, ମୋ ସମ୍ବନ୍ଧରେ ଆପଣଙ୍କର ଧାରଣା ସହାନୁଭୂତିଶୀଳ ନୁହେଁ।

ମୋର ଧାରଣା ହିଁ ଆପଣଙ୍କୁ କହିଲି। ସେଥିରୁ ଯେଉଁ ଅର୍ଥ ଆପଣ ଗ୍ରହଣ କରିବାର କରନ୍ତୁ।

ନନ୍ଦିତା ମତେ ବାଧ୍ୟ କରୁଛନ୍ତି।

ବାଧ୍ୟ କରିବାକୁ ଆପଣ ତାଙ୍କୁ ଅବଶ୍ୟ ବାଧ୍ୟ କରିଥିବେ। ବରଂ ଆପଣ ଅବାଟରେ ପାଦ ପକାଇ ବୁଲିଥାନ୍ତେ,—

ନନ୍ଦିତାଙ୍କ ମନରେ ମୁଁ ଦୁଃଖ ଦେବାକୁ ଚାହେଁ ନାହିଁ।

ମୁଁ ଭୁଲ ବୁଝିଥିଲି। ବିରକ୍ତ ହେବେ ନାହିଁ।

ନନ୍ଦିତାକୁ ନିମନ୍ତ୍ରଣ କରିବାକୁ ସେ ଧାଇଁଆସିଛି।

ଦେଖ ତ, ଏଇ ଲଳିତାର ଫଟୋ। ମୁଁ ମଗେଇ ପଠେଇଥିଲି। ଲୁଚେଇ ରଖିଚି। କାହାରିକୁ ଦେଖେଇନାହିଁ। ଦେଖ। ସୁନ୍ଦରଟିଏ ନୁହେଁ ? ଲଳିତା ତ ଆଉ ନଅବର୍ଷର ଟିକି ପିଲା ହୋଇ ନାହିଁ।

ଫଟୋଟି ଟେବୁଲ ଉପରେ ସେମିତି ପଡ଼ିରହିଲା। ସୁନନ୍ଦ ନନ୍ଦିତାର ହାତ ଧରି ତା' ଆଡ଼ ମୁହଁକୁ ଚାହିଁରହିଲା। ସୁନ୍ଦର ମୁହଁଟି ଆଖିକୁ ଦିଶିଲା ଝାପ୍ସା।

ତମ ଆଖିରେ ଲୁହ ?

ନନ୍ଦିତା ପଣନ୍ତରେ ସୁନନ୍ଦର ଆଖିରୁ ଲୁହ ପୋଛିଲା । ସ୍ୱାମୀଙ୍କର ଚକ୍ଷୁରେ ସେ ଲୋତକ ଦେଖିବ, ଏହା ସ୍ୱପ୍ନରେ କେବେ ଭାବି ନ ଥିଲା । ଆଉ କେବେ ଦେଖି ନ ଥିଲା । କାହିଁକି ସେ କାନ୍ଦୁଛନ୍ତି ? ତାଆରି ପାଇଁ ? ତାଆରି ଭବିଷ୍ୟତ କଥା ଭାବି ? ଅଥବା—

କହିବ ନାହିଁ, କାହିଁକି ତମ ଆଖିରେ ଲୁହ ?

ଦୀର୍ଘଶ୍ୱାସ ଛାଡ଼ି ସୁନନ୍ଦ ନିଜ ହାତରେ ଆଖି ପୋଛିଲା । କହିଲା, ତମର ପାଗଳାମୀ ପାଇଁ ତମେ ଗୋଟିଏ ଜୀବନକୁ ଛଟପଟ କରିବାକୁ ବସିଛ । କାହା ଉପରେ ତମର ଅଭିମାନ, ଶୁଣେ ?

ହସି ହସି ନନ୍ଦିତା କହିଲା, ତମରି ଉପରେ । ତମେ କାହିଁକି ମୋତେ ବିବାହ କରି ଗୋଟିଏ ଜୀବନକୁ ଛଟପଟ କଲ ?

ତମକୁ ବିବାହ କରିବା ମୋର ଅପରାଧ ନୁହେଁ ।

କାହାରି ଅପରାଧ ନୁହେଁ । ଯାହା ହେବାର ହୋଇଯାଇଛି । ଦାଣ୍ଡ ଲୋକଙ୍କର କଥା ଶୁଣି ଝଗଡ଼ା ବସିବ ? ସେ କଥା ହେବ ନାହିଁ । ସବୁ ଠିକ୍ କରି-ସାରିଛି । ନିଶ୍ଚିନ୍ତ ରହ । ତାହାର ଜୀବନ ଏଥିପାଇଁ ଛଟପଟ ହେବ ନାହିଁ । ସମସ୍ତେ ସୁଖୀ ହେବେ । ତମେ ଲଳିତାକୁ ବିବାହ କରିବ । ଦିନବାର ଠିକ୍ ହୋଇସାରିଛି ।

ମୁଁ ଆଉ କାହାରିକୁ ବିବାହ କରିବି ନାହିଁ ।

ମୋତେ ଲୋକହସା କରିବ ?

ତମକୁ ସେଥିରୁ ଉଦ୍ଧାର କରିବାକୁ ମୁଁ ଲୋକହସା ହେବାକୁ ଚାହେଁ ନାହିଁ ।

ନନ୍ଦିତାର ଏଥର କାନ୍ଦିବାର ପାଳି । ଆଖି ଛଳଛଳ କରି ସେ ସୁନନ୍ଦର ଅତି ପାଖକୁ ଘୁଞ୍ଚିଆସି କହିଲା, ଦେଖ, ଦେଖ ଏଇ ଲଳିତାର ଫଟୋଟିକୁ । ମୋ ପାଖକୁ ଆସିବ ବୋଲି ସେ ଗୋଡ଼ ଟେକି ରହିଛି । ମୁଁ ତାକୁ ମୋର କରିବାକୁ ଚାହେଁ । ଆଣି ଦେବ ନାହିଁ ମତେ ? ମୋ ପାଇଁ ଯଦି ଲୋକହସା ହେବାକୁ ପଡ଼େ, କି ଅପମାନ ସହିବାକୁ ପଡ଼େ, ତମେ ଏଡ଼େଇଯିବ ?

ଏଇଟା ନନ୍ଦିତାର ଭାଗ୍ୟର ଶେଷ ପରୀକ୍ଷା !

ସେ ଚୁପ୍ ରହିଛନ୍ତି । ଚିନ୍ତା କରୁଛନ୍ତି । ଦୃଷ୍ଟି ଲାଖିରହିଛି ଫଟୋଟି ଉପରେ । ନାକପୁଡ଼ା ଥରିଉଠିଛି । ରାଗିଉଠିବେ ? ଫଟୋ ଖଣ୍ଡି ଦୂରକୁ ନିକ୍ଷେପ କରିବେ, ଅବା ଚିରି ଚିକିଚିକି କରିବେ ? ତାଙ୍କର ହାତ ଗଜବଜ ହେଉଛି, ଓଠ ଥରିଉଠୁଛି ।

ଏଥର ସେ ଗର୍ଜିଉଠିବେ । ଅବଶ୍ୟ କହିବେ, ଏ କି ବଡ଼ମୁନା ? ମତେ ତମର ଖେଳନା ମନେ କରିଛ ? ଅକଥାକୁ କଥା କରିବାକୁ ଯାଉଛ ? ତମେ ଲୋକହସା ହୁଅ, ଅପମାନ ପାଅ, ଲାଜରେ ମୁହଁ ଲୁଚାଇ ଘରକୋଣରେ ପଶ, ତଥାପି—

ଏଁ, କିଛି ଉତ୍ତର ଦେଉନାହାନ୍ତି କାହିଁକି ? ହାରିବେ ? ମୁହଁ ଟେକି ମୁହଁକୁ ଚାହିଁ ରହିଲେ କାହିଁକି ? ଦୀର୍ଘଶ୍ୱାସ ପକାଇଲେ । ଓଠ ଚାପିଲେ ।

ଏଥର ସେ ମନର କଥା କହିବେ, ପରୀକ୍ଷାର ଅବସାନ ହେଉ । ଯାହା ପାଇଁ ଆଖିରୁ ମୋର ଲୋତକ ଝରିଲା, ସେଇ ନନ୍ଦିକା ଛଡ଼ା ଆଉ କାହାର ସ୍ଥାନ ମୋ ମନରେ ନାହିଁ । ଲଳିତାଠି ମୋର ଲୋଡ଼ା ନାହିଁ । କାହାଠି ମୋର ପ୍ରୟୋଜନ ନାହିଁ । କେବଳ ନନ୍ଦିକାକୁ ମନରେ ଭଜି, କୋଳରେ ଧରି ଅପୁତ୍ରିକ ହୋଇ ମୁଁ ରହିବାକୁ ଚାହେଁ ।

ଦୁଇ ଗୋଡ଼ ଧରି ଭୂମିରେ ସେ ଲୋଟିଯିବ । କରୁଣ କରୁଣ ହୋଇ କାନ୍ଦିଉଠିବ । ମନର କବାଟ ଖୋଲି ଦେବ । ସତ କଥା କହିଦେବ, ମୁଁ ଲଳିତାକୁ ଚାହେଁନାହିଁ । ମୋର ଆଉ ପୁତ୍ରକାମନା ନାହିଁ । ମୁଁ ନିମିତ୍ତମାତ୍ର । ମୋର ଏକମାତ୍ର କାମ୍ୟ ତମେ, ତମେ, କେବଳ ତମେ ।

କରୁଣ କରୁଣ ହୋଇ ନନ୍ଦିକା କାନ୍ଦିଉଠିଲା ।

ଏତେ ବ୍ୟାକୁଳ ତମେ ? ହେଉ, ତମରି କଥା ହିଁ ରହୁ । ତମ ପାଇଁ ମୁଁ ଲୋକହସା ହେବି, ଅପମାନ, ଟାହିଟାପରା ସହିବି । ତମରି ଲଳିତାକୁ ଆଣି ତମରି ପାଖରେ ଥୋଇବି । ହେଲା ତ ଏବେ ? ଏଥର ହସ । ହସିବ ନାହିଁ, ନନ୍ଦିକା ? ଲଳିତା ତମ ମନକୁ ତ ପାଇଛି, ମୋର ଫଟୋ ଦେଖିବା ଦରକାର ନାହିଁ । ଏଥର ହସ, ନନ୍ଦିକା !

ଭାଗ୍ୟ ଉପରେ ଅଭିମାନ କରି ନନ୍ଦିକା ହସିଲା । ହସି ହସି ଲୋଟିଗଲା ପଲଙ୍କ ଉପରେ । ସୁନନ୍ଦ ଚାହିଁ ରହିଲା, ମଣିଲା ଲଳିତା ଅବତରିଛି ନନ୍ଦିକା ଦେହରେ ।

ସତେକି ନନ୍ଦିକାର ପୁଅ ବାହାଘର !

ଲୋଟଣୀ ପାରାର କାର୍ଯ୍ୟତତ୍ପରତା, ହସିଲା ମୁହଁ, ସରସ ହୃଦ୍ୟ କଥା ଶୁଣି କେହି କିଛି କହିବାକୁ, କି ପଚାରିବାକୁ ସାହସ କରିନାହିଁ । ଦେଖିବା ଶୁଣିବା ତ ଅଲଗା, ସପନରେ ନ ଦେଖିବା କଥା ଆଖି ଆଗରେ ଘଟିଯାଉଛି । ସ୍ୱାମୀକୁ ବାହା କରାଇବାକୁ ସ୍ତ୍ରୀ ହେଉଛି ବାଇଆଣୀ !

ନିଜ ହାତରେ ସୁନନ୍ଦକୁ ସଜାଇ ବରବେଶ କରେଇଛୁ । ସବୁ ଟାହି ଟାପରାକୁ ହସି ହସି ବାହୁଡ଼େଇ ଦେଇଛୁ । ଅନ୍ୟ ମାଇପିଙ୍କ ସଙ୍ଗେ ମିଶି ତୋଳିରୁ ଓହ୍ଲାଇଆଣିଛୁ ଲଳିତାକୁ । ଘିଉଳ ଅଞ୍ଜଳି ଦେଇଛୁ । ଶୋଭାକୁ ପଛ କରି ନୂଆ ବୋହୂ ଲଳିତାର ମୁହଁ ଦେଖାଇଛୁ ରାଜ୍ୟଯାକର ଦେଖଣାହାରୀଙ୍କୁ ।

ଦେଖିଲା ଲୋକେ ଦୁଇଟା ମୁହଁକୁ ତଉଲ କରିଛନ୍ତି । ମନ ଭିତରେ ଗୁଞ୍ଜରିଉଠିଛି ଧାରଣା, କାହିଁ ରାଣୀ, କାହିଁ ଚନ୍ଦରକାଣୀ ! ନନ୍ଦିକା ସଙ୍ଗରେ ସମସର ହେବାକୁ ଆଇଚ ଏ ନାଲିଜା ?

କାହା ଆଖିକୁ ଲଳିତା କେମିତି ଦିଶେ । କିଏ କହେ ସୁନ୍ଦରଟିଏ, ଆଉ କିଏ ପଛରେ ଓଠ ନେଫଡ଼େ । ନନ୍ଦିକା ଆଗରେ ଭରସି କିଏ କିଏ ଲଳିତାକୁ ନିନ୍ଦିବ ?

କାନକୁ ଲାଗେ ସପନରେ ଦୁନିଆରେ ଆତଯାତ ହେଲା ପରି । ଦାଣ୍ଡଲୋକେ ଯାହା ନ ଜାଣନ୍ତି, ତାହା ସେ ଜାଣେ । ନନ୍ଦିକାର ସେଦିନ ରାତିର କଥା କାନରେ ବାଜିଯାଉଛି, ହସି ହସି ମରିବା ଭଲ ନୁହେଁ କି କିନ, ମତେ ସେ ଆଡ଼େଇ ଦେଇ ପାରିବେ ନାହିଁ ।

ହସି ହସି ସବୁ ସେ କଲେ, ସବୁ କରୁଛନ୍ତି । କିଏ କହିବ ଲଳିତା ତାଙ୍କର ସଉତୁଣୀ ? କେଉଁ ମାଇପ ନିଜ ହାତରେ ସଉତୁଣୀକୁ ସଜବାଜ କରି, ହାତ ଧରି ଚଉଠୀ ଘରେ ଛାଡ଼ିଦ ? ହସି ହସି ଧାଇଁଆସି ପୁଣି କହିବ, ଶୁଣମ ଶୋଭା, ପିଲାଟା କେଡ଼େ ଓଲୁ, କଟମଟ କରି ମୋ ହାତ ଧରୁଚ, ଗ୍ରୁଡ଼ୁନାହିଁ, ତମ ଭାଇଙ୍କର ନେଣେ ଘୂଙ୍ଗୁଡ଼ି ।

କଥା ପଦେ କହିବ ?

ଗୃଣ ପଦ କହ ।

ବୋଉ ଅନୁତାପ କରୁଛି ।

ନନ୍ଦିକା ମଣିଲା ସତେକି ତାର ପିଣ୍ଡରୁ ପ୍ରାଣ ଗ୍ରୁଡ଼ି ଗ୍ରୁଡ଼ି ଆଉଚି, ସତେକି ସେ ମୂର୍ଚ୍ଛା ଯିବ । କାହିଁକି ? ଏଇ ଶ୍ରେଷ୍ଠ ପ୍ରଶ୍ନଟି ପଚାରିବାକୁ ତାର ତୁଣ୍ଡ ଖୋଲିଲା ନାହିଁ । ପ୍ରଶ୍ନର ଉତ୍ତର ସେ ଭଲ କରି ଜାଣେ ।

ସେ ବୁଝିଲା, ଯେତେ ଯାହା କଲେ ମଧ୍ୟ ସେ ନିଜକୁ ଧରା ପକେଇଛୁ ।

ଭଉଜ, କାହା ଉପରେ ଅଭିମାନ କରି ଏ କାମ କରିଛ, ମୁଁ ଜାଣିପାରିଛୁ । ପଦାଟିଏ ମତେ ଲେଖିଲ ନାହିଁ ? ବୋଉ ବୁଢ଼ୀ ହେଲାଣି । ତାର ବୁଦ୍ଧି ବାମ ହେଲାଣି । କଥଣ କେବେ କହିଦେଇଥିଲ ବୋଲି ଅଭିମାନ କରି ଯାହା କଲ, ସେଥିପାଇଁ ବୋଉକୁ ଦଳବଳ, ଛଟପଟ କରି ମାରିଲ ସିନା ' ସେ ଅନୁତାପ କରି ନିଜର ଭୁଲ

ବୁଝିଲାବେଳକୁ ବାଣ ଛୁଟିସାରିଥିଲା । ବାହୁଡ଼ାଇ ଆଣିବାର ଉପାୟ ନ ଥିଲା । ତାର ମନ ଯେ ଦନଗଢ କାନ୍ଦୁଛି, ଏକଥା ତମ ପରି ବୋହୂ ବୁଝି ପାରୁ ନାହିଁ ?

ନନ୍ଦକା ସବୁ ଜାଣେ । ସବୁ ବୁଝିଛୁ । ଶାଶୂ ତା ମୁହଁକୁ ଚାହିଁ ପାରୁନାହାନ୍ତି । ହଁ, ନା, ମୁଣ୍ଡହଲା ଛଡ଼ା ଅଧିକ କଥା କହୁନାହାନ୍ତି । ହେଲେ ତାର କଅଣ ଥାଏ ? ଶାଶୂ ତାକୁ ମନରୁ ତଡ଼ି ପାରୁ ନାହାନ୍ତି, କି ମନରେ ବାନ୍ଧି ରଖି ପାରୁ ନାହାନ୍ତି । ଛଟପଟ ହେଉଛନ୍ତି ।

ହସି ହସି ସେ ଆଦେଶ ପାଳୁଛି ।

ତାହାର ଉପରେ ମୋର ଅଭିମାନ ନାହିଁ ଗୋ ଶୋଭା, ମୁଁ ମୋ କର୍ତ୍ତବ୍ୟ ପାଳୁଛି । ଭଗବାନଙ୍କ ପାଖରେ ଏତିକି ଗୁହାରି, ସେପରି ମୋ ମନକୁ ସେ ଦୁର୍ବଳ ନା କରନ୍ତୁ । ଏମିତି ହସି ହସି ଦେଲ କଟିଯାଉ, ମୋ ପାଇଁ ସେପରି ଅନ୍ୟ କେହି ଦୁଃଖ ନ କରୁ ।

ଭାବୁଛ ଯେ ?

ତୁମ ସହାନୁଭୂତିର ମାତ୍ରା ମୁଁ ସହି ପାରୁ ନାହିଁ ।

ଶୋଭା ଶୁଣିରହିଲା । ଲୁଚାଇଥିବା ନନ୍ଦକାର ଏଡ଼େ କରୁଣ, ମନଃଟସ, ବ୍ୟଥାତୁର କଥା ଶୁଣି ସେ ବୁଝିଲା, ଏଇ ସୁଖର ସଂସାରକୁ ଦୁଃଖ ନୈରାଶ୍ୟର ବାଦଲ ଘୋଟିଆସିଲାଣି । ତେଣୁ ହସ ଏଠି ଚନ୍ଦ୍ରାଲୋକ ପରି ଶୀତଳ ନୁହେଁ, କି ମନୋରମ ନୁହେଁ, ସେ କେବଳ କୃତ୍ରିମ ଝଟକ ।

କୁଟୁମ୍ବରେ ଅଧିକ ହୋଇଛି ମାତ୍ର ଗୋଟିଏ ଲୋକ, ସେ ଲଳିତା ।

ଗାଁ ମାଇପେ କେବେ କେବେ ଆସୁଛନ୍ତି । ନୂଆ ବୋହୂଟି ସଙ୍ଗରେ କେତେ କଣ, ନନ୍ଦକାକୁ ପଦେ ଅଧେ ଏଣୁ ତେଣୁ ପଚାରି ବୁଝାଉଛନ୍ତି ।

ଲଳିତା କଥା କହୁଲାଣି । ହାନି ଲାଭ, ଭଲ ମନ୍ଦ ପଚାରିଲେ ଦି ପଦରେ ଉତ୍ତର ଦେଉଛି, ଅପା ଜାଣନ୍ତି ।

ସତେ, ଅମାଠୁଁ ବଳି ! କେଉଁ ଜା, ନଣନ୍ଦ, କି ମା ଭଉଣୀ ଏତେ ସ୍ନେହ, ଏତେ ଆଦର କରିବ ନାହିଁ । ଲୋକେ କୁହାକୁହି ହେଉଥିଲେ ଆହା, ବାପ ମା ନାହିଁ ବୋଲି ଲଳିତା ପରି ଝିଅକୁ ନେଇ ସଉରୁଣୀ ବାଘୁଣୀ ଗୁହାରେ ଛାଡ଼ିଛି ତା ଭାଇ । ସଉରୁଣୀ କାହିଁ ? ବାଘୁଣୀ କାହିଁ ? ଅକ୍ଷିରେ ଦେଖୁଛୁ ସେ ବଡ଼ ଭଉଣୀ ।

ଆଖିରେ ପାଣି ଲଟେଇ ଦେଉନାହାନ୍ତି ।

ଆଲୋ, ତୁ ସତ୍ୟ ଶିଖିଛୁ, ଦେଏଖେ, ଶିଖି, କଣଦା ହେଲ କଅଣ ପଳାଉଛୁ ?

ସଙ୍ଗରେ ନ ନଚାଇଲେ ଖାଇବେ ନାହିଁ । ପାଟିରେ ଅଧା ଦେଲ ପର ଖାଇ ନେଅଣ ଦେବେ । କଥା କହିଲେ ହସ ହସ । ନିଜେ ବାନ୍ଧିଦେବେ କେଶ, ଜାଲ ଜାଲିକା ବେଣୀ, କାଇ ଜାଲିକା ଖୋସା । ମାଳ ମାଳ ଫୁଲ ବାନ୍ଧିବେ । ଆଖିରେ ମନ୍ଦ କଜଳ ଗାର । ମୁଣ୍ଡରେ ସରୁ ସିନ୍ଦୂର ଟୋପା । ଭଲଦିନେ ଭଲଘରରେ କପାଳରେ ଚନ୍ଦନପାଣ୍ଟି । ଗୋଡ଼ରେ ଅଳତା ଟଣ୍ଡିଲେ ଲଳିତା ଗୋଡ ଟାଣିନିଏ, ଦହେ, ଛୁଇଁ ।

ଗାଲରେ ଆଙ୍ଗୁଠି ମାରି ନନ୍ଦିନୀ କହେ, ଫୁଲେଇଛୁ ଦେଖାଉଛୁ । ମୁଁ କଣ ତୋ ବଡ଼ ଭଉଣୀ ନୁହେଁ ?

ବାଛି ବାଛି ଦେହକୁ ମାନିଲା ଭଲ ଶାଢ଼ୀ ପିନ୍ଧେଇଦିଏ ।

ଦେଖିଲୁ କେମିତି ଦିଶିଲୁ ? ଚାହିଁ ଏ ଦର୍ପଣକୁ ।

ଲଜ୍ଜେଇ ଲଜ୍ଜେଇ ନ ଚାହିଁଲା ପରି କଣେଇ ଚାହେଁ । ନିଜ ଉପରୁ ଦୃଷ୍ଟି ଫେରିଏ ନନ୍ଦିନୀ ଉପରକୁ । ମନରେ ଜାଗେ ଉଦ୍ବାର ଆଗ୍ରହ । କାନରେ ବାଜେ ଦୂରରୁ ଶୁଣିଲା କଥା କାହିଁ ରାଣୀ, କାହିଁ ଚାକରାଣୀ !

ଅମାଜଡ଼ା କେଶ, କଜଳହୀନ ଆଖି, ଦରମଇଳା ଧୋବଲ ଶାଢ଼ୀ, ତଥାପି । ଦହେଁ ତ ଜୋଡ଼ି, ଜନ୍ମ ନନ୍ଦିନୀ ପାଖରେ ଲଳିତା ଦିଶେ କେଡ଼େ ମଇଳା । ଦହେଁ ତ ସୁନ୍ଦର, କେବଳ ମୁହଁକୁ ମୁହଁ ମିଳାଇଦେଲେ ପ୍ରଭେଦ ଜଣାପଡ଼େ, କପାଳ ଭ୍ରୂଲତା, ଆଖି, ନାକ, ଓଠ । ପ୍ରଭେଦ କଅଣ କହି ହେବ ନାହିଁ, ଅନୁଭବ କରିହୁଏ ।

ଲଳିତାକୁ କେମିତି କଣ ଲାଗେ । ଦୃଷ୍ଟି ଫେରିଏ । ଲାଜରୁ ହୁଏ । ଛପି ଛପି ଥର ଥର ଦୁର୍ବଳ ଭାବନା ଆସେ ମନକୁ- ନନ୍ଦିନୀ ଜଣାଇଦେବାକୁ ଚାହେଁ କି, ଯେତେ ଯାହା କଲେ ହେବ ନାହିଁ ଲୋ ଲଳିତା, ନିଜ ଆଖିରେ ତୁ ଦେଖିଲୁ ? ତତେ ମୁଁ ଆଣିଛି, ତୁ ମୋର କଣେଇ, ତୁ ମୋର ଖେଳଣା, ଦୟାର ପାତ୍ର !

ଛିଃ, ଏ କି ଭାବନା ମନକୁ ଆସୁଚି ? ଅମନା ଭାବନା । ଅଜଣା ଗାଆଁ ମାଉସୀଙ୍କର ଅଧା ଗୋପନରେ କୁହାକୁହି କଥା ।

ପିଲାଦିନେ ଯେଉଁ ମୁହଁ ଦେଖିଲେ କେମିତି ସେ ନିଜକୁ ଭୁଲିଯାଉଥିଲା, ସେଇ ମୁହଁ ତ ସେ, କେଡ଼େ ଶୋଭନୀୟ, ଏବେ ଲଳିତା ଅନୁଭବ କରୁଛି । କଅଁଳ କଥା ମନକଣା ହସ । ନିଜ ଡାକ ନିଜ କାନରେ ବାଜୁଛି, ନୂଆ ଝିଅ ମ, କଥା କହିବ ନାହିଁ ? ରାଗ ପଳେଇଛୁ ?

କହୁଛି ଶୁଣ, ଜଣେ ରଜା ଥିଲେ ଯେ ତାଙ୍କର ସାତ ରାଣୀ । ରଜା ସବୁ ସାନରାଣୀକୁ ବେଶି ସ୍ନେହ କରନ୍ତି । ହେଲେ, ସେ ତ ପାଟରାଣୀର ହାତଟେକାରେ ଥାଏ—

ନନ୍ଦିକାର ମୁଣ୍ଡ ଲଳିତା ବାନ୍ଧିଦିଏ । ଗୋଡ଼ରେ ଅଳତା ପିନ୍ଧାଏ । ସବୁ ଦୁର୍ଭାବନାକୁ ପଛକୁ ପକାଇ ପୁଣି ଭାବେ, ମୋ ଅପା ପରି କିଏ ହେବ ? କେଉଁ ଯୁଗରେ, କେଉଁ ଦେଶରେ, କେଉଁଠି ଗୋଟାଏ ରଜା ସିନା ଥିଲା, ପାଲବଣ୍ଡା ମନ୍ତ୍ରୀ କଥାରେ ଉଠୁଥିଲା ବସୁଥିଲା । ଏବେ ତ ସେସବୁ ସାତ-ସପନ !

ଛି, ରୁ କଅଣ ମୋ ଗୋଡ଼ ଘଷିବୁ ? ମୋ ଗୋଡ଼ କେହି ଘଷିଦିଏ ନାହିଁ । ମତେ ଅଡ଼ୁଆ ଲାଗେ । ଥାଉ, ମୋ ରାଣୀ ।

ନନ୍ଦିକା ତା ଗୋଡ଼ରୁ ଲଳିତାର ହାତ ଖସାଇଦିଏ । କହେ ରୁମା ରୁମା, ରାତି କେତେ ହେଲାଣି ଦେଖିଲୁ ? ଯା, ଶୋଇପଡ଼ । କାଲି ଅଶୋକାଷ୍ଟମୀ, ଜାଣୁ ତ ? କେତେ କାମ !

ସେଦିନ ସକାଳୁ ଉଠିଲେ ଲଳିତା ଦେଖେ, ଆରଘର ଖୋଲା ହୋଇଛି, ନନ୍ଦିକା ପାଇଁ ସେବକମାନେ, କି ଗୁହାଳରେ, କେଜାଣି ବା ବଗିଚାରେ ଫୁଲ ତୋଳୁଛନ୍ତି କଣ୍ଟା ବାସନ ମାଜୁଛି ।

ମନକୁ ମନ ଲଜ୍ଜିତ ହୁଏ । ସ୍ୱାମୀ ଝିଅକେଇ ରଖିଲେ ବୋଲି ନିଜ ପାଖରେ ସେ କୈଫିୟତ ଦେଇପାରେ ନାହିଁ । ସେ ପାଇଁ କଷ୍ଟକରେ । ଦଶ ଦିନ ହେଲା ଦେଖା ଦର୍ଶନ ନାହିଁ । ଚିଠି ଖଣ୍ଡେ ବି ଲେଖିନାହାନ୍ତି ।

ତଳ ତଳ ଶାଶୁଙ୍କର କୋଠରୀ ଆଡ଼େ ଅନାଏଁ । ଉଠିନାହାନ୍ତି ଦେଖା । ଶାଶୁବୁଢ଼ୀଙ୍କୁ ଲାଗ ପାଇଣ ତଳେ । ଜାଣି କି, ସେ ନିଜେ ବୁଝିପାରେ ନାହିଁ । ଦିନେ କେବେ ସେ ମୁହଁ ଶୁଖେଇ ପଡ଼େ କହନ୍ତି ନାହିଁ ବରଂ ଆହ୍ଲାଦରେ କଅଁଳେଇ କହନ୍ତି, ଯା ମା ନନ୍ଦିକା ଛାଡ଼ି ବସିଥିବ । କେବେ କେବେ କହନ୍ତି, ଲକ୍ଷ୍ମୀ ସରସ୍ୱତୀ ତମେ ଦିହେଁ ମୋର ଦୁଇ ଆଖି । ପରକଥା ଶୁଣିବ ନାହିଁ । ପରକଥା କାନକୁ ଅଇଲେ କେହି କାହାକୁ ଲୁଚେଇ ରଖିବ ନାହିଁ ।

ଟାଣ ଉପଦେଶ ଦିଅନ୍ତି, ପରଘରେ କଳି ଲାଗିଲେ ପାଣ୍ଡିଲୋକଙ୍କୁ ଖୁସି ଲାଗେ । ଯେଉଁମାନେ କଳି ତୁଣ୍ଡେଇବାକୁ ହଁ । ହଁ । କହି ଧାଇଁଆସନ୍ତି ସେଇମାନେ କଳିର ମଞ୍ଜି ପୋତନ୍ତି । ସୁନାଘର ଚୂନା ହୁଏ ।

ଲଳିତା ଶୁଣେ । ଶାଶୁଙ୍କ କଥା ମନରେ ଭେଦେ ।

ନନ୍ଦିକାର ହସିଲା ମୁହଁ ଦେଖିଲେ, ସ୍ନେହମିଶା କଅଁଳ କଥା ଶୁଣିଲେ, ଶାଶୁଙ୍କର ସେହି ଉପଦେଶ ପାସୋରିଯାଏ ।

ଅପା ଆସିଲେଣି, ହସିହସିକା, କେତେ ଖୁସି କଥା କହିବେ ।

ମୁହଁ ଶୁଖେଇ ବସିଛୁ କାହିଁକି ଲଳିତା ? ଶାଶୁ ଶଶୁର ମନେ ପଡ଼ୁଛନ୍ତି ? ଭୁଲ୍ ସେ ଘରକୁ । ଆମ ମାଇପୀ ଜନ୍ମଟା ସେମିତି ଲୋ ! ବେଳ ବିତିଗଲେ, ନୂଆ ସଂସାର ନୂଆ ଜୀବନ ଆରେଇଯାଏ ।

କଥା କହୁନ ଅପା ?

ତୁ ଏକା ହୁଁ କହିବୁ ।

ନନ୍ଦିକା କଥା କହେ ନା । ପିଠି ଆପଡ଼େ, ସତେ କି ଲଳିତା ତାର ଟିକି ଝିଅଟି । ହୁଁ ବନ୍ଦ ହୁଏ ।

ଲଳିତା ଶୋଇପଡ଼ିଲାଣି ।

ଉପଦ୍ରବ । ବାହାରେ ବର୍ଷା ଲୁଚୁଛି । ଅନ୍ଧାରର ମଟିଆମଟି । ବରଷା ଓ ପବନର ଶବଦ । କବାଟ ଖୋଲା, ତଥାପି ଘର ଭିତର ଅଳପ ଅନ୍ଧାରିଆ । ମାଇପସ୍ତିର ଭ୍ରମ । କନ୍ଦି ହୁଏତ ଆଉ ବର୍ଷାରେ ଶାଶୁଙ୍କ ପାଖରେ ଅଛି ।

ନନ୍ଦିକା ଉଠି ବସିଲା ।

ଚାହିଁ ରହିଲା ଲଳିତା ମୁହଁକୁ । ନିଶ୍ଚିନ୍ତ, ନିଷ୍କପଟ, ଶୋଭିଲା ମୁହଁଟି ! ଏଇ ତାର ସହଚରୀ । ଏଇ, ଏଇ ତାର ଭ୍ରାତାର ମଣି ଗଳାର ମାଳାକୁ ଟାଣିନେଇଛି । ଏହାର ପାଇଁ ତାର ଜୀବନ-ସର୍ବସ୍ୱ ସ୍ୱାମୀ, ଦୂରେଇଯାଇଛନ୍ତି ।

ନନ୍ଦିକାର ଆଖିରେ ଅଶ୍ରୁ ଭରେ ।

ଲଳିତା ଚିଠି ଲେଖିଛୁ, ପିଲାଳିଆ ଖେଳାଳିଆ ଚିଠି, ତମେ କେମିତି ଅଛ ? ଆମେ ସବୁ ଭଲ ଅଛୁ । ବୋଉଙ୍କର ଦେହ ଅଳ୍ପ ଖରାପ ଥିଲା । ଅପା ଡାକ୍ତରଙ୍କୁ ଡକାଇ ଔଷଧର ବ୍ୟବସ୍ଥା କରିଥିଲେ । ସେ ଭଲ ଅଛନ୍ତି ।

ଲଗାଣଦିନ ଝିପିଲା ବର୍ଷା ହେଉଛି । ସେଥିରେ ରଜନୀକାନ୍ତ ଅପା ଏପାଖ ସେପାଖ ହେଉଛନ୍ତି । ନିଜେ ଯାଇଁ ବାଡ଼ରେ ମଞ୍ଜି ପୋତୁଛନ୍ତି । ମୁଁ ଗଲେ କହୁଛନ୍ତି, ଲଳି, ତମୁକୁ ନାହିଁକି ? କହିଲା, ଏଥିରେ ତାଙ୍କର ଦେହ ଖରାପ ହେବ ନାହିଁ ? ତାଙ୍କୁ ଲେଖିଦିଅ, ସେ ଆଉ ଭିଜିବେ ନାହିଁ । ମୁଁ କେତେ କହେ, ସେ କେତେ କରେ ? ମୁଁ କେମିତି ତାଙ୍କୁ ଅଟକାଇବି ?

ଅପା ଆଉ ଆମିଷ ଛୁଉଁନାହାନ୍ତି । ସେ କହିଲେ, ତାଙ୍କର ମାନସିକ ଅଛି । ମୁଁ କହିଲି, ତମେ ମାଛ ନ ଖାଇଲେ ମୁଁ ବି ଖାଇବି ନାହିଁ । ସେ କହିଲେ, ମୋ ସଙ୍ଗେ ବାଧି କରିବୁ ? କାନ୍ଦପକେଇଲେ ।

ମୋ ଅପା କେଡ଼େ ଭଲ ! ବଡ଼ ଭଉଣୀ ଏତେ ସ୍ନେହ କରିପାରେ ? ଭଉଣୀ ନ ଥିଲେ, ଜାଣନ୍ତି ଜାଣନ୍ତ ?

ସବୁ କାମ ସିଏ କରୁଛନ୍ତି । ମତେ କରେଇ ଦେଉ ନାହାନ୍ତି । ଉପରେ ପଡ଼ିଗଲେ ସେ କହୁଛନ୍ତି, ଦେଏଖେ, ଶିଖିଖି । ନ କଲେ କେମିତି ଶିଖିବ ? ତାଙ୍କ ଗୋଡ଼ରେ ଟିକିଏ ହାତ ଦେଲେ କହୁଛନ୍ତି, ଛି, ଏ କଅଣ କରୁଛୁ, ଗୋଡ଼ ଘଷେଇବାକୁ ତତେ ମୁଁ ଆଣିଛି କି ?

ମୋ ଅପା ପରି ଜଣେ କିଏ କେଉଁଠି ଦେଖି ନ ଥିବ । ତମେ ଆସି ତାଙ୍କୁ ମନା କରିଦିଅ, ସେ ନିଜେ ଯେ ଏତେ କାମ କରିବେ ନାହିଁ ।

ବ୍ୟବସାୟ ମାନ୍ଦା ପଡ଼ିଛି । ଗୋଟିକ ପରେ ଗୋଟିଏ ଜିନିଷରୁ କଣ୍ଟ୍ରୋଲ ଉଠୁଛି । ଖୋଲା ବଜାରର କମ୍ପିଟିସନ୍ ଭିତରେ ଲାଭ କରି ମୁଣ୍ଡ ଟେକିବା ଯେ କେଡ଼େ କଷ୍ଟ ସୁନନ୍ଦ ଏବେ ଅନୁଭବ କଲାଣି । ସମ୍ଭବ ଅଛି ବୋଲି ହାତେ ମାପି ଗୃହଣ୍ତକରେ ଗୁଡ଼ି ବେପାରକୁ କୌଣସିମତେ ଆଗେଇ ନେଉଛି ।

ଆସନ୍ତାର ଏ ବନ୍ଦସ୍ତକତ ଫେଲ୍ କେସ୍ ହୁଣ୍ଡି ନାହିଁ । ଯଦି ଫେଲ୍ କାରଜ ହୁଏ ତେବେ ସର୍ବନାଶ !

ବହୁତ ଚିନ୍ତା, ଦୁର୍ଭାବନା ଭବିଷ୍ୟତ ଯୋଜନା, ଦଉଡ଼ ଧାପଡ଼ ଓ ଅଶାନ୍ତି । ରାତି ଅଧ ହେଉଛି । ଘରକଥା ମନେ ପକାଇବାକୁ ବେଳ ନାହିଁ ।

ଲଳିତାର ଚିଠି ମେଘର ଚାଲୁ ଝଲକୁ ଝାଣୁଛି । ବ୍ୟବସାୟର ଘୂର୍ଣ୍ଣିବାୟୁ ଭିତରୁ ଖସି ପଳାଇ ସେମାନଙ୍କୁ ଥରେ ଦେଖି ଆସିବାକୁ ମନ ହେଉଛି । ବୋଉଙ୍କର ଦେହ ଭଲ ନ ଥିଲା । ନନ୍ଦିକା କେମିତି ଅଛି କାହିଁକି,ଆସିଷ କାହିଁକି ଗୁଡ଼ିଲା, ଚିଠି ନ ଦେଲା କାହିଁକି ?

ଭଲ ଝିଅଟିଏ ସେ ଲଳିତା, ଅତି ନମ୍ର, ସରଳ, ନିଷ୍କପଟ, ଅବିକଳ ପିଲାଦିନେ ଯେମିତି ଥିଲା । ଲଜକୁଳୀ ଲଟା । ଦେହରେ ହାତ ଛୁଇଁଲେ ଢଳିଯାଏ, ନୟନ ମୁଦେ, ମଥା ଟେକି କଥା କହେ ନାହିଁ । ଯେଜ ସତେକି କୁସୁମମାଳଟି ପରି ସୁରଭିତ, ସୁନ୍ଦର । ହସହସ, ଆପତ୍ତିହୀନ । ଯେଉଁଠି ଥୁଅ, ଯେପରି ଥୁଅ, ଅଭିଯୋଗ ନାହିଁ, ଅଭିମାନ ନାହିଁ ।

ବାଛି ବାଛି ନନ୍ଦିକା ଅଣିଛି ସାନ ଭଉଣୀଟି । କେବକୁହା ପଢ଼ୁଉଣୀ ସେ ଲୁହେ । ଲଳିତା ନିଜକୁ ଭୁଲିଛି । କଥା କହିଲେ କେବଳ ନନ୍ଦିକାର ପ୍ରଶଂସା !

ଆଜ ତୁମ ଜନମ ଦିନ ?

ସେମିତି ହସୁଛ କାହିଁକି ? ଅପା ତ ନାଇଦେଲେ ଚନ୍ଦନପାଟୀ, ମନା କରନ୍ତୁ ?

ସବୁ ସମୟରେ, ସବୁ କ୍ଷେତ୍ରରେ, ନନ୍ଦିକାର ଉପସ୍ଥିତି ସେ ଅନୁଭବ କରେ । ଏଇ ଟିକି ଲଲିତାଟି ଦେହରେ ସତେକି ନନ୍ଦିକା ଲୋଳିହୋଇଥାଏ । ତାର ମନଧ ଭାବନା ହାଥରେ ଗୋଳି ହୋଇ ମିଶି ଏକାକାର ହୋଇଥାଏ । ଲଲିତାକୁ ପାଖରେ ଦେଖିଲେ ନନ୍ଦିକାକୁ ସେ ଅନୁଭବ କରେ ।

କଏ ତୁମକୁ ସହରର ମେନକା କରି ସଜାଇଛି ?

ସେମିତି ହସୁଛ କାହିଁକି ? ପୁରୁଣା ଗହଣା ଉତାରି ଦେଇ ନୂଆ ଗହଣା ସେ ନାଇଦେଲେ ।

ସେ ?

ମୋ ଅପା ।

କାହାକୁ ସେ ଗେଲ କଲ ? ଲଳିତାର ରକ୍ତମାଂସର ଦେହର ପରଶ ସେ ପାଇଛି ମନ, ତାଆରି ଭିତରେ ନନ୍ଦିକାର ନିର୍ମଳ ସହଜ ସୁଷମା ସେ ଅନୁଭବ କରିଛି ।

୧

ସୁନନ୍ଦର କାମନା ଝୁରୁଛି ନନ୍ଦିକାର ସାନ୍ନିଧ୍ୟ । ବାଆଁରେଇ ହୋଇ କେତେ ଆଉ ଧରି ସେ ପାଖକୁ ଯାଇଛି ।

ନନ୍ଦିକାର ମୁହଁକୁ ଚାହିଁଲେ ଲାଜ ମାଡ଼େ । କଅଣ ସେ କହିବାକୁ ଚାହେଁ ଭୁଲିଯାଏ । ସେ ଉପଲବ୍ଧି କରେ, ନନ୍ଦିକାର ସରହସିଲା ମୁହଁରେ ପବିତ୍ରର କାମନା ଉର୍ଦ୍ଧପନ, ମଥାନତକାରୀ ଲାଜ ଭୟ ଓ ସଙ୍କୋଚର କୌଣସି ଆଭା ନାହିଁ । ସେଇ ଅତି ପରିଚିତ, ଅତି ଆପଣାର ମୁହଁରେ ସଜ ସକାଳର ସ୍ନିଗ୍ଧ, ମଧୁର, ମନୋହର, ଉଦ୍ଭାସିତ ଜାଗ୍ରତ ପ୍ରେରଣାଦାୟିନୀ କୋମଳ ଆଭା, ଯାହା କେବଳ ଅନ୍ତରରେ ଦାନ କରେ କରୁଣା ଓ ସହାନୁଭୂତି । ନିଜକୁ ସେ ଶିଶୁ ପରି ମଣେ । ଆଗରେ ଧରି ହୋଇଥିବା ଦେବୀର ସେ କେବଳ ସ୍ନେହର ପାତ୍ର, ଗୋଟିଏ ଖେଳନା !

ବ୍ୟକ୍ତିତ୍ୱ ଏଣିକି ମାନ୍ଦା ପଡ଼ିଲାଣି ନନ୍ଦିକା !

ସବୁଦିନେ ସବୁକଥା ସମାନ ନ ଥାଏ ।

କିଛିଦିନ ଏମିତି ରହିଲେ ଭଲ ହେବ ।

ବନ୍ଦ କରିଦେଇ ଘରକୁ ଫେରିଆସୁନା ? ତମର କେଉଁ କଥା'ର ଅଭାବ ? ବାଲିମାଟି ହାତ୍‌ରେ ଲଦିଲେ ସଂସାର ଅଚଳ ରହିବ ନାହିଁ ।

ମୋ କଥା ମୁଁ ଭାବୁ ନାହିଁ । ଯେଉଁମାନେ ଆଶ୍ରା ନେଇ ପଡ଼ିଛନ୍ତି ସେମାନଙ୍କର ଦୁରବସ୍ଥା କଥା ଭାବୁଛି ।

ସତ । ଆହା, ବିଚରା ସଜୀବ ! ଗୁଲୁ ଆଉ କିଛି ଦିନ, ବେଲ ବଦଳିପାରେ । ଆଉ ଟଙ୍କା ଲୋଡ଼ା ?

ବର୍ତ୍ତମାନ ନୁହେଁ ।

ଲଳିତା ଗୁଲିଯାଉଛି ବାରଣ୍ଡାରେ, କଣେଇ କରି ଗୁହିଁ ଦେଉଛି । ପଲଙ୍କ ଉପରେ ମୁହଁ । ମୁହଁ ବସିଛନ୍ତି ସୁନନ୍ଦ ଓ ନନ୍ଦିକା । ଅବଶ୍ୟ ସେ ଦେଖିଥିବ । ମୁହଁ ରଙ୍ଗ ବଦଳିଲା କି ? ସକାଳର କଅଁଳ ଖରା ବଉଦ ଫାଙ୍କରେ ଝରି ଆସି ଅଗଣାରେ ପଡ଼ିଲାଣି । ହେଇ, ସେ ଗୁଲିଯାଉଛି ।

କେମିତି ଅଡୁଆ ଲାଗେ ସୁନନ୍ଦକୁ ।

ଲଳିତା, ଲଳିତା !—

ମନକଥା ନନ୍ଦିକା ଜାଣିପାରିଲା ? ଲଳିତା ଫେରିଆସିଲାଣି ଦ୍ୱାରବନ୍ଧକୁ । ଓଢ଼ଣା ଟିକିଏ ଟାଣିଅଣିଲା ।

କଅଣ, ଅପା ?

ଆସିଲୁ ଏଠିକି ।

ପାଖକୁ ଆସେ । ତା ମୁହଁକୁ ଗୁହିଁ ନନ୍ଦିକା ମୁରୁକେଇ ହସେ । କହେ, କେତେ ଆଲୁରୀଟା ମ, ହାତ ଧୋଇଲୁ, କଳା ମେଞ୍ଚାଏ ଡାହାଣ ଗାଲରେ ଲଗେଇଛୁ କାହିଁକି ? ଆରସିକୁ ଅନେଇଲୁ ?

ଲଳିତା କଣେଇ ଚାହେଁ ।

ନନ୍ଦିକା କହେ, ଆରେ ଲୁଗାରେ ପୁଣି ମେଞ୍ଚାଏ ? ନେ ଏ ଗୁବି । ଟ୍ରଙ୍କ ଖୋଲ ଆଉ ଗୋଟାଏ ଲୁଗା ପାଲଟିପକା । ମୁଁ ଯାଉଛି ରୋଷଘରକୁ ।

ନନ୍ଦିକା ଖସିଯାଏ ।

ମୁଁ ସେ କଳା ମେଞ୍ଚାକ ପୋଛିଦେବ ।

ଥାଉ । ତମେ ଭାରି ଦୁଷ୍ଟ ।

ଧରା ପଡ଼ିଯିବ ?

ଛାଡ଼ ମୋ ହାତ, କିଏ ଆସିବ ।

ଆସୁ । ବେଶି ଜିଦ କରି ହାତ ଟାଣିଲେ ଆଉ ଗାଲରେ ଚୂନ ଲଗାଇବାକୁ ପଡ଼ିବ ।

ତମ ଗୋଡ଼ତଳେ ପଡ଼ୁଛି, ମୋ ହାତ ଛାଡ଼ । ହେଇଟି, ଅପା ଆସୁଛନ୍ତି, ମୁଁ ଲୁଗା କାଢ଼େଁ ।

ତମ ଅପା କେବେ ମୁହଁରେ ଚୂନ କାଳି ବୋଳିହୁଅନ୍ତି ନାହିଁ । ଆରେ, ଆଖିରେ ଲୁହ ଛଳଛଳ ? ମୁଁ ଯାଉଛି ।

ସୁନନ୍ଦ ଚାଲିଆସେ । ମାଇପୀ ଜାତିର ଏଇଟା ଗୋଟାଏ ରୋଗ । ଜାଣିକରି ତ ମଣିଷ ଜାତଟା କାମୁଡ଼ା କୁକୁର !

ଆଗରେ ଟେବୁଲ ଉପରେ ନନ୍ଦକାର ଫଟୋ । ସେ ହସୁଛି । ଗତଥର ସେ କଟକ ଆସିଥିଲାବେଳେ ଏ ଫଟୋ ଉଠା ହୋଇଥିଲା ।

ନନ୍ଦକା ଦୂରେଇ ଯାଉଛି, ପାଖେଇ ଆସୁଛି ଲଳିତା । ମନ ହୁଏ, ଦୁହିଁଙ୍କୁ ଦୁଇ ହାତରେ ଧରି ପାଖକୁ ଏକ ସଙ୍ଗେ ଆଉଜାଇ ଆଣିବ । କିପରି ଏହା ସମ୍ଭବ ହେବ ? ଏ ପ୍ରସ୍ତାବ ବାଢ଼ିବାକୁ କିଏ ଆଗ ମୁହଁ ଖୋଲିବ ?

ସୁନନ୍ଦର ସେ ସାହସ ନାହିଁ । ଯେତେ ଘରରେ ଫେରିଲେ ସେ ଦେଖେ, ନନ୍ଦକା ଚେଇଁଛି । ପାଖରେ କନି । ଲଳିତାଟି ଶୋଇପଡ଼ିଲାଣି । ଜଣେ ମୁଠିଏ ଖାଇଦେଲେ ଆଖିକୁ ନିଦ ଝାଙ୍କେ । ନନ୍ଦକାର ଆହୁରି କେତେ କାମ ବାକି ଅଛି । ଏ ଘରେ କେହି ନାହିଁ ।

ସେ ଘରେ ଲଳିତା ଶୋଇଛି ।

ସାବଧାନତାକୁ ଅସାବଧାନତା କଲେ ସେ କଡ଼ ମୋଡ଼େ, ନିଶ୍ୱାସ ପକାଏ । ଅସାବଧାନତା ଭରପୁର ଯୌବନ ପ୍ରକଟିତ କରେ । ଜାଣି ନ ଜାଣିଲା ପରି ଲଳିତା ତାର ଗଳାରେ ବେଢ଼ାଇଦିଏ କଅଁଳ ବାହୁଲତା, ବନ୍ଧନ କରେ ।

ନନ୍ଦକାକୁ ସେ ସପନ ଦେଖେ ।

ଭୁହନା ମୁହଁ ଗମ୍ଭୀର କରି ପଚାରନ୍ତି, ନନ୍ଦକା ଦେଖା କେମିତି ଅଛନ୍ତି ? ନିଜର ଭୂଲ ସେ ବୁଝିପାରିଲେଣି ?

ଲଳିତାର ପଞ୍ଚମଟି ମାନେ ଅବଶ୍ୟ ଶୁଭ୍ରନା ବୁଝିପାରିବେ, ନନ୍ଦିକା ଭୁଲ କରି ନାହିଁ, ସେ ଘରର କର୍ତ୍ତ୍ରୀ । ସମସ୍ତେ ତାଙ୍କର ଆଦେଶର ଦାସ । ଲଳିତାକୁ ସେ ସ୍ନେହ କରନ୍ତି

ଲଳିତାର ପଞ୍ଚମଟି ଶୁଭ୍ରନା ମନଦେଇ ପଢ଼ିଲେ । ସୁନନ୍ଦର ଚାହା ପାତ୍ରରେ ମନ ନ ଥାଏ । ଛବିଲା କି ମଲୟଙ୍କର ପ୍ରଶ୍ନଗୁଡ଼ିକର ଉତ୍ତର ସେ ଦେଇ ପାରୁ ନ ଥାଏ । ଶୁଭ୍ରନାଙ୍କର ତନ୍ମୟ ମୁହଁର ଭାବ ପରିବର୍ତ୍ତନ ଉପରେ ତାର ଆଗ୍ରହୀ ଦୃଷ୍ଟି ନ୍ୟସ୍ତ ।

ତାଙ୍କର ହସିଲା ମୁହଁ ଗମ୍ଭୀର ଦିଶିଲା । ସନ୍ଧ୍ୟାବେଳାର ଉଜ୍ଜ୍ୱଳ ବିଜୁଳି ଆଲୁଅ ଜଣାଇଦେଲା, ଶୁଭ୍ରନା ପଞ୍ଚମଟି ପଢି ଖୁସି ହୋଇ ପାରି ନାହାନ୍ତି । ସେ ପଞ୍ଚମଟି ସୁନନ୍ଦର ହାତକୁ ବଢ଼ାଇଦେଲେ । ଦୀର୍ଘଶ୍ୱାସ ପକାଇ କହିଲେ, ସୁଖରେ ସଂସାର କରନ୍ତୁ ସୁନନ୍ଦବାବୁ, ଏତିକି ଆମର କାମନା ।

କଅଣ ପଚାରିବ ବୋଲି ମନ କରିଥିଲା, ସୁନନ୍ଦର ତୁଣ୍ଡ ଖୋଲିଲା ନାହିଁ । ପଞ୍ଚମଟି ପକେଟରେ ରଖି ଚାହା ପାତ୍ର ସେ ପୁଣି ମୁହଁରେ ଲଗାଇଲା । ଛବିଲା ଯାଇଁ କୋଳରେ ବସି ପକେଟରୁ ରୁମାଲ ଟାଣିଲାଣି । ମଲୟ ମାଆଙ୍କର କାନ୍ଧ ଧରି ଟାଣୁଛି ।

ଛି, ମଲୟ !

ମାଆଙ୍କର ଆଖିଠାରା ଦେଖି ମଲୟ କାନ୍ଧ ଛାଡ଼ି ଚୌକି ପଛରେ ଠିଆ ହେଲା । ପିଲାଟା ବୁଝିଲା ନାହିଁ, କି ଅନ୍ୟାୟ କାମ ସେ କରିପକାଇଛି ।

ଶୁଭ୍ରନା କହିଲେ, ମୋର ମନେ ହେଉଛି, ନନ୍ଦିକା ଦେବୀଙ୍କ ପ୍ରତି ଆପଣ କ'ଣ ଅନ୍ୟାୟ କରିଛନ୍ତି । ସେଥିପାଇଁ ନିଜ ପ୍ରତି ସେ ବୀତସ୍ପୃହ ହୋଇ ପଡ଼ିଛନ୍ତି ।

ଅନ୍ୟାୟ ? ନାହିଁ, ଶୁଭ୍ରନା ଦେବୀ, ବରଂ ତାଙ୍କୁ ଦେଖିଲେ ଭକ୍ତିରେ ମନ ନଇଁଆସେ । ମନେହୁଏ, ସେ ଗୋଟିଏ ଦେବୀମୂର୍ତ୍ତି । ଆରାଧନା କରିବାକୁ ମନହୁଏ ।

ଭୁଲିଯାଉଛନ୍ତି ଯେ ସେ ଆପଣଙ୍କର ପତ୍ନୀ । ଭକ୍ତି ଓ ଆରାଧନା ପାଇବାକୁ ଆପଣଙ୍କ ଘରକୁ ସେ ଆସି ନ ଥିଲେ ।

ସୁନନ୍ଦର ମୁହଁ ମଉଳିଲା ।

ଭୁଲ ବୁଝିଲେ କି ମୋ କଥା ? ନିରୋଳା ବେଳାରେ ଟିକିଏ ଚିନ୍ତା କରି ଦେଖିବେ । ଆପଣଙ୍କର ବନ୍ଧୁ ଅତନୁବାବୁ ଯଦି ମୋତେ କେବଳ ଭକ୍ତି କରନ୍ତି, ଆଉ ଧୂପ, ଦୀପ, ନୈବେଦ୍ୟ ଦେଇ ଆରାଧନା କରନ୍ତି, ମୁଁ ଭାବୁଛି, ମୁଁ ପାଗଳ ହୋଇଯିବି, ନୋହିଲେ ନୂଆ ଆଇନର ଆଶ୍ରା ନେଇ ତାଙ୍କୁ ଛାଡ଼ପତ୍ର ଦେବି ।

ଶୁଭ୍ରନା ହସିଉଠିଲେ ।

ସୁନନ୍ଦ ବି ହସିଲା ।

ରୁହ୍ନା କହିଲେ, ସମସ୍ତଙ୍କୁ ଏଡ଼ିବାକୁ ଗୋଟିଏ ପତ୍ନୀକୁ ଦେଖା ଆଖ୍ୟା ଦେଇ ଆଡ଼େଇ ଦେଉନ୍ତୁ ନାହିଁ । ଆପଣ ଅନ୍ୟାୟ କରିବେ । ସେ ମଧ୍ୟ ଆପଣଙ୍କର ସ୍ନେହ ଓ ଆଦରର ଅଧିକାରିଣୀ ।

କିନ୍ତୁ—

ତାଙ୍କଠାରେ କିନ୍ତୁର ଯେଉଁ କାରଣମାନ ଦେଖୁଛନ୍ତି, ସେସବୁ ତାଙ୍କର ଭଲ-ପଣିଆର କୈଫିୟତ୍, ନିଜ କର୍ତ୍ତବ୍ୟବୋଧର ବଡ଼ିମା ।

ସୁନନ୍ଦ ଅବାକ୍ ହୋଇ ବସିରହିଲ । ଦୃଷ୍ଟି ରୁହନା ଦେବୀଙ୍କ ଉପରେ ନିବଦ୍ଧ । ନିର୍ବୋଧ ସେ । ଏଇ ନିରାଟ ସତ୍ୟ କେବେ ତାର ମନକୁ ଆସିନାହିଁ । ଏ ବିଷୟରେ ଦିନେ କେବେ ସେ ଚିନ୍ତା କରିନାହିଁ ।

କଅଣ ଦେଖୁଛନ୍ତି ?

ଆପଣଙ୍କୁ ।

ସତେ ? ମୁଁ କଣ ଠିକ୍ ହିମାନୀ ଦେବୀଙ୍କ ପରି ନୁହେଁ ? ଭଲକରି ଚାହିଁ ଦେଖନ୍ତୁ ତ ।

ଆପଣଙ୍କର ବାହ୍ୟଚେଷ୍ଟା କେବେ ମୋର ଆଖିରେ ପଡ଼େ ନାହିଁ । ଆପଣଙ୍କ ମନ ଭିତରର ସୌନ୍ଦର୍ଯ୍ୟ ମହଲରେ ମୁଁ ହଜିଯାଏ । କ୍ଷମା କରିବେ ।

ଆପଣଙ୍କର ମନ ଭିତର ଜଳଟପାତ୍ର ସ୍ପରଖାର,ହୋଇଥିଲା । ସେଥିପାଇଁ କେହି ତାଙ୍କର ଦୋଷ ଦେଇ ପାରିବେ ନାହିଁ । ତାଙ୍କ ପାଖରେ କ୍ଷମା ଭିକ୍ଷା କରିବା କାହାର ଲୋଡ଼ା ପଡ଼ିବ ନାହିଁ । ସେ ପୁଣି ତାଙ୍କର ମନ ଭିତରେ ଡାକପାଇଲେଣି । ଶୁଣି ସୁଖୀ ହେବେ, ଅପା ପୁଣି ଶୀଘ୍ର ପୁତ୍ରବତୀ ହେବାକୁ ଯାଉଛନ୍ତି ।

ପତ୍ର ଲେଖିଥିଲେ ?

ହଁ । ଶୀଘ୍ର ସେମାନେ ନିଜ ଦେଶକୁ ଫେରିଯାଉଛନ୍ତି । ଆପଣ ଯେ ଆଉ ଗୋଟିଏ ବିବାହ କରିଛନ୍ତି, ଏ ବିଷୟ ତାଙ୍କୁ ଦୁଇଥର ଜଣାଇଦେଇଛି । ତଥାପି ସେ ଭଲ ମନ୍ଦ ପତ୍ରେ ଲେଖିନାହାନ୍ତି ।

କାହିଁକି ଜଣାଇଲେ ?

ସେ ଠିକ୍ ବୁଝିପାରିଥିବେ, ଏଥିପାଇଁ କେବଳ ସେ ଦାୟୀ ।

ଅଧିକ ପଚାରିବାକୁ ସୁନନ୍ଦର ସାହସ ହେଲା ନାହିଁ ।

ନନ୍ଦିକାକୁ ଜର ।

ଶାଶୁଙ୍କର ଉପଦେଶ, ସାନ ବୋହୂ, ତମ ଅପାକୁ ଆଜି ଦୁଧ ବାର୍ଲି ଖାଇବାକୁ ଦେବ ।

ମୋ ସୁନ ଅପା, ଆଉ ଟିକେ ପିଇଦିଅ ।

ଭଲ ଲାଗୁ ନାହିଁ । ହେଲା, ସେତିକି । ତୁ ଶୋଇବୁ ଯା ଲଳିତା, ଦେଖିଲୁ କେମିତି ବର୍ଷା କୁଟୁଛି । ରାତି ଅଧ ହେଲାଣି । ଭିନା ଆଜି ତୋ ଘରେ ଶୋଉନ୍ତୁ ।

ମୁଁ ଏଇଠି, ତୁମରି ପାଖରେ ଶୋଇବି । ଦେଖ ଅପା, ଭିନା କେମିତି ବାରଣ୍ଡାରେ ବସି ଘୁଙ୍ଗୁଡ଼ି ମାରୁଛନ୍ତି ।

ଆହା, ଦିନଯାକ ପରିଶ୍ରମ କରି କ୍ଳାନ୍ତ ହୋଇଛନ୍ତି । ପଛେ ଡାକିଦେଲେ ଧଡ଼ପଡ଼ ହୋଇ ଉଠିବେ । ଏ କଣ କରୁଛୁ ଲଳିତା, ଛି, ତୁ କଣ ମୋ ଗୋଡ଼ରେ ହାତ ଦେବୁ ?

ହାତ ଟେକି ନନ୍ଦିକା ଲଳିତାର ମୁହଁ ଆଉଁସିଦେଲା । ମନ କହିଲା, ଏଇଟା କଅଣ ହୋଇଛୁ ମୋ ସଉତୁଣୀ ଦା ! ନାହିଁ ତ, ସ୍ନେ ମୋର ସାନ ଭଉଣୀ । ଉହୁଁ, ଦୁଅ, କି ବୋହୂ । ସ୍ୱା ଉପରେ କି ଅଭିମାନ ?

ବୁହିଲା କାନ୍ଦୁକୁ । ସୁନନ୍ଦର ଫଟୋ ହସୁଛୁ । ନନ୍ଦିକାର ଫଟୋ ମୁହଁ ଶୁଖେଇଛୁ । ସେଇ ନନ୍ଦିକାର ମରଣ ହେଇଛୁ । କେବଠୁଁ, ଏଁ, କେବଠୁଁ ?

ନନ୍ଦିକାର ହାତ ଲଳିତାର ମୁହଁରୁ ଖସିଲା ।

ତମ ହାତ ନିଆଁ ପରି ତାତିଛୁ । ଆଜି ମୁଁ ତମ କଥା କେବେ ମାନିବି ନାହିଁ । ଆଖି ବୁଜି ଟିକିଏ ଶୋଇପଡ଼ିଲ, ଆଲୁଅ କମେଇଦିଏଁ ।

ନନ୍ଦିକା ଆଖି ବୁଜିଲା । ଆଖିକୋଣରୁ ଝରିପଡ଼ିଲା ଲୁହ ଦି ବୁନ୍ଦା । ଭାବିଲା, ଲଳିତା ଗୋଡ଼ ଘଷୁ, ଯାହା ତାର ମନ ମେ କରୁ, ବାଧା ଦେବ ନାହିଁ । ଲଳିତାକୁ ଆପଣାର କରିବାକୁ ସେ ସୁନନ୍ଦକୁ ଦୂରେଇ ଦେଇଛୁ । ନରୋଲା ବେଲରେ ମନ କାନ୍ଦିଉଠିଛି, ଧୈର୍ଯ୍ୟ ଭାଙ୍ଗିଛି । ସ୍ନାୟୁରେ ଛୁଟିଛୁ ଉତ୍ତାପ । ଏଇ ଘରେ, ଏଇ ପଲଙ୍କ ଉପରେ ପଡ଼ି ସେ ଛଟପଟ ହୋଇଛୁ । ମୁଣ୍ଡକୁ ଉଠିଛୁ ପାଗଳାମି । ଉନ୍ମାଦ ହୋଇ ଯାଇଛୁ ଯାମିନୀ ।

ଟିକି ଲଳିତା ଗୋଡ଼ ଘଷୁଛୁ । କେଡ଼େ ସାବଧାନ, କେଡ଼େ ଭଲ । ମୁଠିମୁଠିକା ଘଷା । ଭିନା ଏମିତି ଘଷିପାରେ ନାହିଁ । କିନ୍ତୁ ଏଇ ଲଳିତାର କଅଁଳ ହାତର ପରଶ, ତାତିଲା ଦେହ, ଝାଳେଇଲା ଦେହରେ ମୂର୍ଚ୍ଛାଳିଆ ଉତ୍ତେଜନା ଖେଳାଉଛୁ ।

ଦେହରୁ ଝାଳ ବୋହିଲାଣି ଅପା, ପୋଛିଦିଏଁ । ଜର ଅଳ୍ପ ଛାଡ଼ିଯିବ । ତମେ ଆଉ ବର୍ଷାପାଣିରେ ଚନ୍ଦ୍ରବୃକ୍ଷ ବଗିଚ୍ଚାରେ ଗଛ ରୋପିବ ନାହିଁ । ଦେଖିଲ, ବର୍ଷାପାଣି ପରି ଝାଳ ବହୁଛି, ତଥାପି ଜଡ଼ୁଛ, କହୁଛି ।

ଲଳିତା ଝାଳ ପୋଛୁଚି । ମନରେ ସଙ୍କୋଚ ନାହିଁ । ଏ ଦେହଟା ବି ସତେ କି ତା'ର ।

ପିନ୍ଧିଲା ଲୁଗା ଓଦା ହେଲାଣି, ବଦଳି ପକାଅ, ଅପା ! ନିଅ ଏଇ ଶାଢ଼ୀଟା । ଉଠିଲ ।

ହାତ ଧରି ଉଠାଇ ବସାଇଲା । ବେଢ଼ାଇ ଦେଲା ଶୁଖିଲା ଶାଢ଼ୀ ।

ଏଥର ଶୁଅ ଅପା, ମୁଁ ଏଇଠି ତମର ପାଖରେ ବସିଚି । ଶୁଅ ।

ତୁ ଶୋଇବୁ ନାହିଁ ।

ଏଇଠି ଶୋଇବି ।

ନନ୍ଦିକାର ପିଠିରେ ଲଳିତାର ହାତ । ଅଶିଲା ଦେହକୁ ସେ କୁଣ୍ଢାଇ ଧରିଛି । ନିଦ ହୋଇଗଲାଣି । ଆହା, ନିଷ୍ପାପ ସରଳ ପିଲାଟି, ମନରେ ହିଂସାବାଦ ପଶି ନାହିଁ !

ନନ୍ଦିକା ତାର ଶୋଇଲା ମୁହଁକୁ ଚାହିଁରହିଲା । ଆଉଁସିଦେଲା କପାଳ । ଆଙ୍ଗୁଠିରେ ସାଉଁଳିଦେଲା ଭ୍ରୂଲତା । ଶୋଇଲା ମୁହଁରେ ଚେଳ କରିବାକୁ ମନ ହେଉଛି । ଗେଲ କଲା ।

ଲଳିତା ଆଖି ଖୋଲିଲା, ନିଦୁଆ ଆଖି । ଅବଶ ସ୍ୱରରେ ପଚାରିଲା, ନିଦ ହେଉନାହିଁ ? କ୍ଷୀର ପିଇବ ଅପା ?

ଅତି ସ୍ନେହରେ ନନ୍ଦିକା ପୁଣି ତାର କପାଳରେ ଗେଲ କଲା ।

ଲଳିତାକୁ ପୁଣି ନିଦ ହେଲାଣି । ଛୁଆଟି ପରି ଘୂଙ୍ଘୂ ଘୂଙ୍ଘୂ ସେ କୋଳରେ ପଶୁଛି । ନନ୍ଦିକା ତାର ପିଠି ଉପରେ ହାତ ପକାଇଲା । ଧୀରେ ଧୀରେ ଆହୁରି ପାଖକୁ ଘୁଞ୍ଚାଇନେଲା ।

ନନ୍ଦିକାର ଉତଳା ମନରେ କେତେ ଭାବନା ପଶିଲା । ଲଳିତା ତାର କୋଳରେ । ହିଂସାବାଦ ତାର ମନରେ ନାହିଁ । ସେ ସେବା କରିଛି । କ୍ଳାନ୍ତ ହୋଇ ନିଶ୍ଚିନ୍ତ ହୋଇ ଶୋଇପଡ଼ିଛି । ଏଇ ପିଲାଟା ପାଇଁ ଜାଗିଛି ତାର ମନରେ ଈର୍ଷା ! ଆଜି ନୁହେ, ଯେଉଁ ଦିନରୁ ସେ ଏ ଘରେ ପାଦ ଦେଲା । ଦୁନିଆ ଜାଣିଲା ନାହିଁ । ସମସ୍ତେ କଲେ ନନ୍ଦିକାର ପ୍ରଶଂସା । କିନ୍ତୁ ସେ ଜାଣେ, ନନ୍ଦିକା କଅଣ ।

ତା

ଆଖିର ଲୁହ ସେ ଅଟକାଇ ପାରୁନାହିଁ । ମନର କୋହ ଚାପି ପାରୁନାହିଁ । ମିଳନର ମୋହ ତାକୁ ଉନ୍ମାଦ କରୁଛି । ଦେହର ରକ୍ତମାଂସରେ ଲାଗିଛି ଅନଳ, ଖାଲି ଛଟପଟ ।

ଚଉଠି ରାତିରେ ନିଜ ହାତରେ ଲଳିତାକୁ ସଜାଇ ସ୍ୱାମୀଙ୍କ ପାଖରେ ଛାଡ଼ିଆସିଛି, ମନ ହାହାକାର କରି ଉଠିଛି । କିଏ ତା'ର ଭିତରୁ ଡାକ ଛାଡ଼ୁଛି, ଆରେ, ସେଇଟା କିଏ ମ ?

ପାଦ ଅଟକୁଛି । ହାତ ବଢ଼ାଉଛି । ଖୋଜୁଛି ଘରଆଡ଼କୁ । ଦୁନିଆର ସହସ୍ର ହସିଲା ଆଖି କଟମଟ କରି ତାକୁ ଅନେଇ ରହିଛି । ସମସ୍ତଙ୍କ ଆଖିରେ ଗୋଟିଏ ଭାବ, ଦେଖାଯାଉ, କେତେ ଦିନ ମନ ଟାଣ କରି ରହିବ । ବଳେ ହମହମ ଡିଙ୍ଗ ଭାଙ୍ଗିବ ଯେ, ଓଠରୁ ଝଡ଼ିପଡ଼ିବ ନାଲଠା ହସ ।

ଦୁନିଆ ଜାଣେ, ନିଦଭଙ୍ଗା ଓଠରୁ ହସ ଲିଭିନାହିଁ, ମନ ଦବିନାହିଁ, ଯଯାତିକୁ ସେ ଜୟ କରିଛି, ସହରୁଣୀକୁ କେ ଲକୁ ନେଇଛି ।

ରାତି ନିଶବଦ ହେଲାଣି ।

ଆଖିରୁ ନିଦ ଆସୁନାହିଁ । ଲୁହ ଅଟକୁନାହିଁ । ମନ ଉଚ୍ଚାଟ ହେଉଛି । ଦେହ ଝିମିଝିମି । ମନରେ ଉନ୍ମାଦନା ପଶିଛି । ଃସତେ କି ସେ ବାଇଆଣୀ ହୋଇଯିବ ।

ଆର ଘରେ ସୁନନ୍ଦ, ପାଖରେ ଲଳିତା । ନିଜ କଲା କର୍ମ ! ଆଉ ଫେରିଆସିବ ନାହିଁ ପୂର୍ବର ଜୀବନ । ଅଭିମାନ କରି ସେ କହର ଢୋକୁଛି ।

ଉଠି ବସେ । ଆଲୁଅ ଜଳେ । ଝରକା ଖୋଲେ । ନିରେଖି ଚାହେଁ ନିଜର ଦେହକୁ । ବସନ କରେ ଦୂର । ଆଗରେ ଆଇନା । ସେ ଦେଖୁନାହିଁ । କି ମିଳିବ ତାର ଦାଉ ଦାଉ ଜଳନ୍ତା ରୂପରୁ, ଭରପୂର ଯୌବନର ସମ୍ଭାରରୁ, ବହୁ ମୂଲ୍ୟ ବସନ ଭୂଷଣରୁ ? ସବୁ ପୋଡ଼ିଜଳି ଅଙ୍ଗାର ହେଉ । ସମ୍ମାନ ତାର ହେବ କଅଣ ? ସେ ଉପେକ୍ଷିତା ।

ତାକୁ ସେ ଦୂର କରିଛନ୍ତି । କାଲିକାର ଲଳିତା ତାଙ୍କୁ ବାନ୍ଧିରଖିଛି । ମନର କଥା ସେ ବୁଝିଲେ ନାହିଁ । ଦେହର ଡାକ ସେ ଶୁଣିଲେ ନାହିଁ । ରୂପର କଥାରେ ପରତେ ଗଲେ । ନାହିଁ ତାଙ୍କର ସେ ଅବାଧ ପଣ, ଅମାନିଆ ଖୋଇ, ପିଲାଳିଆ ଢଙ୍ଗ ?

ଛି, ଛି,—ବୋଉ ଡାକବେ, ହେଇଟି କଣ ଆସୁଛନ୍ତି, କବାଟ ଠିଆ ମେଲା, ଛାଡ ନେଉଛି ବେଳ, ଛାଡ଼ ମୋର ପଣତ ।

ଯାଉନା, ଯା ।

ତମ ମୁହଁକୁ ଲଜ ସରମ ନାହିଁ ?

ତମ ମୁହଁକୁ ଅଛି ତ କବାଟ କଳ, ନଇଲେ ହେଇ ଟାଣିଲି ପଣତ ।

ଆରେ, —ମୋ ରାଣ, ରହ —: ।

ରାତି ପାହିଲେ ବାହାଘର । କାମ କରି କରି କ୍ଲାନ୍ତ ହୋଇପଡ଼ିଛି । ତକିଆରେ ମଥା ରଖିଲାରୁ ଘୋଟିଆସିଲା ନିଦ । ସୁନନ୍ଦ ଘୁଙ୍ଗୁଡ଼ି ମାରୁଛି । ନିଦ ଭାଙ୍ଗିଲା । ସୁନନ୍ଦ ଗେଲ କରୁଛି । ଆଖି ବୁଜିଲା । ଭାରି ଚଗଲା ଏ ବୁଢ଼ା ପିଲାଟା, ଭାରି ଅମାନିଆ ।

ବାରଣ ମାନି ସେ ଫେରିଯାଉଛନ୍ତି, କାରଣ ଏଇ ଲଳିତା ! ଅତି ଭଲ ପିଲା ସେ ହେଇଛନ୍ତି, ନା ? ସେ ଘରୁ ପାଟି ଶୁଭୁଛି । ତୁନି ତୁନି କଥା !

ଭୟରେ ଗୋଡ଼ରୁ ମୁଣ୍ଡଯାଏ ଥରି ଉଠେ ନନ୍ଦିକା । ଆଲୁଅ ଲିଭାଏ । ଧୀରେ ଧୀରେ ଫେରି ଆସେ ପଲଙ୍କ ଉପରକୁ । ଛାତି ଧଡ଼ପଡ଼ । ନିଜ ପାଖରେ ସେ ନିଜେ ଚୋର ।

ପିଣ୍ଡରେ ପ୍ରାଣ ନ ଥିଲା ପରି ସେ ପଡ଼ିରହେ । ଜୋର୍‌ରେ ନିଶ୍ୱାସ ଛାଡ଼ିବାକୁ ବି ସାହସ ହୁଏ ନାହିଁ । ଲୋତକରେ ବିଛଣା ବୁଡ଼େ ।

ନିଶା ଗଳୁଛି ।

କେତେ ରାତି କେଜାଣି । ଆଖିର ଲୁହ ସବୁ ଯେମିତି ନିଗାଡ଼ିଦେଇଛନ୍ତି । ନନ୍ଦିକା ପଦାକୁ ଆସିଛି, ପାଦ ଚପିଚପି । ସେପଟରେ ଆଲୁଅ ଜଳୁଛି । ଝରକା ଫାଙ୍କରେ ଦିଶୁଛି, ସୁନନ୍ଦ କୋଳରେ ଲଳିତା । ଶୋଇଛି ନିଶ୍ଚିନ୍ତରେ ।

ସତେକି ନନ୍ଦିକା ମୂର୍ଚ୍ଛା ହୋଇ ପଡ଼ିବ । ଦେହର ଭାର ସହିବାକୁ ଥରିଲା ଗୋଡ଼ ଦୁଇଟାର ଶକ୍ତି ନାହିଁ । ମୁଣ୍ଡ ଝାଙ୍କି ହୋଇପଡ଼ିଲା ରେଲିଙ୍ଗ ଉପରେ । ଥରିଲା ହାତ ଖସିଗଲା । ଝରକାର କବାଟରେ ବାଜିଲା । ଝରକା ଖୋଲିଲା ।

ଶବ୍ଦରେ ଲଳିତାର ନିଦ ଭାଙ୍ଗିଲା । ମୁଣ୍ଡ ଟେକି ଚାହିଁଲା ।

ଲଳିତା ଦେଖିଛି । ଉଠି ବସିଲାଣି । ଆବାକାବା ହେଇ ଚାହିଁଛି ।

ନନ୍ଦିକାର ଦେହରେ ଜୀବନ ନାହିଁ ।

ହେଉଟି, ଲଳିତା ଉଠିଆସିଲଣି । ନନ୍ଦକା ଯାଇ ପାରୁ ନାହିଁ । ପନ୍ଦରଦିନ ତ ଆଗ କଥା, ମାସକର ବୋହୂ ସେ ହେଇନାହିଁ, କଅଣ ମନେ କରିବ ?

ଲଳିତା !

ଅପା ?

ଅଇଲୁ ।

କବାଟ ଖୋଲି ଧୀରେ ଧୀରେ ଲଳିତା ପଦାକୁ ଆସିଲା । ମୁଣ୍ଡରେ ଓଢ଼ଣା । ହାତ ଧରି ନନ୍ଦକା ନେଲା ଦୁଆରକୁ । ଜହ୍ନ ଅଲୁଅ । ଫିକା । ତରଳ ତଳେ ନକେ ବସି ପାଖରେ ଲଳିତାକୁ ବସାଇଲା । ମୁଣ୍ଡ ଆଉଁସି ଟେହେଲେଇ କହିଲା, ପିଲାଟା, ଡୋର ବୁଦ୍ଧି ନାହିଁ । ଘରେ ବନ୍ଧୁ ବାନ୍ଧବ ପୁଣି ରହିଛନ୍ତି, କିଏ କେତେବେଳେ ଉଠନ୍ତି, ଅଲୁଅ ଲିଭେଇ ଦେଲୁ ନାହିଁ ? ନଇଲେ, ଝାଟକା କରି ଦେଲୁ ନାହିଁ ?

ସରମରେ ସଚେତନ ଲଳିତା ସଙ୍କୁଚିବ ।

ଫୁଟୁକା ଗାଲରେ ସରୁ ଚ୍ୟୁପଡ଼ା ମାରି ନନ୍ଦକା କହିଲା, ଯା ଏଥର ।

ନନ୍ଦକା ଭାବୁଥିଲା, ସେ ଆତ୍ମରକ୍ଷା କରିପାରିଛି । ନନ୍ଦକା ହିଁ ତା'ର ସାର ହେଲା ।

ଲଳିତା ଆଉ କେବେ ଭୁଲ କରେ ନାହିଁ, ଘର ଅନ୍ଧାର କରେ ।

ଛପି ଛପି, ଗୋଡ଼ ଚପି, ନନ୍ଦକା ଯାଏ । ଉଦ୍‌ବେଳ ବିକଳ ତରଳ ଢଙ୍ଗ । ଅନ୍ଧାର କୋଳରେ ଜଣକ ପାଖରେ ଆଉ ଜଣକୁ ଅନୁମାନ କରେ । ମୁଣ୍ଡ ଭିତରେ କଳେ ଚଢ଼ା । ଯାହାକୁ ସେ ଅଣି ସ୍ୱାମୀଙ୍କୁ ଉପହାର ଦେଇଛି, ତାକୁ ଟାଣି ନେଇ ପଦାକୁ ଫିଙ୍ଗିଦେବାକୁ ମନ ହୁଏ । କୁଆଡ଼ୁ ଟିକିଏ ଖୁଡ଼୍‌କିରି ଶବ୍ଦ ହେଲେ ଡରି ହରି ଧାଇଁଆସେ ନିଜର ପଲଙ୍କକୁ ।

ସପନ ଦେଖେ, ଲଳିତାର ତଣ୍ଟି ଚପି ସେ ତାକୁ ମାରିଦେଉଛି !

ଲଳିତା ପାଖରେ ଶୋଇଛି ।

ନନ୍ଦକା ଉଠି ବସିଛି । ଦେହମୁଣ୍ଡ ଗରମ । କେଶ ଫିଟି ଅଲଗା ହୋଇଛି । ମୁଣ୍ଡକୁ ଆସିଛି ପାଗଳାମି । ଏଇ ତାର ଜୀବନସର୍ବସ୍ୱ ହରଣ କରିଛୁ । ଆଜି ତାର ତଣ୍ଟି ଚପି ମାରିଦେବ । ଆଉ ସହିପାରିବ ନାହିଁ ।

ଦୁଇ ହାତ ଟେକି ଲଳିତାର ବେକ ପାଖକୁ ନେଲା, ହାତ ଥରୁଛି ।

ଅପା !

ଲଳିତାର ନିଦ ଭାଙ୍ଗିଲା । ସେ ଉଠି ବସିଲା ।

ଏମିତି କରୁଛ କାହିଁକି ? ଓହୋ, ଜରର କୋପ ବଢ଼ୁଛି ? ମୋ ରାଣ, ତୁମେ ଶୋଇପଡ଼ । ମୁଁ ତମ ମୁଣ୍ଡରେ ପାଣି ପଟି ଦେଉଛି ।

ଜର କମିଆସିଲା । ଶହେ ଡିଗ୍ରୀ । ଥର୍ମାମିଟର ଟେବୁଲ ଉପରେ ରଖି ଲଳିତା ପାଖକୁ ଆସିଲା ।

ନିଅ, ଏଇ ମିଶ୍ରି ପାଣି ପିଇଦିଅ । ଏତେ କାନ୍ଦୁଛ କାହିଁକି ?

ଲଳିତା !

କହ ।

ମୋର ଅଣ୍ଟି ଚିପି ପାରିବ ?

ଏ କି କଥା କହୁଛ ?

ଭାରି କଷ୍ଟ ହେଉଛି ।

ମୁଣ୍ଡ ଚିପି ଦିଅ !

ସହି ପାରୁନାହିଁ ନେ !

ତେବେ ଥାଉ । ଆଲୁଅ ଲିଭେଇଦିଏଁ । ଟିକିଏ ଶୋଇପଡ଼ । ଲିଭେଇ ଦେ ।

ଲଳିତା ଟର୍ଚ୍ଚ ଲାଇଟ୍ ତକିଆ ମୂଳରେ ରଖିଲା । ଆଲୁଅ ଲିଭାଇ ପାଖକୁ ଆସିଲା । ନନ୍ଦିକାର ପାଦ ଦିଓଟି କୋଳରେ ଥୋଇ ଆଉଁସିଲା । ଖୁସି ହୋଇ କହିଲା, ଜର ଓହ୍ଲେଇ ଆସିଲାଣି ।

ନନ୍ଦିକା ହାତ ବଢ଼ାଇ ଲଳିତାକୁ ଧରିଲା ! କହିଲା, ଥାଉ, ମତେ ନିଦ ମାଡ଼ିଲାଣି । ତୁ ଆଉ ଅନିଦ୍ରା ହ ନା ।

ନନ୍ଦିକାର ହାତ ଦିଓଟି ଲଳିତାର ଦେହକୁ ଟାଣିନେଲା କୋଳକୁ । ଛାତିରେ ମୁହଁ ରଖି ଶୀତଳ ହାତଟି ନନ୍ଦିକାର ପିଠି ଉପରେ ଲଳିତା ଲଗେଇଦେଲା । ନନ୍ଦିକାର ଉଷ୍ମ ହାତଟି ତା'ର ପିଠି ଆଉଁସୁଛି ।

ଶୋଇପଡ଼ ଲଳିତା ।

କାନ୍ଦୁଛ କାହିଁକି ?

ଆଉ କାହିଁକି କାନ୍ଦିବ ? ଜର କମିଛି, ପାଗଳାମି ଆଖିଲୁହରେ ଝରିପଡ଼ୁଛି, ମୋ ଲଳିତା ଶୋଇଛି ମୋ କୋଳରେ ।

ଯାହାର ଛାତିରେ ମୁହଁ ଲୁଚେଇଛି, ଯାହାର ହୃଦସ୍ପନ୍ଦନ ବାଜୁଛି କାନରେ, ସେ ତାର କିଏ ? ମାଆ, ଭଉଣୀ, ଜା, ନଣନ୍ଦର ସ୍ନେହ ସେ ଜାଣେ ନାହିଁ । ଶାଉଜଙ୍କର ଅତ୍ୟାଚାର ହିଁ ଥିଲା ତାର ଜୀବନର ସମ୍ବଳ । ଆଉ ଏ ଜଣକ, କିଏ ତା ଉପରେ ସମସ୍ତଙ୍କର ସ୍ନେହ ଢାଳି ଦେଇଛି ?

ସହଚରୁଣୀ !

ଟିକ ପିଲଟି ପରି ସେଇ ଲଳିତାର ସେଇ ସ୍ୱପ୍ନର ଶବ୍ଦଟାର ଯିଏ କଥିଲା ପ୍ରତିମା, ତାଆର ଗ୍ରତରେ ମୁହଁ ଗୁଞ୍ଜିଲା ।

ମୋର ଏଇ ସହଚରୁଣୀ ଲେଖା । ହେଇଟି, ତାଙ୍କ ହାତର କଅଁଳ ପରଶ ମୋର ସର୍ବାଙ୍ଗରେ ଧୀରେ ଧୀରେ ସଞ୍ଚୁ ସ୍ନେହସମ୍ଭବର ଅମୃତ ବୋଳୁଛ ।

ଲଳିତାର କ୍ଲାନ୍ତ ଆଖିପତାକୁ ନିଦ ଓହ୍ଲାଇଆସିଲା ।

ସହଚରୁଣୀ !

କାହିଁ ସେ ? ଏଇ ଟିକ ପିଲଟି ? ସରଳ, ନିଷ୍କପଟ ନିଷ୍ପାପ ପିଲଟି ଯାହାକୁ ସେ ସ୍ୱାମୀ ଦେବତାଙ୍କୁ ଉପହାର ଦେଇଛି, ଯାହାକୁ କୋଳରେ ପୂରାଇ ସେ ଅନୁଭବ କରୁଛି, ସବୁ ସେ ଫେରିପାଉଛି, ସବୁ । ସେଇ ଲଳିତା ତା'ର ସହଚରୁଣୀ ହୋଇ ପାରେ ନା ।

ନିଦକା ତାକୁ ଆଲିଙ୍ଗି ଧରିଲା । ତାର ଆଖିପତା ମୁଦ ହୋଇଆସିଲା ।

ନିଦ ଭାଙ୍ଗିଲା । ଆଖିପତା ଖୋଲି ହେଉନାହିଁ । ଦୁର୍ବଳ ଲାଗୁଛି । କାନରେ ପଡ଼ୁଛି ଅବିରାମ ରେଳଗାଡ଼ି ଶବ୍ଦ, ଭୋକପଲର ମିଶ୍ରିତ କୋଳାହଳରଡ଼ି । ମନେ ହେଉଛି, ପାଖରେ ବସି ମୁଣ୍ଡ ଆଉଁସୁଛୁ ସ୍ୱାମୀ ଘୁମେଇ ପଡ଼ିଚନ୍ତି । ଆଉ ଗୋଡ଼ ପାଖରେ ଲଳିତା ।

ମାସଟିଏ ବିଛଣାରେ ପଡ଼ି ଦେଲ କଟିଲାଣି । ଟାଇଫଏଡ୍ ଜର । ଏକୋଇଶ ଦିନରେ ତାହା ଓହ୍ଲେଇଥିଲା । ନଅ ଦଶ ଦିନ କଟିଗଲାଣି । ଦୁର୍ବଳତା ଛାଡ଼ୁନାହିଁ । ଭୋକ ଲାଗୁଛି । ଉଠି ଚଲାଇବାକୁ ମନ ହେଉଛି । ଉଠି ହେଉନାହିଁ ।

ଲଳିତାର ସେବା କଥା ମନେପଡ଼ିଲେ କାବା କାବା ଲାଗେ । ସେଇ ଏକା ତାକୁ ବଞ୍ଚେଇଛି । ଦିନ ସବୁ କଟେ ଲଳିତାର କୋଳରେ । ହେଲେ, ଲଳିତା ପାଖ ଛାଡ଼ି ଯାଏ ନାହିଁ । ଜିଆଁ ରୋଗ ବୋଲି ପାଖରେ ପଶି ରଜପସ ହେବାକୁ ତାଙ୍କୁ କେହ କେହ ବାରଣ କରନ୍ତି । ସେ ଶୁଣେ ନାହିଁ । ଦେଖିବାକୁ ଶାଶୁ ଆସି ପାଖରେ ବସିଲେ ସେ ତଡ଼ିଦିଏ । କହେ, ମୁଁ ତ ଅଛି, ତମେ ଯାଉନ ।

କଟକରୁ ଡାକ୍ତର ନେଇ ଦେଢ଼େଥର ସେ ଆସିଲେଣି । ଦିନେ ଦୁଇଦିନ ରହି ପୁଣି କଟକ ଫେରନ୍ତି । ଔଷଧ, ଫଳ ଓ ଡାକ୍ତର ଆଣିବାକୁ ଯାଆନ୍ତି । ଅଜସ୍ର ଅର୍ଥ ବ୍ୟୟ ହେଲାଣି ।

ସେ ମରିବ ବୋଲି ମନ କରିଥିଲା । ମନକାମନା ପୂର୍ଣ୍ଣ ହେଲ ନାହିଁ । ସେ ବଞ୍ଚିଗଲା । ମରିଥିଲେ ଭଲ ହୋଇଥାନ୍ତା । ଏକୁଟିଆ ହଇରାଣିଆ ଜୀବନ ଭଲ ଲାଗୁନାହିଁ । ସେଇ କଥା ସେ ସ୍ୱାମୀଙ୍କୁ ଜଣାଇଦେଇଥିଲା ।

ଉତ୍ତର ଦେଲେ ଯେ, ଆଉ ଭୟର କାରଣ ନାହିଁ । ଜର କେବେଠୁଁ ଗ୍ଲଡ଼ିଲଣି । ଦୁର୍ବଳତା ଅଛି । ଫଳରସ ସ୍ୱାଦମତ ଖାଇଲେ ଦିନ କେଇଟାରେ ଦୁର୍ବଳତା ଗ୍ଲଲିବ ।

କି କଥା ଶୁଣୁଛରେ ଧଇଲ ନନ୍ଦକା ? ଆମର ଏ ସଂସାର କାହା ପାଇଁ ? ଦେଖ, ତମ କଥା ଶୁଣି ଲଳିତା ମୁହଁ ଶୁଖିଗଲଣି । ଏମିତି କଥା ଆଉ କହିବ ନାହିଁ ।

ମୁଣ୍ଡର ରୁକ୍ଷ ରୁକ୍ଷ କେଶ ଆଙ୍ଗୁଠିରେ ସାଉଁଳି ଦେଉନ୍ତୁ ସ୍ୱାମୀ ତାଆର ଦୁର୍ବଳ, ରୋଗଣା, ଅପନା ମୁହଁରେ ବୋଳ ଦେଲେ ।

ଦେହ ଶିମେଇଁ ଉଠିଲା । ମନକଲା, ଶକ୍ତି ନ ଥିଲା ହାତ ଦିଓଟି ତାଙ୍କର ବେକରେ ଗୁଡ଼ାଇଦେବ, ତାଙ୍କର ଅମୃତ ଚୁମ୍ବନ, ଓଠରେପରଶ ଲଗାଇରଖିବ ମୁହଁରେ ।

ତାର ହାତଟି ଏ ଲଳିତା ଧରିଛି, ଆଉଁସୁଛି ।

ଲଳିତାର ହାତ ଥରୁଛି ?

ନା, ତାର ।

ଲଳିତା ମୁହଁ ଲୁଚଉଛି ?

ସ୍ୱାମୀ ମଥା ଟେକିଲେ । ସତେ କି ନନ୍ଦକା ଖସି ପଡ଼ିଲା ସରଗ ଭୂଇଁରୁ ।

ଲଳିତାର ଆଖି ଛଳଛଳ ହେଲା କି ? ହିଂସା ? ସଉତୁଣୀ ବାଦ ? ଏଡ଼େ ସ୍ୱାର୍ଥପର ! ସହି ପାରୁନାହିଁ ! ମେ କପଣ ସହୁଛି, ଗ୍ଲଡି କରୁଛି ପଥର ?

ସ୍ୱାମୀଙ୍କର କହିଲ କଥା କାନରେ ବାଜିଲା, ଆରେ, ଲଳିତାର ଆଖିରେ ଲୁହ ଯେ ! ପାଗଲି, ତମର ଅପା ଭଲ ହୋଇଗଲାଣି ।

ଲଳିତାର ଆଖିରୁ କେତକ ଝରିଲା ।

ନନ୍ଦକା ସତେ କି ତାର ମନର କଥା ବୁଝିଲା । ଥରିଲା କଣ୍ଠରୁ ବଡ଼ାଦରିଆ ଅଭିମାନୀର ଡାକ ଛୁଟିଲା, ଲଳିତା '

ଅପା !

ଲଳିତା ନନ୍ଦକାର କପାଳ ଆଡ଼କୁ ମୁହଁ ନୋଇଲା । ଦୁର୍ବଳ ହାତ ଦିଓଟି ଟେକି ନନ୍ଦକା ଦେଡ଼ାଇ ଧରିଲା ତାର ବେକ । କପାଳରେ କପାଳ ଲାଗିଲା । ଦୁଇ ଆଖିର ଲୁହଧାର ମିଶି ହେଲା ଏକାକାର ।

ଦିଓଟି ଓଠର ସ୍ପନ୍ଦନ କହିଲା ଦିଓଟି ଅକୁହା କଥା—

ଏଇଥିପାଇଁ ଏତେ ଶ୍ରମ, ଏତେ ସେବା କରି ତମକୁ ବଞ୍ଚାଇଲୁ ଅପା ?

ସହିପାରିଲୁ ନାହିଁ ଲଳିତା, ଏଡ଼େ ସ୍ୱାର୍ଥପର ? ଭାବିଥିଲୁ, ମୋର ମରଣ ହେବ ଓ ତୋର ଶ୍ରମ, ସେବା, ଜଳପଣିଆ ଉଣ୍ଣିମ ବାଜିବ ସଂସାରରେ, ସ୍ୱାମୀଙ୍କ ମନରେ ?

ଦଉଟି ମୁହଁ ଅଲଗା ହେଲା । ଦୁହେଁ ପୋଛିଲେ ଦୁହିଁଙ୍କ ଆଖିରୁ ଲୁହ ।

ନନ୍ଦକା କହିଲା, ମରିବ ନାହିଁ ଲୋ ଲଳିତା !

ଉତ୍ତର ଶୁଣିଲା, ସେପରି କହନା ଅପା !

ଦୁହେଁ କଣେଇ ଚାହିଁଲେ ସୁନନ୍ଦକୁ । ସେ ହସହସ, ତନ୍ମୟ ।

ଭାବୁଛି, ସେ କେଡ଼େ ଭାଗ୍ୟବାନ ! ଦୁହେଁ ଦୁହିଁଙ୍କୁ ସ୍ନେହପାଶର ନିବିଡ଼ ବନ୍ଧନରେ ବାନ୍ଧିସାରିଛନ୍ତି । ଏକାଥରେ ଦୁହିଁଙ୍କୁ କରିବ ଗେଲ ?

ଦୁଇଟି ମୁହଁ ଅଲଗା ହୋଇଛି । କାହାକୁ ସେ ଆଗ ଗେଲ କରିବ ?

ଲଳିତାର ଢଳଢଳ, ତରଳ, ଯୌବନ ଉଦ୍‌ଭାସିତ, ସ୍ୱାସ୍ଥ୍ୟ, ପରିପୁଷ୍ଟ ମୁହଁଟି ତାକୁ ନିମନ୍ତ୍ରଣ କରୁଛି । ଆଖି ନଚିଆସିଲା । ତାଆର ଅସାବଧାନ ବସନଖସା ଯୌବନ ଡାକ ଛାଡ଼ୁଛି, ଆଗ ମତେ । ମୁଁ ନୂତନ, ମୁଁ ଆଗ୍ରହୀ, ଉଦ୍‌ବିଗ୍ନ, ଉଚ୍ଛନ୍ନ ।

ଆଉ ମତେ, ନନ୍ଦକାର ଶୁଖିଲା ମୁହଁ ଡାକ ପକାଇଛି, ମୁଁ ରୁଗ୍‌ଣ, ଦୁର୍ବଳ, ଉପାସୀ ।

ସୁନନ୍ଦର ଆଖି ବିଚରଣ କରୁଛି ନନ୍ଦକାର ଆବୃତ ତନୁରେ । ସାରା ଦେହ ତାର ପ୍ରଶ୍ନିଳ ହୋଇଉଠୁଛି, ପଚାରୁଛି, ଦେଖିନାହିଁ ? ଚିହ୍ନିନାହିଁ ? ସବୁଦିନେ ଏ ଦେହ ରୋଗଣା ନ ଥିଲା, ଦୁର୍ବଳ ନ ଥିଲା । ମନକୁ ପଚାର ।

ସୁନନ୍ଦ କାହାରିକୁ ଗେଲ କରିପାରିଲା ନାହିଁ !

ରାତି ପନ୍ଦରକ ଯାଏ ଦୁହେଁ ପାଖରେ ବସିଥିଲେ । କେତେ ଖୁସି ଗପ । ସ୍ୱାମୀ ନିଜ ହାତରେ ଦୁଧ ଢାଳି ପିଆଇଦେଲେ । ଲଳିତା ପେଇଲା-ଡାଳିମ୍ବ ରସ ।

ଶାଶୁ ଆସି ପଚାରିଲେ, ମା ମୋର କେମିତି ଅଛୁ ?

ଲଳିତା ହିଁ ଉତ୍ତର ଦେଲା, ଅପା ଆଜି ଭଲ ଅଛନ୍ତି । ଖାଲି ଖାଇବାକୁ ଦେଲେ ମୁହଁ ନେଫଡ଼ା । ଉଠି ବୁଲିବାକୁ ଛଟପଟ । ଡାକ୍ତର ତ ମନା କରୁଛି ।

ସୁନନ୍ଦ କହିଲା, ଏଣିକି ଟିକିଏ ବୁଲାଚଲା କରିବା ଭଲ ।

ଅଭମ୍ବା କହିଲେ, ଆଉ ଟିକିଏ ଦମ୍ଭ ହୋଇଯାଉ ।

ପାଖରେ ବସି କପାଳ ଆଉଁସି ବୁଢ଼ୀ ଉଠିଗଲେ ।

ସୁନନ୍ଦ କହିଲା ଲଳିତାକୁ, ତମେ ଏଥର ଶୋଇବ ଯା । ବେଶିଦିନ ଅନିଦ୍ରା ହେଲେ ତମେ ଯଦି ପଡ଼ିଯାଅ ତ ପୁଣି ହଇରାଣ ।

ଲଳିତା ପ୍ରତିବାଦ କଲା, ମୋର ଅଭ୍ୟାସ ହେଲଣି । ତମେ ଯାଅ ଶୋଇବ । ଦିନକଥା ଅନିଦ୍ରା ତମକୁ ବାଧିବ ।

ନନ୍ଦିକା କହିଲା, ଦିହେଁ ତମେ ଯାଅ । ମୋର ଆଉ କିଛି ଲୋଡ଼ା ନାହିଁ । ମୁଁ ଏଥର ଶୋଇବି ଯେ, ଜନ ମୋ ପାଖରେ ରହିବ ।

ସେ ଆଖି ବୁଜିଲା । କେହି ତା ପାଖରୁ ଗଲେ ନାହିଁ ।

ସେ ଆଖି ଖୋଲିଲା ।

ଆଲୁଅ ଜଳୁଛି । ପାଖରେ ସ୍ୱାମୀ ନାହାନ୍ତି କି ଲଳିତା ନାହିଁ । ତଳେ ଖାଇ ପ'ଶ ଜନ ଶୋଇଛି । ଖୋଲା ଝରକାବାଟେ ଘରେ ପଶୁଛି ଥଣ୍ଡାଥିର ଅଭିମାନିଆ କଥା ।

ଦେଖିଲ, ରାତି କେତେ ହେଲଣି ? ଗୋଟାଏ ପରା, ଡାକିବି ଅପାଙ୍କୁ ?

ଡାକୁନ ।

ଜ୍ୱର ନିଦ ମାଡ଼ୁଛି ।

ଶୋଇପଡ଼ ଏଇଠି ।

ମୁଁ ଯାଉଛି ଅପାଙ୍କ ପାଖକୁ, ଏତିକିବେଳେ ତାଙ୍କୁ ମୁଁ ଆଉ ଥରେ ଫଳରସ ଦିଏଁ ।

କିଏ ଦେବ ଯେ ।

ସେ କେବେ ଦିଏ ନାହିଁ ।

ଆଜି ଦିନକ ଦେଉ ।

ତାକୁ ତେବେ ଉଠାଇଦିଏଁ !

ସେ ବଳେ ଉଠିବ ।

ଦୁହିଁଙ୍କର ହସ, ଦିହେଁ ଚୁପ ହେଲେ ।

ନନ୍ଦିକା ଉଠି ବସିଲା, ବିଚଳିତ ହୋଇ ଚୁଣଅଡ଼କୁ ଚାହିଁଲା । ସତେ, ରାତି ଗୋଟାଏ । ବରଷା ଛାଡ଼ି ନାହିଁ, ଝୁଟୁଛି । ଖୋଲା ଝରକାବାଟେ ଥଣ୍ଡା ପବନ ଘରେ ପଶୁଛି । ଜନ ଶୋଇପଡ଼ିଛି । ଆର ଘରୁ ଆଉ ଶବଦ ଶୁଭୁ ନାହିଁ । ସେମାନେ ଶୋଇଲେଣି, ତଥାପି, ପ୍ରତେକ କାନରେ ବାଜିଯାଉଛି, ଦୁହିଁଙ୍କର ଚୁମା ଚୁମା କଥା, ହସ ।

ଆଖିରୁ ଅଶ୍ରୁ ଝରିଲା । ମନ କହିଲା, ଦିଶିବ । ଆଉ ଲୋଡ଼ା ନାହିଁ । ମରିବା ହିଁ ଭଲ । ସ୍ୱାମୀ ତାକୁ ପରିତ୍ୟାଗ କରିଛନ୍ତି । ଲଳିତା ତାଙ୍କୁ ବାନ୍ଧି ରଖିଛି । ଜୀବନରେ

ଆଉ କି ପ୍ରୟୋଜନ ? ସେ ରୋଗଣା ହୋଇଛି । ସ୍ୱାସ୍ଥ୍ୟ ଭାଙ୍ଗିଛି । ଦେହ ଓ ମୁହଁର ଜ୍ୟୋତି ଲିଭିଛି । ଆଖିରେ କଜଳ ନାହିଁ, ପାଦରେ ନାହିଁ ଅଳତା । ଅସଜଡ଼ା ବେଶ । ଦରମଇଳା ଅତି ସାଧାରଣ ବାସ । ଆଠ ବରଷ ପଛକୁ ସେ ଫେରିଯାଇ ପାରିବ ନାହିଁ । ଲଳିତା ସଙ୍ଗରେ ସେ ସମସରି ହୋଇପାରିବ ନାହିଁ । ବଞ୍ଚିଥିବା ଯାଏ ସେ ଅବହେଳିତ ହେବ ।

ନଅଳା ଖଟ ଉପରୁ ଓହ୍ଲାଇ ତଳେ ଠିଆ ହେଲା । ମୁଣ୍ଡ ଝାଙ୍କି ଦେଉଛି । ଆଖି ଆଗରେ ସବୁ ଭ୍ରମୁଛି । ମନ ପୁଣି କହୁଛୁ, ନିଜ ସୁନା ଚୋର ଭେଣ୍ଡି ହେଇଛି ରୁ ଅଙ୍ଗ ବାହା ସରିଲ ବେଳ, ରସ ନ ଥିଲ ମଦଘଡ଼ା ରୁ ଆଜି ଅପୁଷ୍ଟା, ଅଖୋଜା, ଅଲୋଡ଼ା । ସ୍ୱାମୀଙ୍କର ସ୍ନେହ କେବଳ କର୍ତ୍ତବ୍ୟ ଧାରଣାର ରୂପାନ୍ତର । ଆଉ ଲଳିତା, କୃତଜ୍ଞତାର ପରିତ୍ରିଶକା ।

ମୁଣ୍ଡର ଅଳିଆ କେଶ ଟାଣି ସେ ବାଇଆଣୀ ପରି କବାଟ ପାଖକୁ ଗଲା । କିଳଣୀ ଖୋଲିଲା । ମୁଣ୍ଡ ଝାଙ୍କିଲା । ଯାଉଁଳି କବାଟ ଉପରେ ମୁହଁ ରଖିଲା । ଭାବିଲା, ସେ ବରଷାପାଣିରେ ତିନ୍ତିବ, ଜରକୁ ଫେରାଇଆଣିବ । ଓଷଧ ପାଣି କିଛି ଛୁଇଁବ ନାହିଁ । ସେ ମରିବ । ଦୁନିଆରେ ତାର ହୋଇ ଆଉ କେହି ନାହାନ୍ତି ।

କବାଟ ଖୋଲିବ । ଶବଦ ହେଲା । ଆର ଘରୁ କଥା ଶୁଭିଲା ।

ଶୋଇନି କି ? ହେ, ହେ—

ଉଁ ।

ଅପା କଅଣ ଉଠିଲେ କି ?

ଉଠନ୍ତୁ, କନ ପଗ ଅଛି ? ଶୋଇପଡ଼ ।

ଉହୁଁ, କନ ହୋଇଥିଲେ ପାଟି ଶୁଭନ୍ତା । ମୁଁ ଯାଇଁ ଦେଖେଁ ।

ନୂଆଉ !

କନ ଉଠିଲୁଣି, ତମେ ଶୋଇପଡ଼ ।

ଓଃ, ଛାଡ ମୋତେ ।

ନୂଆଉ, ଆରେ, ଟଳଟଳ ଦୁଆରକୁ କାହିଁକି ଯାଉଛ ? ଏଁ, ତିନ୍ତିଲ ? ଆସ ଘରକୁ, ଆସ ।

ଛାଡ଼ ମତେ କନ, ଛାଡ଼, ଛାଡ଼ କହୁଛି ।

ପାଗଳ ହେଲ କି ?

କବାଟ ଖୋଲି ଛୁଟିଆସିଲା ଲଳିତା ।

କନ ନନ୍ଦକାକୁ ଘରଭିତରକୁ ନେଲଣି । ବର୍ଷାପାଣିରେ ସେ ଜୁଡ଼ୁବୁଡ଼ୁ ।

ପାଟି କରି ଉଠିଲା ଲଳିତା, ଏ କଅଣ କଲ ଅପା ? କନ ତମେ ଶୋଇପଡ଼ିଲ କାହିଁକି ?

ହେଇ, ଆଗରେ ଲଳିତା ! ଆଜି ତାର ତର୍ଣ୍ଣି ଚପି ମାରଦେବ ? ହୁଁ ସେଇଆ ସେ କରିବ ।

ମୋର ଦୋଷ ହୋଇଛି ଅପା, କନର ଏତେ ଟାଣ ନିଦ ବୋଲି ମୁଁ ଜାଣି ନ ଥିଲି । ମୋ ରାଣ, ନିଅ, ଲୁଗା ପାଲଟ ।

ଲଳିତାର ତର୍ଣ୍ଣି ସେ ଚପିପାରିଲା ନାହିଁ ତ ! ନିଜ ହାତରେ ଲଳିତା ନନ୍ଦକାକୁ ପୋଛିପାଛି ଦେଲା, ଶୁଖିଲା ଶାଢ଼ୀ ପିନ୍ଧାଇଦେଲା, ବିଛଣାରେ ଶୁଆଇ ଘୋଡ଼ାଇଦେଲା ଚାଦର । ମୁଣ୍ଡ କୁଣ୍ଡାଇଲା । ଫଳରସ ପିଆଇଦେଲା । ପାଖରେ ବସି, ଦେହକୁ କୁଣ୍ଢାଇ ଧରି ପୁଣି ପଚାରିଲା, କାହିଁକି ପଦାକୁ ତମେ ଗଲ ଅପା, କନକୁ ଡ଼ାକିଲ ନାହିଁ ? ମତେ ଡାକିଲ ନାହିଁ ?

ନନ୍ଦକା ଲଳିତା ପାଖରେ ନିଜକୁ ଅତି ଛୋଟ ଶିଶୁଟି ପରି ମଣିଲା । କହିଲା, ଜାଣେନାହିଁ ତ ।

ମୋର ଭୁଲ ହୋଇଛି । ନିଜେ ତମ ପାଖରେ ରହିବେ କହି ମତେ ସେ ଶୋଇବାକୁ ତଡ଼ି ପଠାଇଲେ । ତାଙ୍କୁ ନିଦ ମାଡ଼ିଲା ବୋଲି ଟିକକ ପରେ କନକୁ ଏଠି ଛାଡ଼ି ସେ ନିଜେ ଶୋଇବାକୁ ଗଲେ ।

ଲଳିତାର ଆଖିରେ ଲୁହ ଛଳଛଳ ହେଲା ।

ନନ୍ଦକା ଉତ୍ତର ଦେଲା ନାହିଁ । ଲଳିତାର ଦୁଇ ହାତ ନିଜର ଦୁଇ ହାତରେ ଚପି ବଲବଲ କରି ଚାହିଁ ରହିଲା ତାର ଅନୁତପ୍ତ ମୁହଁକୁ । ସତେ, କାହା ଉପରେ ତାର ରାଗ, ରୋଷ, ଅଭିମାନ ? ଲଳିତାର ଦୋଷ ନାହିଁ । ମନଟି ତାର ସରଳ । ସେବା କରିବାକୁ ସେ ଆକୁଳ ବିକଳ । ଏକା ତା'ଆର ନୁହେ, ଶାଶୁଙ୍କର ବି ସେବା କରୁଛି । ଅସୁବିଧା କଦେଇ ଦେଉ ନାହିଁ । ଘରର ସବୁ କାମ ନିଜେ ଆପଣେଇ ତୁଲଉଛି । କେଉଁ କଥାରେ ଭାହାରି କିଛି ବାଛିବାଚ ନାହିଁ । ଗାଆଁ ମାଇପିଙ୍କ ମୁହଁରେ ତାର ଧନ୍ୟ ଧନ୍ୟ ପ୍ରଶଂସା । ସେ ଘରଣୀ ହୋଇଛୁ ।

ଲଳିତା କହିଲା, କନ, ତମେ ଶୋଇବ ଯାଅ, ମୁଁ ଅଛି । ଆଉଘରର କବାଟ ଆଉଜାଇଦେବ । ତମ ଭାଇ ଶୋଇଛନ୍ତି, ଘରେ ଅଣ୍ଡା ପଶୁଛି ।

ସୁନନ୍ଦ ଆଖି ମଳି ମଳି ଆସିଲା । କହିଲା, ତମ କଥାବାର୍ତ୍ତା ଶୁଣି ନିଦ ଭାଙ୍ଗିଲା । କଅଣ ହୋଇଚ ?

ଲଳିତା କହିଲା, କିଛି ନାହିଁ । ତମେ ଯାଅ ଶୋଇବ ।

ରୁ ବ ଯା, ଲଳିତା ।

ସୁନନ୍ଦ ପାଖକୁ ଆସି ନନ୍ଦକାର ମୁଣ୍ଡରେ ହାତ ରଖିଲା । ନନ୍ଦକା କଡ଼ ଲେଉଟାଇଲା, କଥା କହିଲା ନାହିଁ ।

ପୁଣି କଅଣ ହେଲା । ନନ୍ଦକା ?

ଲଳିତା ଉତ୍ତର ଦେଲା, କିଛି ନାହିଁ । ତମେ ଯାଅ । ତମେ ବ ଯାଅ, କନ ! ଅପା ଟିକଏ ଶୋଉନ୍ତୁ । ମତେ ବ ଖୁବ ନିଦ ମାଡ଼ୁଛି ।

ଲଳିତାର ଅନୁରୋଧରେ ଆଦେଶ, ଲଙ୍ଘିବାର ସାହସ କାହାର ନାହିଁ । ସେ ଖଟ ଉପରୁ ଓହ୍ଲାଇ କବାଟ କିଲିଲା । ଆଲୁଅ କମେଇ ନନ୍ଦକା ପାଖକୁ ଆସିଲା । ପାଖରେ ଶୋଇଲା ।

ଲଳିତା !

ଶୋଇପଡ଼ ଅପା । ପାଣିରେ ଭିଜିଲ । ଅନିଦ୍ରା ହେଲେ ପୁଣି ଯଦି ଜର ଲେଉଟିବ ତ ଭଲ ହେବ ନାହିଁ ।

ଲଳିତାର ଟିକି ଅନୁରୋଧ ଲଙ୍ଘିବାକୁ ତାର ସାହସ ନାହିଁ । ତାର କଅଳ ହାତ ନନ୍ଦକାର ଦେହକୁ ବେଷ୍ଟନ କଲାଣି । ମନରେ ଯେତେ ଯାହା ଭାବ ଉଠିଲେ ବ ଲଳିତାର ବ୍ୟବହାର ଦେଖି ସବୁ ମଥା ନୋଇଁଛନ୍ତି । ସେ ହେଉଛି ଏ ଘରର କର୍ତ୍ତ୍ରୀ, ନନ୍ଦକା ନୁହେଁ ।

ନନ୍ଦକା ଆଗ ଆସି ପଛେଇଯାଉଛି ।

କଟକରୁ ଫେରି ଆସିବାର ମାସଟିଏ ବିତିଗଲାଣି ।

ବ୍ୟବସାୟର ଜଞ୍ଜାଳ ଭିତରେ ସମସ୍ତ ବୋହିଯାଉଛି । ଗାଆଁକୁ ଯିବାକୁ କେବେ କେମିତି ମନ ହୁଏ । ଆଖି ବୁଜି ଘରକୁ ଗ୍ରହିଁଲେ ଭାବନା ଆଗରେ ପାଖାପାଖି ଦୁଇଟି ନାରୀ ଠିଆ ହୁଅନ୍ତି । ଜଣକର ହସ ହସ ପ୍ରଫୁଲ୍ଲ ମୁହଁ, ଭରା ସ୍ୱାସ୍ଥ୍ୟ, ଢେଉଖେଳା ଚଞ୍ଚଳ ପରିପୂର୍ଣ୍ଣ ଯୌବନ । ସେ ଲଳିତା । ଦୂରରୁ ସେ ଡାକୁଛି, ଆସ ମ, ମୁଁ ଅନେଇଁ ବସିଚି, ଅଭିମାନ କଲ କି ?

ଆର ଜଣକ ନନ୍ଦକା । ମୋଟା ଦେହ ଦୁର୍ବଳ ହେଉଛି । ଆଖିର ଜ୍ୟୋତି ମଳିନ ଦିଶୁଛି । ମଥାର ଲମ୍ବ କେଶ ଛିଣ୍ଡି ଛିଣ୍ଡି ଗୁଚ୍ଛାଏ ରହିଛି । କି ଶୋଭା ରୂପ କଅଣ ହେଲାଣି । ଓଠରେ ହସ ନାହିଁ, ଦୃଷ୍ଟିରେ ନାହିଁ ଆଗ୍ରହ ଓ ଉଦ୍‌ବିଗ୍ନତା । ତାର ଠାଣି କହୁଛି ନ ଅସ ବା ଆସ, ଭଲରେ ଥାଅ ।

ନନ୍ଦିକା ପାଖରେ ସେ କରଛଡ଼ା ଢଙ୍ଗ ଦେଖିଆସିଥିଲା । ପାଖକୁ ଗଲେ ତା'ର ହସିଲା ମୁହଁ ଗମ୍ଭୀର ହୁଏ । ଦଶଥର ଗୋଟିଏ ପ୍ରଶ୍ନ ପଚାରିଲେ ପଦକରେ ସେ ଉତ୍ତର ଦିଏ । ମୁହଁକୁ ନ ଚାହିଁ କଡ଼କୁ ଚାହେଁ । ତାର ଭଙ୍ଗୀ କହିଉଠେ, କାହିଁକି ମତେ ବିରକ୍ତ କରୁଛ, ମୁଁ ରୋଗଣା ମଣିଷ ! ଲଳିତା ଆସୁଛି, ତାକୁ କହ । ପରାମର୍ଶ ଲୋଡ଼ୁଛ ? ଲଳିତାର ବୁଦ୍ଧି ଅଛି, ସେ କହିବ । ଟଙ୍କା ଲୋଡ଼ା କି ? ଲଳିତାକୁ ଚାବିମୁଠାକ ଦେଇଛି ।

ପାଖରେ ବସିଲେ ସେ ଘୁଞ୍ଚିଯାଏ । ବାଆଁରେଇ ହୋଇ ନିକଟକୁ ଗଲେ ସେ ଉଠି ଠିଆହୁଏ । ମୁଣ୍ଡ ଉପରକୁ ଲୁଗା ନିଏ । ଦେହରେ କାନି ଘୋଡ଼ାଏ । ଫନ୍ଦା ଆଖି, ଅଲରା ମୁଣ୍ଡ, ଶୋଥ ପାଦ । ପାଖରୁ ଦୂରେଇ ଯିବାକୁ ବ୍ୟଗ୍ରଭାବ, ଯେତେ କି ସେ ଅପରିଚିତା । ଠାକୁରପୂଜା ଆଉ ତା'ର ଅତି ବଡ଼ ହୋଇଛି ।

କାହିଁକି ଏ ଅଭିମାନ ?

ନିଜର ମନ ଅଣ୍ଡାଳିଲେ ସେ ତା'ର ପ୍ରଶ୍ନର ଉତ୍ତର ପାଏ । ନିଜର ଉତ୍ତର ନିଜେ ଶୁଣିବାକୁ ତାକୁ ଲାଜ ମାଡ଼େ ।

କିଏ ଭିଆଇଛି ଏ ଜଟିଳତା ?

ନନ୍ଦିକା, ହଁ ନନ୍ଦିକା । ସୁନନ୍ଦର ଦୋଷ ନାହିଁ । ଲଳିତା ଆସିଛି । ସେ ବି ଯୁବତୀ । ଅନ୍ୟ କେଉଁ ଯୁବକର ହାତ ଧରି ଯାଇଥିଲେ ସେ ଯାହା ପାଇବାକୁ ଆଶା କରିଥାନ୍ତା, ସୁନନ୍ଦ ତାକୁ ସେତକ ଦେବାକୁ ଚେଷ୍ଟା କରିଛି ।

ନନ୍ଦିକାର ଦୁଃଖ କରିବା ଅନ୍ୟାୟ, ଅଭିମାନ କରିବା ଅସଙ୍ଗତ । ରାଗ ରୋଷ ତା' ଠାରେ ଶୋଭା ପାଏ ନାହିଁ ।

ସୁନନ୍ଦ ଚମକିଉଠେ । ନନ୍ଦିକାର ମନରେ ସପତ୍ନୀର ବିଷ ପଶିଛି ? ଆହା ବିଚାରୀ ଲଳିତାଟି, ଶିଶୁପରି ସେ ସରଳ, ଛନ୍ଦକପଟ ଜାଣେ ନାହିଁ । ଜୀବନ ପଣ କରି ନନ୍ଦିକାର ସେବା କଲା । ତାକୁ ମରଣମୁହଁରୁ ବଞ୍ଚାଇଲା । ତଥାପି ନନ୍ଦିକାର ମନରେ ଈର୍ଷାଭାବ ? କାହିଁକି ଏପରି ହେଲା ?

ଲଳିତାର ଚିଠି—

ଅପା ଭଲ ଅଛନ୍ତି । ସ୍ୱାସ୍ଥ୍ୟ ଧୀରେ ଧୀରେ ଫେରିଆସୁଛି । କେଜାଣି କାହିଁକି ତାଙ୍କ ମନରେ ଉଦାସ ଭାବ ଦେଖୁଛି । ବେଶି କଥା କହିବାକୁ ସେ ଭଲ ପାଉନାହାନ୍ତି । ପାଖକୁ ଗଲେ ବାଆଁରେଇ ହୋଇ ଦୂରେଇ ଯାଉଛନ୍ତି । ତମ ପାଖକୁ ଚିଠି ଲେଖିବାକୁ କହିଲି ଯେ, ସେ ଉତ୍ତର ଦେଲେ, ତୁ ତ ଲେଖୁଛୁ, ମୁଁ ଆଉ କଅଣ ଅଧିକ ଲେଖିବି ? ତମ ଉପରେ ସେ ରାଗିଛନ୍ତି କି ? ମୋ ଅପାଙ୍କ ପରିକା ଭଲ ମଣିଷ କେଉଁଠି ନାହିଁ ନ ଥିବ । ମୋ ଅଜାଣତରେ ତାଙ୍କୁ ତମେ କେଉଁ କଥାରେ ବିରକ୍ତ କଲ କି ? ମୋ ରାଣ, ନିଶ୍ଚୟ ଲେଖିବ ।

ଭୁବନାଙ୍କର ସତର୍କ ବାଣୀ ମନେ ପଡ଼େ । ବେଳେ ବେଳେ ଆଗ୍ରହ ହୁଏ, ଥରେ ଯାଇ ପଚାରିଆସିବ । କଣ ପଚାରିବ, ନିଜେ ସ୍ଥିର କରିପାରେ ନାହିଁ । ଲଳିତାର ଚିଠି ଦେଖାଇ କହିବ କି, ନନ୍ଦିକା ରୋଗରୁ ଉଠି ଏପରି ବଦଳିଛନ୍ତି, ବୀତସ୍ପୃହ ହୋଇଛନ୍ତି ? କହିପାରିବ କି, ଯେତେବେଳେ ସେ ରୋଗଶଯ୍ୟାରେ ଆରମ୍ଭରେ ଛଟପଟ ହେଉଥିଲେ, ଠିକ୍ ସେତିକବେଳେ ଲଳିତାର ହାତ ଧରି ସେ ଅଟକାଇ ରଖିଥିଲା ।

ନନ୍ଦିକା ଶୁଣିପାରିଛି ।

ଭୁବନା ଲଳିତାର ସରଳ ପଙ୍କ୍ତି ଭିତରୁ କି ଅର୍ଥ କାଢ଼ିବେ ? ହୁଏତ ଚେତାଇ କହିବେ, ଏଥର ଆରମ୍ଭ ହେବ ଝଡ଼ବରଷା, ନନ୍ଦିକା ହିଁ ଆରମ୍ଭ କରିବ ।

ନାହିଁ, ନାହିଁ ଜରିମାଖୀ ଲତାଟି ପରି ସେ ମଥା ନୁଆଁଇବ । କହିବ, ତମର ଦୁନିଆ ମୋରି ଛାତି ଉପରେ ଗୃଲିଯିବ । ମୋର ପତ୍ର ଶୁଖିଛି ଅଥବା ଝାଉଁଳିଛି । ମୋର ପଲ୍ଲବର ସବୁ କୁସୁମ ଝଡ଼ିଛି ଅଥବା ମଉଳିଛି । ମୁଁ ଫଳାଇ ନାହିଁ ଫଳ । ମୋ ଜୀବନ ବ୍ୟର୍ଥ ହୋଇଛି । ତମେ ରସିକ ପୁରୁଷ, ଆଶାୟୀ ପୁରୁଷ । ପୁଷ୍ପବତୀ ତରୁଣୀ ଲତାଟି ଝୁଲିରହିଛି । ତାକୁହିଁ ଗୁଡ଼ାଇ ଧର, ଆହରଣ କର ମଧୁ, ଗୁଞ୍ଜରି ଉଠ । ପୁଲକିତ ହେବ ମଞ୍ଜରୀ, ହେବ ଫଳବତୀ ।

କିଏ କହୁଛି ?

ନନ୍ଦିକାର ବଡ଼କଣ୍ଠ ଫଟୋ !

ଅନୁଗତ ରାଜୀବ ହାତରେ ବ୍ୟବସାୟର ଦାୟିତ୍ୱ ଦେଇ ସେ ଗାଆଁକୁ ଆସିଲା, ମାଆଙ୍କ ପାଖକୁ । ଦୁଇ ଗୋଡ଼ ଧରି ପ୍ରଣାମ କଲା । ଏତେଦିନକେ ମାଆଙ୍କର ମୁହଁକୁ ସେ ଭଲକରି ଚାହିଁଲା ।

ଦି ପହର । ସ୍ନାନ ପୂର୍ଣ୍ଣିମା ଚାରି ଦିନ ହେଲା ଗଲାଣି । ଗୁଳୁଗୁଳ । ଦେହର ଜାମା ଝାଳରେ ଓଦା ହୋଇଛି ।

ଅଭୟା ନିଜ ଅଞ୍ଚଳରେ ସୁନନ୍ଦର ମୁହଁ ପୋଛିଦେଲେ । ଥରିଲା ସ୍ୱରରେ ଡାକ ଛାଡ଼ିଲେ, ଆଲୋ କନି, ପାଣି ଲୋଟାଏ ଆଣିଲୁ । ଆଲୋ ବଚଣା କିଏ ନେଇ ପଳେଇଲା ? ମଲାମର, ବୋହୂମାନେ ଗଲେ କୁଆଡେ ? ପୁଅ ମୋର ଖାଇବ କଅଣ ମ ? ଆଲୋ, କନି—

ବ୍ୟସ୍ତ ହ'ନା ବୋଉ ।

ସୁନନ୍ଦ ଅନାଇ ରହିଲା ମାଆଙ୍କୁ । ଦିନୁଦିନ ସେ ଦୁର୍ବଳ ହେଉଛନ୍ତି । କେଶ ଧୋବଳ ହେଲାଣି, ସେତକ ବି ମୁଠିଏ ।

ସୁନନ୍ଦର ମନ କାନ୍ଦିଉଠିଲା, ବିକଳ ହୋଇ ଡାକ ଛାଡ଼ିଲା, ବୋଉ ମୋର ଭଲରେ ନାହିଁ କେହି ତା'ର ଯତ୍ନ ନେଉ ନାହାନ୍ତି । ଘରେ ଦୁଇଟା ବୋହୂ, ତଥାପି କାହାର ଆଗରେ ମନ ଖୋଲି ସେ କିଛି କହୁ ନାହିଁ ।

ଜନ ପଙ୍ଖା ନେଇ ଧାଇଁ ଆସିଲା । ସୁନନ୍ଦ ମାଆଙ୍କ ପାଖରେ ଖଟ ଉପରେ ବସି ସାରିଲାଣି । କଥା କହୁଛି, କେତେ ପ୍ରକାର, କଷ୍ଟକର ଏକୁଟିଆ ଜୀବନ, ଅସୁବିଧା, ମାଲା ବ୍ୟବସାୟ, ଗୁଳ୍ପ ଗୁଳ । ଅଭୟା ମନ ଦେଇ ଶୁଣୁଛନ୍ତି ।

ଜନକୁ କହିଲେ, ଆଲୋ ଯା, ବୋହୂମାନେ କୁଆଡ଼େ ଗଲେ ଡାକି ଦେ । ପୁଅ ମୋର ଖାଇବ କଅଣ ?

ସୁନନ୍ଦ ଭାବି ଚାଲିଛି, ସତେକି ବୋହୂମାନଙ୍କଠାରେ ତାର ପ୍ରୟୋଜନ ନାହିଁ । ଭୋକ ନାହିଁ, ଖାଇବାକୁ ଆଗ୍ରହ ନାହିଁ । ଜାମା ଖୋଲି ଖଟବାଡ଼ରେ ଟାଙ୍ଗିଦେଲାଣି । ଖୋଲି ଦେଲା । ବୁଢ଼ୀମା ଅନେଇ ରହିଛନ୍ତି । ସୁନନ୍ଦ ଭାବି ଚାଲିଛି, ନନ୍ଦିକା ଚିଠି ଲେଖୁନାହିଁ, ଲଳିତା ଘରର ଭଲମନ୍ଦ ହାନିଲାଭ କଥା ବେଳେ ବେଳେ ଲେଖେ, ନିଜ କଥା ଲେଖିବାକୁ ଭୁଲିଯାଏ ।

ଜନ କହିଲା, ବଡ଼ ସାଆନ୍ତ ବାଡ଼ିରେ ଅଛନ୍ତି । ମକା, ଭେଣ୍ଡି, ଲଙ୍କା ମରିଚ ଗଛ ନିଜ ହାତରେ ସେ ଲଗାଇଛନ୍ତି ଯେ ଘାସ ବାଛିବାକୁ ଯାଇଛନ୍ତି । ପୋଖରୀରୁ ମାଠିଆରେ ପାଣି ଆଣି ଗଛ ମୂଳରେ ଢାଳୁଥିବେ । ମନା କଲେ ସେ ଶୁଣିବେ ନାହିଁ । ଯାଏଁ ଡାକିଦିଏଁ ।

ଲଳିତା ?

ସାନ ସାଆନ୍ତ ଶୋଇପଡ଼ିଛନ୍ତି । ଏ ପହରରେ କେବେ ତ ସେ ଶୁଅନ୍ତି ନାହିଁ, ଆଜି କାହିଁକି ନିଦ ହୋଇଯାଇଛି । ଯାଏଁ, ଉଠେଇ ଦିଏଁ ।

ସୁନନ୍ଦ ବାଡ଼ିଆଡ଼କୁ ଗଲା । ନନ୍ଦିକାର ଦେଖା ନାହିଁ । ଏତେ ବଡ଼ ଅନ୍ଧାରିଆ ବାଡ଼ି । ପଣସଗହଳ ଯେପାଖେ ବସି କେଉଁଠି ଘାସ ବାଛୁଥିବ, କି ହୁଡ଼ା ଟେକୁଥିବ । ସୁନନ୍ଦ ପୋଖରୀ ହୁଡ଼ା ସେପାଖକୁ ଗଲା । କଲମି ସପେଟା ଗଛଗୁଡ଼ିକ ଝଙ୍କାଳିଆ ହୋଇ ସୁନ୍ଦର ଦିଶୁଛି । ନଅଟି ପର ଅସୁମାରି ଫଳ ଲଦିହୋଇଛି । କଲମି ଆମ୍ବ, ନହରକୋଳି, କରମଙ୍ଗା ଗଛଗୁଡ଼ିକ ବାଦବୁଦିଆ ହୋଇ ବଢ଼ିଛନ୍ତି ।

ପଣସଗହଳ ଫାଙ୍କରେ ଦିଶୁଛି ଧୋବ ଫରଫର ଶାଢ଼ୀ । ନନ୍ଦିକା ଠିଆ ହୋଇଛି । ସେ ଅନାଇଁ ରହିଛି ପାଖର କଦଳୀବଣକୁ ।

ସୁନନ୍ଦ ପାଖକୁ ଗଲା । କିଏ ଆସୁଛି ଜାଣିପାରି ନନ୍ଦିକା ଫେରି ଚାହିଁଲା । ଅପରିଚିତ ପରପୁରୁଷ ଦେଖିଲା ପରି ସେ ଚମକି ଉଠିଲା । ମୁଣ୍ଡ ଉପରକୁ ବସନ ଟାଣିଲା । ଓଠ ଉପରକୁ ଟାଣିଆଣିଲା ବ୍ୟାଭରା ହସଟିଏ ।

ସୁନନ୍ଦ ଦେଖିଲା, ନନ୍ଦକା ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇ ନାହିଁ । ଏବେ ବି ଦୁର୍ବଳତା ରହିଛି । ମୁହଁ ମଳିନ ଦିଶୁଛି । ଆଖିତଳେ କଳାଦାଗ । ଦେହ ହାତରେ ଅଳପ ଗହଣା । ନିଜ ପ୍ରତି ସେ ଅଯତ୍ନଶୀଳା ହୋଇଛି ।

ମନ ଡାକୁଛି, ନନ୍ଦକାକୁ ଗେଲ କରିବ । ଆଧୀନ୍ୟ ହୋଇ ସେ କହିବ, ସବୁ ଦୋଷ ମୋର ନନ୍ଦକା, ମୁଁ କ୍ଷମା ମାଗୁଛି । ତମେ ମୋର ଆଗ ନନ୍ଦକା, ତମରି ଏ ସଂସାର ସମସ୍ତେ ତମର ଆଦେଶର ଦାସ ।

ସୁନନ୍ଦ ପଛକୁ ଫେରି ଚାହିଁଲା, ଦାଣ କବାଟ ଖୋଲି ଆସିଛି । ଲଳିତା ଆସୁଥିବ ପରା !

ମନର କଥା ସତେକି ନନ୍ଦକା ବୁଝିଲା । କହିଲା, ଆଗୋ, କେତେବେଳେ ଆସିଲ ? ମୁହଁ ଶୁଖିଯାଇଛି । ଗୋଡ଼ହାତ ଧୋଇନ ପରା ! ଖାଇବ କଅଣ ? ଆସ ।

ନନ୍ଦକା ଆଗରେ ଚାଲିଲା ।

ନନ୍ଦକା କହୁଛି ? ତା କଥା ପର ଶୁଣୁ ନାହିଁ । ଯେପରି ଆଉ ଜଣେ କିଏ ନନ୍ଦକା ଭିତରେ ପଶି କହିବାକୁ ହେବ ବୋଲି କହୁଛି ପରା !

ସୁନନ୍ଦ ଡାକିଲା, ନନ୍ଦକା !

ସେ ଫେରି ଚାହିଁଲା ।

ରହିବ ନାହିଁ ?

କଅଣ, କହ ।

ସୁନନ୍ଦ ପାଖକୁ ଗଲା । ଥରିଲା ସ୍ୱର ତୁଣ୍ଡକୁ ଆଣିଲା ସିଧା, ରାଗିଛ ? ଅଭିମାନ କରିଛ ?

ନନ୍ଦକାର ହାତ ଧରିଲା । ତା'ର ହାତ ଥରୁଛି, ଓଠ ବି ଥରୁଛି । ସେ ଆଖି ନୋଇଁଛି ।

ରାଗିଛ ?

କଅଣ କହୁନା ? ଛାଡ଼ ମୋ ହାତ ମ, ଲଳିତା ଆସିବ ।

ଆସୁ । ଚାହିଁବ ନାହିଁ ମୋ ମୁହଁକୁ ? ଅଭିମାନ କରିଛ ?

ନନ୍ଦକାର ଆଖିରେ ଲୁହ ଛଳଛଳ ହେଲା । ସେ ସୁନନ୍ଦର ମୁହଁକୁ ଚାହିଁଲା, ଚାହିଁ ପାରିଲା ନାହିଁ । ହାତ ଟାଣି କହିଲା, ରାଗିବି କାହିଁକି ? ଅଭିମାନ ବା କରିବି କାହିଁକି ? ଏପରି କଥା ତମ ମୁହଁରୁ ବାହାରୁଛି ? କି ଦୋଷ ମୁଁ କାହାର କରିଛି ? ହେଇଟି, ଲଳିତା ଆସୁଛି, ତମେ ଆସ ।

ହଁ, ଲଳିତା । ସୁନନ୍ଦ ଚାହିଁଲା, ସେ ଅସ୍ତବ୍ୟସ୍ତ ହୋଇ ଆସୁଛି, ହସିହସିକା । ମୁଣ୍ଡରୁ ଖସିପଡ଼ୁଛି ଲୁଗା । ସ୍ୱାସ୍ଥ୍ୟ ବଦଳିଛି । ଦେହରେ ମାଂସ ଲାଗିଛି । ମୁହଁଟି ଦିଶୁଛି ସୁନ୍ଦର ।

ଅପା, ତୁମେ ପୁଣି ବାରଣ୍ଡା ବୁଲିଆସିଲ ? ମୁଁ ଭାବିଲି ତମେ ଶୋଇପଡ଼ିଛ । ସେପଟକୁ ଯାଇ ବହି ଖଣ୍ଡେ ପଢୁପଢୁ ମତେ ନିଦ ହୋଇଗଲା । ମୁଁ କାନ ମୋଡ଼ୁ ହେଉଛି, ଆଉ ବହି ପଢିବି ନାହିଁ । ଦେଖିବ ରହ, ତମେ କେମିତି ଆଉ ବଗିଚାକୁ ଆସିବ । ତମର ନୂଆ ଦେହ ।

ନନ୍ଦନା ହସିଲା । କହିଲା, ଆଉ ଆସିବି ନାହିଁ ।

କେମିତିକା ମଣିଷ ମ, ଆଗରୁ ଚିଠି ଖଣ୍ଡେ ଦେଲ ନାହିଁ ? ଅପା, ମୁଁ ଯାଏଁ, ଭାତ ଗଣ୍ଡାଏ ବଢ଼ାଇଦିଏଁ ।

ଥାଉ । ଭାତ ଖାଇବାକୁ ମୋ'ର ଏବେ ଆଗ୍ରହ ନାହିଁ । ଜଳଖିଆ ହେଲେ ଚଳିବ । ଭାରି ଭୋକ ହେଉଛି ।

ହଉ, ହେଲା । ମୁଁ ଯାଉଛି ନଡ଼ିଆ କୋରିବି । ତମେ ଆସୁଥା ଅପା, ବୋଉ ତେଣେ ଉଚ୍ଛନ୍ନ ହେଉଛନ୍ତି ।

ବୁଲିପଡ଼ି ଲଳିତା ଧାଇଁଲା ପରି ଚାଲିଗଲା, ସତେକି ପାଦ ଦୁଇଟା ତଳେ ଲାଗୁ ନାହିଁ ।

ମୁଗ୍‌ଧ ଆଖିରେ ସୁନନ୍ଦ ତାକୁ ଚାହିଁ ରହିଲା ।

ନନ୍ଦନା ବି ଚାହିଁ ରହିଲା, ମନ କହିଲା, ନନ୍ଦନାର ମରଣ ହେଉ, ଲଳିତା ହେଉ ସୁଖୀ, ନିଶ୍ଚିନ୍ତ ।

ସମସ୍ତେ ସତେକି ତା' ଆଡ଼କୁ ଅଜ ପଗୁଳା ଆଖିରେ ଅନାଉଛନ୍ତି । ଏଥିପାଇଁ ଦାୟୀ ସେଇ କନକ । ବାଧା ଦେବାକୁ, ବାରଣ କରିବାକୁ ତାକୁ ଲାଜ ମାଡ଼ିଲା । ଉହୁଁ, ଡର ମାଡ଼ିଲା, କାଳେ ମନର ଭାବ ଜଣା ପଡ଼ିଯିବ । ସେଥିପାଇଁ ଏ ବିଡ଼ମ୍ବନା !

କନକ ତାକୁ ସଜାଇ ଦେଇଛି । ଯତ୍ନ କରି ବାନ୍ଧିଦେଇଛି କେଶ । ପାଦରେ ଅଳତା ରଞ୍ଜିଛି । ମୁଣ୍ଡରେ ବାନ୍ଧିଛି ଚମ୍ପାକଢ଼ର ମାଳ । ନିଜେ ସେ ନିଜ ମନକୁ ପିନ୍ଧିଛି ଭଲ ଶାଢ଼ୀ । ଦେହରେ ଗହଣା ମଣ୍ଡିଛି । ଆଖିରେ କଜଳ, ମୁଣ୍ଡରେ କୁଙ୍କୁମ ଟୋପା ।

ସେଇ କନ ପୁଣି ସଜେଇ ଦେଇଛି ଲଳିତାକୁ ! ସେ ପାଟର ଅନ୍ତର ଜଣନାହିଁ । ଲଳିତାର କେଶରେ ବାନ୍ଧିଛି ମଲ୍ଲୀମାଳ । ନିଜେ ନନ୍ଦିକା ତା କପାଳରେ ଦେଇଛି କୁଙ୍କୁମ ଟୋପି, ଆଖିରେ ଟିକେ କଜଳ । ବାଛି ବାଛି ଦାମିକା ଶାଢ଼ୀ, ଝଟକଲା ଗହଣା, ଲଳିତାର ଅଙ୍ଗରେ ଲଦିଛି, ହସିହସିକା । ମନ କହୁଛି, ମତେ ଚାହିଁ ହସିବୁ ନାହିଁ ଲୋ ଲଳିତା, ମୋର ଏ ବେଶ ତୋ'ର ପାଇଁ । ଦୁନିଆ ସାରୁ କି ନ ସାରୁ, ସେ ସବୁକୁ, ନନ୍ଦିକା ଅଭିମାନ କରୁଛି, ମନରେ ସଉତୁଣୀ ଧାରଣାର ବିଷ ଭରୁଛି, ସେଇଥିପାଇଁ ତା'ର ବିତୃଷ୍ଣ ସବୁ !

ଲଳିତାର ଦେହ ହସିଲା କ୍ଷଣିକ ଚାହାଣୀ ପଶୁଛି ଉଠୁଛି, ଅଜା କାହିଁକି ? କେଡ଼େ ସୁନ୍ଦର ମାନୁଛି, ଅପା ' ସତେ, ଏ ବରଷା ଦିନର ମେଘୁଆ ଆକାଶ ଆଜି କେଡ଼େ ଶୋଭାକାର ଦିଶୁଛି ! ତ୍ରୟୋଦଶୀର ଚନ୍ଦ୍ରମା ଉଇଁଛି । ଲଳିତା ଚାହିଁ ପାରୁନାହିଁ, ଭିତରେ ଜଳୁଛି ପ୍ରତିହିଂସା ?

ସେଇଥିପାଇଁ ଲଳିତା ଦୂରେଇ ରହୁଛି ସେଇଘରେ ?

ଶ୍ୱଶୁର ବାକର ତବ ତବ କରି ଚାହିଁଛନ୍ତି । ତାଙ୍କ ଆଗରେ ଚାଲିଯିବାକୁ ନନ୍ଦିକାର ସାହସ ହେଉନାହିଁ । କଅଣ ସେମାନେ ଭାବୁଥିବେ ? ପଞ୍ଚା ପଞ୍ଚା ହୋଇ ସବୁ ବୟସର ଗାଆଁ ମାଇପେ ସନ୍ଧ୍ୟାରୁ ଆଜି ବୁଲି ଆସି ବାହୁଡ଼ିଲେ । ସେମାନଙ୍କର ଖିଲି ଖିଲି ହସ, ଅଟଳ କଥା, ପଶୁରଳ ଆଖି । କିଏ ସେମାନଙ୍କୁ ଖବର ଦେଲା ?

ସୁମିତ୍ରା ଗୁନି ଗୁନି କାନରେ କହିଲା, ଶୁଣିଲଣି ଗୋ ବଡ଼ ଅପା, ସାନ ଅପାଙ୍କର କ'ଣ ହେବ ମ । ତେର ବରଷ ବାଞ୍ଝ ଦାଣ୍ଡା, କେତେ ଔଷଧ ମହୌଷଧ ପେଟରେ ଲୁଆଡ଼େ ଗଲା, ଜ୍ୟୋତିଷ ମନା କରିଥିଲେ, ଡାକ୍ତର, କବିରାଜ ଓଠ ନେଫେଡ଼ିଥିଲେ । ମିଛୁଆଗୁଡ଼ାକ ସେମାନେ । କେତେମାସ ପରେ ଆମ ସାନ ଅପାଙ୍କର କୋଡ଼ରେ ପିଲା ଖେଳିବ; ଦେଖିବ ରହ ।

କଅଣ ତୁ କହୁଛୁ ?

ଆଖି ଫୁଟିଯିବ, ସତ କହୁଛି !

ମୋ ଲଳିତା ବି ମା ହେବ ଯେ ।

ସତେ ? କେବେ, ଅପା ?

ଏବେ ନୁହେଁ ଯେ, ଠାକୁର କଲେ ଜଲଦି ହେବ ।

ହଁ, ଠାକୁର କଲେ ସବୁ ହୁଏ । ଅଧୁନା ଚାହିଲ ଗଜା ହୁଏ, ନଈ ପାଣି ଉଜାଣି ବହେ, ବୋବା ହରିଆ କଥା କହେ, ଅନ୍ଧ ମଦନା ତବ ତବ ଚାହେଁ । ଆଉ କହିବ ?

କହୁନା, ସେତକ ଥାଉ । ଆଉ ତୋର ବୋଲି ଲୋଡ଼ା ନାହିଁ ।

ଆଖି ହସିଥିଲି । ମନ କାନ୍ଦିଥିଲି । ଓଠ କମ୍ପୁଥିଲି ଥରଥର । ହାତ ବଢେଇ ସୁମିତ୍ରାର କୋଳ ପିଲାକୁ କୋଳକୁ ନେଇ ତା'ର କଅଁଳ ଗାଲରେ ଚୋକ ଦେଇଥିଲି ନନ୍ଦକା ।

ପୁଣି କହିଲି, ଏଇଟି ଆଉ କଏ କ ? ଏକା ଚକଡ ମ ।

ଅବିକଳ ତା ବାପା ମୁହଁପରି ଲୁହେ କ ଅପା ?

ହଁ, ହୋଇଥିବ ।

ନନ୍ଦକା କୋଳପିଲାକୁ ସୁମିତ୍ରା କୋଳକୁ ଦେଲି । ଉଠି କହିଲି, ଯାଏଁ, ଲଳିତା ,ରୋଷଘରେ ଘାଣ୍ଟି ହେଉଛି । ସବୁବେଳେ ସବୁ କରିବାକୁ ତା ମନ ହାଉଁ ପାଉଁ । ଗାଳି ପଦେ ନ ଦେଲେ ସେ କଅଣ ଶୁଣିବ ନା ଆସିବ ? ଯାଏଁ ।

ଯାଆନ୍ତେ ?

ନନ୍ଦକା ଉତ୍ତର ଦେଲି ନାହିଁ । କେତେବେଳେ ସୁମିତ୍ରା ଫେରିଲି ସେ ଜାଣିଲି ନାହିଁ ।

ରୋଷଘରେ ଲଳିତା । ତା' ପାଖରେ କନ୍ତ । ଲଳିତାର ମୁହଁ ରଙ୍ଗା ପଡ଼ିଛି । ଦେହ ଝାଳେଇଛି । କେଶ ଉଲୁରି ଆସିଛି । ଲୁଗାରେ ଖଙ୍ଗ ପଡ଼ିଛି, ଅସଜଡ଼ା । ସେ. ରାନ୍ଧୁଛି । ଜାଳ ଜଳୁଛି ଭୁଷୁଭୁଷୁ ।

ଆଲୋ ଲଳିତା !

ଲଳିତା ପଛକୁ ଫେରି ଚାହିଁଲି । ଦୃଷ୍ଟିରେ, କାହିଁକି ଆଚକ ପସ୍ତରିଲି ପ୍ରଶ୍ନ । କଡ଼େଇରୁ ଉଠୁଛି ମାଛ ଭଜାର ଚେଁ ଚେଁ, ଚଡ଼ ଚଡ଼ ଶବଦ । ଲଳିତା ମାଛ ଭାଜୁଛି । ଆର ଚୁଲି ଉପରେ ତରକାରି ଡେକଚି । ଗବଗବ ଫୁଟୁଛି ।

କଅଣ ଅପା ?

କଅଁ ଧାସରେ କପର ରୁ ହେଲୁଣି ? ଉଠ୍ ।।

ସଇଲଣି ତ, ତରକାରି ଓହ୍ଲେଇଦେବୁ । ମାଛରେ ବେସର ପାଣି ଯୋଗାଡ଼ଦେଲେ ସଇଲା । ତମେ ଯିବଟି ଏଠୁ କଅଁ ଧାସ ବାଜଲେ ସେଦିନ ପରି ପୁଣି ଦେହ ଖୋଲି ମ.ରିଯିବ । ଯାଅ ବୋଉଙ୍କ ପାଖକୁ, ବସି ବସି ଗପିବ । ସେ ଶୋଇପଡ଼ିଲେ, ତାଙ୍କୁ ଉଠାଇଲେ ବିରକ୍ତ ହେବେ ।

ହଉ ତେବେ । ଏତେ ରାତି ଯାଏ ଇଏ ଗଲେ କୁଆଡ଼େ ?

ଗାଁ ବୁଲିବାକୁ ଗଲେ । ଘରେ ତାଙ୍କର ମନଲାଗେ ନାହିଁ । କାହିଁକି କେଜାଣି ?

ସବୁଦିନେ ସେ ସେମିତି । ଗାଆଁର ହାଲଚାଲ, ପରଘରର ହାନିଲାଭ ଆଗ ବୁଝିଲେ ପଛେ ଯାଇଁ ଘର କଥା । ଆସୁଥିବେ ଯେ ।

ନନ୍ଦିକା ଅଭସ୍ଥାଙ୍କ ପାଖକୁ ଆସିଲା । ଭାବିଲା, ସବୁ କାମ ଲଳିତା ଆଦରିନେଇଛି । ଦେହରେ ଅଳସ ନାହିଁ, ମନରେ ନାହିଁ କାହିଁକି କରିବାର ଅନ୍ତରସିବା ଢଙ୍ଗ । ଲଳିତା ପକ୍‌କା ଘରଣୀ ହୋଇଛି ।

ଶାଶୁ ପୁଲକିତ ତନ୍ମୟ ଆଖିରେ ଚାହିଁଲେ । ଧରବୁଢ଼ୀ ବୋହୂଟିର ପିଠିରେ ହାତ ଆଉଁସି ଗେହ୍ଲାରେ କହିଲେ, କାଲି ପରି ମତେ ଲାଗୁଛି ମ, ଏମିତି ଧନ୍ଦାଅଟିଏ ହୋଇ ଏ ଘରେ ରୁ ଗୋଡ଼ ଦେଇଥିଲୁ । ନନ୍ଦିଆ ମୋର ଗଲା କୁଆଡ଼େ ? ପିଲା ବୁଝିଁ ତାର ଆଉ କେବେ ଛାଡ଼ିବ ?

ଶାଶୁଙ୍କ ଆଖିରେ ଛଳଛଳ ଲୁହ । ତାଙ୍କର ଦୃଷ୍ଟି ସହାନୁଭୂତିରେ ଶାସନ କରୁଛି, ଏ ବୁଝିଁ ତତେ କିଏ ଦେଲା ଲେ ? କାହା ଉପରେ ଅଭିମାନ କରିଛୁ, ଦ୍ରେତକୁ ମାନ କରି ଝଗଡ଼ାରେ ଖାଇବୁ ପରି ? ମୋ ଉପରେ ମାନ କରିଛୁ କି ? ତୋ ମୁହଁର କଥା ଶୁଣିଲି ସିନା ମନର କଥା ତ ଶୁଣିପାରି ନ ଥିଲି । ଦେଖ୍ ମତେ, ତୋର ବୟସ୍କ ଭାବ ମୁଁ କ୍ଷୀଣ ହେଉଛି ଦିନୁଦିନ । ତୋ'ର ଶୁଖିଲା ମୁହଁ ଦେଖି ଦେଖି ମୋ ପ୍ରାଣ ଛାଡ଼ିଯିବ । ଏ ଘରେ ମୁଁ କଳବଳ ହେଉଛି, ସେ ଘରରେ ବି କଳବଳ ହେବ । ନାତି ମୋର ଲୋଡ଼ାନାହିଁ । ତୋ'ରି ପରି ବୋହୂ ମୋର ଲୋଡ଼ା ।

ଭାଗବତ, ପଢ଼ିବ ବୋଉ ?

ଆଜି ଥାଉ । ନନ୍ଦିଆର ପାଟି ଶୁଭୁଛି । ସେ ଫେରିଲାଣି । କ'ଣ ଖୋଜୁଥିବ । ତମେ ତା ପାଖକୁ ଯାଉନ ବୋହୂ ?

ଲଳିତାର କାମ ସରିଲାଣି, ସେ ଯିବ ଯେ ।

ଅଭସ୍ଥା ନନ୍ଦିକାର ପିଠିରୁ ହାତ ଓଟାରିନେଲେ । ଡବଡବ କରି ତା' ମୁହଁକୁ ଚାହିଁଲେ । କୋରଡ଼ ଆଖି, ଶୁଖିଲା ଓଠରୁ ନିର ଝରିଲା । କଳବଳ ଆତ୍ମା କରୁଣ ସ୍ୱରରେ ବାହୁନି ଉଠିଲା, ଅତି ବନସ୍ୱରେ ମଥା ନୁଆଇଁ ନୀରବ ଭାଷାରେ ନିବେଦନ କଲା, କେତେଦିନ ଯାଏ ମୋର ଏଇ ଶୁଖିଲା ଦେହ, ଧୋକଡ଼ା ଚମରେ ନଥାଁ ଖୁଣ୍ଟା ଗେଣ୍ଡୁ ଥିବୁ ମା ? ଲଳିତା ତୋର ନଥାଁ ଖୁଣ୍ଟା ।

ନନ୍ଦିକା ବୁଝିଲା, ଶାଶୂ ଆଉ ନିଜ କର୍ମର ଧାର ସହିପାରୁନାହାନ୍ତି । ତା'ର ମନ ମୁହୂର୍ତ୍ତକେ ଉଷତ ହେଲା । ମଣିଷର ଅତି ପୁରୁଣା, ଦରମଳା ପଶୁପଣିଆର ପ୍ରତିଦ୍ୱନ୍ଦ୍ୱୀ ଦାନ୍ତ ନିକୁଟି ଭାଉଁ ଭାଉଁ ରଡ଼ି ଛାଡ଼ିଲା ।

ନନ୍ଦିକା ପୁଣି ଚାହିଁଲା ଅଭୟାଙ୍କ ଆଖିକୁ । ଲୁହ ଗଡ଼ିପଡ଼ୁଛି । ସେଇ ଲୁହ ତ'ଧାର ଅତି ବନସ୍ୱରେ କଥା କହୁଛି, ମାର ନା ମୁଁ ମଲିଣି ।

ନନ୍ଦିକାର ପଶୁପଣିଆ ମୁଣ୍ଡ ନୋଇଁଲା । ମଣିଷପଣ ମସୁଧା ମାଗିଲା ଝଁଗଲା ଆଖିରେ, କଅଣ ମୁଁ କରିବ ?

ନନ୍ଦିଆ ଡ଼ାକୁଛି, ତମେ ଯାଅ ବୋହୂ ।

ନନ୍ଦିକା ତଥା ମାନ ଉଠିଲା । ପଦାକୁ ଆସି ଆଖିରୁ ଲୁହ ପୋଛିଲା । ବାହାରେ ଜହ୍ନି ଫୁଲିଆ ଜହ୍ନର ଆଲୁଅ ଢେଉ ଖେଳୁଛି । ହସିଲା ଜହ୍ନ କଣେଇଁ ଚାହିଁଛି ନେଳିଆ ଆକାଶ କୋଣରୁ । ଶୀତୁଳିଆ ଢେଉଆ ପବନ । କ୍ଷଣେ କ୍ଷଣେ ମାଡ଼ି ଆସି କ୍ଷଣେ କ୍ଷଣେ ସ୍ଥିର ହେଉଛି । ପତେକ ସେ ଲୁଚକାଳି ଖେଳୁଛି । ଖଜା ପାଲୁ, ମୁଆଁ ପାଲୁ, କାଳିଆବଳାନ ଗଲା, ହାଣ୍ଡି ଖଡ଼୍ ଖଡ଼୍ କଲା । ହଟିଆ ପବନ କୁରୁକୁରୁ କରୁଛି । ଦେହ ମନ ହାଲୁ ଆଉଛି । ଚାଣିମ୍ବକାଉଛି ବାସ । ନଙ୍ଗଲା କରିବ ? ଏଡ଼ିକି ବେହିଆ ?

କାନରେ ବାଜୁଛି, ନନ୍ଦିଆ ଡାକୁଛି, ତମେ ଯାଅ ବୋହୂ ।

ଡାଆଣ ଶୋଇଲା ଘରେ ।

ଲଳିତାର ହାତ ଧରି ସେ ଠିଆ ହୋଇଛନ୍ତି ।

ଗ୍ଲାଡ଼୍, ଅପା ଆସିଗିବେ ।

ଏକାଥରେ ଝାଳନାଳ ହୋଇଛ ଯେ ?

ରେଷ୍ଟେଇ ମଗଲା, ଖାଇବ ନାହିଁ କି ? ତମେ ଲୁଗା ପଟା ବଦଳ । ମୁଁ ଥାଏ ଜାଗା କରେ ।

ତମ ଅପା ?

ମୁଁ ଅଭେଷ୍ଣ ସେ କାହିଁକି ଦଆଁଧାପରେ ପଶିବେ ? ସେ ବୋଉଙ୍କ ପାଖରେ ଅଛନ୍ତି । ତାଙ୍କୁ ଡାକଦଏ ।

ନନ୍ଦିକା ରେଖାପରେ ପଶୁନାହାନ୍ତି ?

ତାଙ୍କର ନୂଆ ଦେହ, ନିଆଁ ପାଖରେ ବସିଲେ ମୁଣ୍ଡ ଝାଉଁ ଝାଉଁ ହେବ। ତାଙ୍କର ବୟସ ହେଲଣି, ରୋଷଘରେ ଚୁଲିପାଖରେ ତାଙ୍କୁ ମୁଁ ବସେଇଦେବି କାହିଁକି ? ସେ ମୋ ଅପାଟି, ଯାହା ବରାଦ କରିବେ, ମୁଁ କରିଦେବି।

ନନ୍ଦକା ଚମକି ଠିଆ ହେଲା। ଦେହ ଥରିଉଠିଲା। କାନରେ ବାଜିଯାଉଛି, ବୟସ ହେଲଣି, ସେ ମୋ ଅପାଟି !

କାହିଁକି ତେବେ ତାର ବେଶଭୂଷା ? ଫେରିଯିବ ? କୁଆଡ଼େ ? ସ୍ୱାମୀ ଦୂରେଇ ଗଲେଣି, ତଥାପି ହାତ ପାହାଣିରେ ଅଛନ୍ତି। ଶାଶୂଙ୍କର ଆଖିର ଲୁହ, ମନର କୋହ, କନକ ପ୍ରାଣଭରା ଆଗ୍ରହ, ଜହ୍ନର ହସ, ପବନର କୁତୁକୁତିଆ ଉଲ୍ଲାସ, ସବୁ ହେବ ବ୍ୟର୍ଥ ?

ବୟସ ହେଲଣି ? ସତେ ?

ହସହସ ହୋଇ ସେ ଧୀରେ ଧୀରେ ଘରେ ପଶିଲା। ଲଳିତାର ଝାଳୁଆ ମୁହଁରୁ ସୁନନ୍ଦର ଆଗ୍ରହୀ ମୁହଁ ଘୁଞ୍ଚିଯାଉଛି। ନନ୍ଦକାର ହସିଲା ମୁହଁ ଆଖିରେ ପଡ଼ିଲା। ଲଳିତାର ହାତ ଗ୍ଲାସ ସୁନନ୍ଦ ଘୁଞ୍ଚିଗଲା। ମୁହଁ ପଡ଼ିଲା ରଙ୍ଗା, ସତେକି ସେ କେଉଁ ଅପରାଧ କରିଛି।

ଲଳିତା ଫେରି ଚାହିଁଲା, ନନ୍ଦକାର ହସ ହସ ମୁହଁ ଆଖିରେ ପଡ଼ିଲା। ସେ କେବେ ସବୁ ଦେଖିଛନ୍ତି, ସବୁ ଶୁଣିଛନ୍ତି ? ଲାଜରେ ତା ମୁହଁରେ ଗୋଲାପର ଆଭା ଫୁଟିଲା। କେଉଁବାଟେ ଯାଇ ମୁହଁ ଲୁଚେଇବ ? ନନ୍ଦକା ଦ୍ୱାରବନ୍ଧରେ ଠିଆହୋଇ ଅନାଇଛନ୍ତି !

ନନ୍ଦକା ତାର ମନ କଥା ବୁଝିଲା। ଆଗେଇ ଆସି ତାର ହାତ ଧରିଲା। ଟେହେଲେଇ, ଭଅଁଳେଇ କହିଲା, ତୁ ଝାଳରେ ବୁଡ଼ିଯାଇଚୁ, ନିଆଁ ଧାସରେ, ପୋଛି ହୋଇପଡ଼। ମୁଁ ଯାଉଛି ଭାତ ବାଢ଼ିବ।

ଲଳିତା କହିଲା, ତମେ କାହିଁକି ରୋଷଘରର ତାଉ ଭିତରେ ପଶିବ ଅପା ? ମୁଁ ଯାଉଛି, ଆଗ ବୋଉଙ୍କୁ ଖାଇବାକୁ ଦିଏ।

ଲଳିତା ଚିଲ ପରି ଛୁଟି ପଳାଇଲା। ନନ୍ଦକା ଦେଖିଲା, ସ୍ୱାମୀ ପଲଙ୍କ ଉପରେ ବସି ତଳକୁ ଦୁଇ ଗୋଡ଼ ଝୁଲାଇ ଦେଇଛନ୍ତି, ଚାହିଁଛନ୍ତି ଆଗ୍ରହରେ। ହସି ହସି ପାଖକୁ ଗଲା। ଭ୍ରୂଲତା ଟେକି ଗେହ୍ଲେଇ କହିଲା, ଏତେ ଡେରିଯାଏ କୁଆଡ଼େ ବୁଲୁଥିଲ ? ମୁହଁ, କଳା ପଡ଼ିଛି। କାମିଜ ଓହ୍ଲାଇ ପକାଅ। ସେଭ କରୁ ନାହିଁ ?

ଉତ୍ତରକୁ ଅପେକ୍ଷା ନ କରି ନନ୍ଦକା କାମିଜର ବୋତାମ ଖୋଲିଲା। ସୁନନ୍ଦ ତନ୍ମୟ ହୋଇ ଚାହିଁଥାଏ। ଭାବୁଥାଏ, ନନ୍ଦକାର ଏ କି ପରିବର୍ତ୍ତନ ! ଆଜି ଜଣେ କିଏ କେବେ ଆସି ଦୁହିଁଙ୍କ ମଝିରେ ଠିଆ ହୋଇଛି। ଏହା ଆଜି ତାର ବିଶ୍ୱାସ ହେଉନାହିଁ।

ଏଇ ତ ତାର ପ୍ରାଣର ପ୍ରଥମା ନନ୍ଦିକା, ଯାହା ସେ ଥିଲା ସେଇଆ ଅଛି । ଦିନଟିଏ ବି ବୟସ ବଢ଼ି ନାହିଁ । ସେମିତି ସୁନ୍ଦର ଗୋରା ମୁହଁ, ଢଳଢଳ ସବୁ ସମର୍ପିଲା ଆଖି, ଚମ୍ପାଫୁଲର ମନ୍ଦମନ୍ଦ ବାସ ।

ନନ୍ଦିକା ଚାମିଜ ଓ ଗେଞ୍ଜି ନେଇ ର୍‍ୟାକ୍‌ରେ ରଖୁଛି । ଅସାବଧାନ ଦେହର ବସନ ପିଠି ଉପର ଅଧଯାଏ ଉଠିଛି । ଝୋପିଝୋପିକା ନେଳିଆ ବାଳ । ଆଉ ଅଧିକ ଫୁଙ୍ଗୁଳା । ବଡ଼ ଆଇନାରେ ଦିଶୁଛି ହସିଲା ମୁହଁଟି । ଚକ୍ଷୁ ଓହ୍ଲାଇଆସିଲା ତଳକୁ । ଅତି ପରିଚିତ ଦେହ, ଯାହାର ଶୋଭାସମ୍ଭାର କେବଳ ସୁନନ୍ଦର ଧର୍ମଦ, ସତେକି ଆଜି ସେ ନୂଆ ଦେଖୁଛି ।

ନନ୍ଦିକା ନିମନ୍ତ୍ରଣ କରୁଛି ।

ରୁନ୍ନନା ମନେ ପଡ଼ୁଛନ୍ତି । ତାଙ୍କର କଥା କାନରେ ବାଜୁଯାଉଛି, ନନ୍ଦିକା ତୁମର ଆଗ, ସୁନନ୍ଦବାବୁ, ସବୁ ସ୍ନେହ ସବୁରର ପ୍ରଥମ ଅଧିକାରିଣୀ ସେ !

ବସ ମୋ ପାଖରେ ।

କଅଣ କହୁଛ ?

ନନ୍ଦିକାର ହାତ ଧରି ପାଖରେ ବସାଇଲା ।

ମୋ ଉପରେ ରାଗିଛ ?

ଏ କି କଥା କହୁଛ ? ତମ ଉପରେ ରାଗିବି ତ ମୁଁ ବଞ୍ଚିରହିବି କାହିଁକି ? କହ, ଏମିତି କଥା ଆଉ କେବେ ପଚାରିବ ନାହିଁ ' କହ, କହ— ।

ନନ୍ଦିକା ସୁନନ୍ଦର ହାତ ମୁଠାଇ ଧରିଲା । ଆଖିରେ ଅଶ୍ରୁ ଭରିଲା । ଚାହିଁରହିଲା ସୁନନ୍ଦର ଆଶାକୁଳ ଆଗ୍ରହୀ ଦରହସିଲା ମୁହଁକୁ ।

ସୁନନ୍ଦ ମୁଗ୍ଧ ଆଖିରେ ଚାହିଁରହିଲା ମୁହୂର୍ତ୍ତେ ନନ୍ଦିକାର ଲୁହଝରା ଆଖି ଦିଓଟିକୁ, ସତେକି ନିମନ୍ତ୍ରଣ କରୁଛି । ଦୁଇ ହାତରେ ନନ୍ଦିକାର ମୁହଁଟି ଟେକି ଧରିଲା । ଏଇ ତାର ନନ୍ଦିକା, ବୟସ ବଢେଇ ନାହିଁ, ଆଜି ବି ନନ୍ଦିକା ତା ଆଖିରେ ପିଲା, ନଅ ବର୍ଷ ତଳର ନୂଆ ବୋହୂ । ହଁ, ଅବିକଳ ସେ ସେମିତି ଦିଶୁଛି ।

ସୁନନ୍ଦ ନନ୍ଦିକାକୁ କୋଳକଲା । ଶିହରି ଉଠିଲା ଦିଓଟି ଦେହ । କାମନାର ପୁଲକ ଖେଳିଲା ଦିଓଟି ମନରେ ।

ଲଳିତା ଅବ୍‌କା ହୋଇ ମୁହୂର୍ତ୍ତେ ଚାହିଁରହିଲା । ନିର୍ବାକ୍ ହୋଇ ଦ୍ୱାରବନ୍ଧ ପାଖରୁ ଅଶଳ ପାଦରେ ପଛେଇଗଲା ।

ଆଜି ସୁନନ୍ଦର ଆନନ୍ଦର ସୀମା ନାହିଁ । ଦେହର ଆଭରଣ ଫିଙ୍ଗି ତାର ପୁଲକିତ ଆତ୍ମା ପଦାକୁ ବାହାରି ଆସିଛି, ମଥା ଉପର ଉଜ୍ଜ୍ୱଳ ହସିଲା ଜହ୍ନ ସାଥିରେ ମିଶି, ନୀଳ ଆକାଶରେ ଭାସିଲା ରୁପେଲି ବଉଦମାଳର ସନ୍ଧିରେ ମୁହଁ ଦେଖାଇ ଲୁଚେଇ ଖେଳୁଛି । ଅଥବା ଧୀର ପବନ ଢେଉରେ ସ୍ନାନ ହୋଇ ପତ୍ର ସନ୍ଧିରେ ଲୁଚକାଳି ଖେଳୁଛନ୍ତି । ଆଗରେ ତାର ଘର । ଘରକୁ ଲାଗି ଦୁଇ କଡ଼ରେ ଲମ୍ବି ଯାଇଥିବା ସବୁଜ ବାଡ଼ରେ ଜହ୍ନିଲତା ମାଡ଼ିଛି, ନକ୍ଷତ୍ର ପରି ଫୁଲ ଫୁଟିଛି । ମଧୁର ବାସ ।

ଭାବୁଛି, ସେ ସୁଖୀ । ନନ୍ଦିକା ଓ ଲଳିତା ପରି ଯାହାର ଦୁଇ ପତ୍ନୀ, ତାର ଆଉ ଭାବନା କଣ ? ଧନ୍ୟ ତୁମେ ନୁଦ୍ରନା ଦେବୀ, ଠିକ୍ ସମୟରେ ସତର୍କ କରିଦେଇଥିଲ । ଏଥର କଟକ ଫେରିଲେ ସବୁ କଥା ତମ ଆଗରେ ଖୋଲି କହିବି ।

ସୁନନ୍ଦ ପଦାକୁ ଆସିଲାବେଳେ ରୋଷଘରକୁ କଣେଇ ଚାହିଁଥିଲା, ଦେଖିଲା, ନନ୍ଦିକା ଓ ଲଳିତା ଗୋଟିଏ ଥାଳିରେ ଖାଇବସିଛନ୍ତି କନକ ପରଷିଦେଉଛନ୍ତି । ଦୁହେଁ ହସି ହସି ଲୋଟିଯାଉଛନ୍ତି । ହସ କଥାଟି ଶୁଣିବାକୁ ସୁନନ୍ଦର ଆଗ୍ରହ ହେଲା । ଚୋର ପାଦ ଆଗେଇ ଚାଲ । ହସ ଅଟକିଛି । ନନ୍ଦିକା ଦେଉଛି ଲଳିତାର ପାଟିରେ ଆହାର । ନା, ସେମାନଙ୍କର ଖୁସି ଆନନ୍ଦରେ ସେ ବାଧା ଦେବ ନାହିଁ । ପଦାକୁ ଆସିଲା ।

ଦୁଇ ଘଣ୍ଟା କଟିଗଲାଣି । ଚୁକଉ ଠୋକା ଦେଇ ବସି ଢୁମେଇ ପଡ଼ିଲାଣି । ଘୁଙ୍ଗୁଡ଼ି ମାରୁଛି । କୁକୁରଟି ତା ଆର ପାଖରେ ଶୋଇଛି । ଡେରି ହେଲାଣି । ଏଥର ସେ ଭିତରକୁ ଯିବ । ଆଖି ମାଡ଼ିପଡୁଛି ।

ଗନ୍ଧିଆ, ଆରେ ଗନ୍ଧିଆ !

ଅଁଙ୍କ !

ଗନ୍ଧିଆ ଧଡ଼ପଡ଼ ହୋଇ ଉଠିଲା । କୁକୁର ମୁଣ୍ଡ ଟେକିଲା । ସୁନନ୍ଦ ପଶିଲା ଘରେ । ଆଗ ବଖରାରେ ସବୁ ଶୁନଶାନ୍ । ମାଆଙ୍କ ଘରର କବାଟ କିଲା ହୋଇଛି । ସେ ଶୋଇପଡ଼ିଲେଣି । ଯାଙ୍କ ପରେ କନକ ରହେ । ସେ ବି ଶୋଇଲାଣି । ରୋଷଘର ବନ୍ଦ । ବାଡ଼ଘର କବାଟ ମୁକୁଳା । କୋଠାଘର ଝରକାରୁ ଆଲୁଅ ଦିଶୁଛି, ଦୁହେଁ ଚେଇଁଛନ୍ତି ।

ମନ ଖୁସିରେ ଆଗେଇ ଆସିଲା ଭିତର ଅଗଣାକୁ । ଅଣ୍ଟାଏ ଉଚ୍ଚର ପକ୍କା ଚଉରା ଉପରେ ଝଙ୍କାଳିଆ ତୁଳସୀ ଗଛ । ଏପାଖେ ଠିଆ ହେଲେ ସେପାଖରୁ ମୁଣ୍ଡଟାଏ ଦେଖାଯାଏ ନାହିଁ ।

ସୁନନ୍ଦ ଚଉରା ପାଖରେ ଠିଆହୋଇ ଚାହିଁଲା ।

ଦୁଇଟି କୋଠରୀର ଦ୍ୱାର ଉନ୍ମୁକ୍ତ । ଏ ଘରେ ନନ୍ଦିକା, ସେ ଘରେ ଲଳିତା । ଦୁହେଁ ତାକୁହିଁ ଅପେକ୍ଷା କରି ବସିଛନ୍ତି । ଦୁହିଁଙ୍କର ଟେବୁଲ ଉପରେ ଆଲୁଅ ଜଳୁଛି ଉଜ୍ଜ୍ୱଳ ହୋଇ । ଦୁହେଁ ମନଦେଇ କ'ଣ ପଢୁଛନ୍ତି ।

ସୁନନ୍ଦର ଦୃଷ୍ଟି ଏ ମୁହଁରୁ ସେ ମୁହଁକୁ ଡେଇଁଲା । ଗ୍ରୀବ କମ୍ପି ଉଠିଲା । ପାଦ ଅଟକିଲା । ଚଉକାଠରେ ହାତଭରା ଦେଇ ସେ ନିର୍ବୋଧ ପରି ଚାହିଁରହିଲା ।

ଏ ଘରେ ନନ୍ଦିକା, ଆଲୋକରେ ଝଟକି ଉଠୁଛି ସୁନ୍ଦର ମୁହଁଟି । ମଥାରେ ବସନ ନାହିଁ । ତନ୍ମୟ ହୋଇ କଅଣ ପଢ଼ୁଛି । ମୁଣ୍ଡ ବୁଲାଇ ସେ ପଦାକୁ ଚାହିଁଲା । ତାଆର ଦୃଷ୍ଟି ଯେପରି କାହାର ଅନ୍ୱେଷଣ କରୁଛି । ସୁନନ୍ଦ ଜାଣେ, କାହାର । ନନ୍ଦିକାର ଉପାସ୍ୟ! ଆଗ୍ରହ ତାକୁହିଁ ଲୋଡ଼ୁଛି । ଅଶାନ୍ତ ବାହୁନ ଉଠୁଛି । ଆକୁଳ ଅଧୀର ଛଟପଟ ଆତ୍ମା ତା'ର ଉଚ୍ଛନ୍ନ ହୋଇ ଛୁଟି ଆସୁଛି ଝଲସା ଦୃଷ୍ଟି ଯାନରେ ।

ସୁନନ୍ଦ ଏ କଡ଼କୁ ଘୁଞ୍ଚି ଆସିଲା । ଲଳିତା ପଡ଼ିଲା ନୟନରେ । ଯୌବନ ଢଳ ଢଳ, ତନ୍ଦ୍ରା ବିହ୍ୱଳ ମୁହଁଟି, ସତେ କି ଶୂନ୍ୟେ ଶୂନ୍ୟେ ଡେଇଁଆସୁଛି ସୁନନ୍ଦର ଗ୍ରୀବ ଉପରକୁ । ସେଇଠି ତ ତାର ସ୍ଥାନ । ତେବେ କାହିଁକି ? ଆହା, ସରଳ ନିରୀହ ଲଳିତାଟି, ପଢ଼ୁନାହିଁତ, ଘୁମେଉଛି । ହାତ ଦିଓଟି ଉପରକୁ ଟେକି ଅଳସ ଭାଙ୍ଗୁଛି । କଡ଼େଇ ଚାହୁଁଛି ପଦାକୁ । ପ୍ରଶ୍ନେଇ ଉଠୁଛି ଅଳସ ଦୃଷ୍ଟି, ଗଲେ କୁଆଡ଼େ ?

ସୁନନ୍ଦର ବୁଦ୍ଧି ହଜିଲା । ଆକାଶ ଚାହିଁ ନିର୍ଦ୍ଦେଶ ଖୋଜିଲା । ଚନ୍ଦ୍ରମା ଉପହାସ କରୁଛି । ଲୁଚକାଳି ଖେଳୁଛି ଖଣ୍ଡ ଖଣ୍ଡ ଭଙ୍ଗା ମେଘର ଅଞ୍ଚଳ ତଳେ । ଧାଇଁଛି । କେହି ତାକୁ ଅଟକାଇ ପାରୁନାହିଁ । ଆକାଶର ମେଘ, ନକ୍ଷତ୍ର, ତାରା ସୁନନ୍ଦକୁ ବୁଦ୍ଧି ଦେଇପାରିଲେ ନାହିଁ । ସାଇଁ ସାଇଁ ପବନ ପଛରୁ ଠେଲୁଛି, କାନରେ କହୁଛି, ମଣିଷଟି ତୁମେ, ପଥର ନୁହଁ ତ ଠିଆ ହୋଇ ରହିଲ କାହିଁକି ? ଆଗକୁ ଚାଲ । ବୁଦ୍ଧିମାନ୍ ପୁରୁଷସିଂହ, ଆଗକୁ ଚାଲ ।

ସୁନନ୍ଦର ଦେହ ଝାଳେଇ ଉଠିଲା । ଆହା, ନିଜକୁ ଯଦି ସେ ଦୁଇଭାଗ କରିପାରନ୍ତା, ଅଥବା ନନ୍ଦିକା ଓ ଲଳିତାଙ୍କୁ ଏକାଠି ମିଶାଇ ଗଢ଼ିପାରନ୍ତା ଗୋଟିଏ ମୂର୍ତ୍ତି ! କେଉଁଟା ତ ସମ୍ଭବ ନୁହେଁ, ତେବେ ସେ କରିବ କଣ ? କିପରି ଏ ମହା ପରୀକ୍ଷାରୁ ଉଦ୍ଧାର ପାଇବ ? କାହାକୁ କରିବ ହତାଶ ?

ତା'ର କ୍ଲାନ୍ତ, ଦୁର୍ବଳ, ଅସ୍ଥିର ମନ ଘୂରିଲା, ପବନରେ ଶୁଖିଲା ପତ୍ର ପରି ଭ୍ରମିବାକୁ ଲାଗିଲା ।

କାନରେ ପଡ଼ିଲା ଚଉକ ଘୁଙ୍ଗୁର ଶବ୍ଦ । ସତେ କି ବିରକ୍ତ ହୋଇ ଲଳିତା ଉଠି ଠିଆ ହେଲା । ଦେହର ବସନ ଖସିପଡ଼ୁଛି । ଦୁଇହାତ ଟେକି ଅଳସ ଭାଙ୍ଗୁଛି । ନିରାଶ ନୟନ ଶେଷ ଥର ପାଇଁ ଚୂଟପଲ୍ଲି ଅଗଣାରେ କାହାକୁ ଥରେ ଖୋଜିଲା । ହାତ ଲୁଆଁଇ ସେ ଆଲୁଅ କମାଇଲା । ଟଳିଲା ପରି କଡ଼େଇଗଲା ପଲଙ୍କ ପାଖକୁ । ପଲଙ୍କର ଦୋହଲ ଶବ୍ଦ ସୁନନ୍ଦର କାନରେ ବାଜିଲା ।

ଲଳିତା ଶୋଇବାକୁ ଗଲା ।

ନନ୍ଦିକା ! ସେ ସେ ମଧ୍ୟ ଉଠିଲାଣି, ଅଧ ସନ୍ତର୍ପଣରେ । ସେ ଚଉକି ଠେଲିନାହିଁ । ବାରମ୍ବାର ପଦାକୁ ଚାହୁଁଛି । ମୁହଁରେ ଲାଗିରହିଛି ହସ । ହାତ ବଢ଼ାଇ ସେ ଆଲୁଅ ଲିଭାଇଲା । ଘର ଭିତର ଅନ୍ଧାର କଲା । ବାହାର ଆସିଲା ପଦାକୁ । ଚାଲିଆସିଲା ଅଗଣାକୁ, ଏକାଥରେ ଚଉରା ପାଖକୁ ।

ହତଭମ୍ବ ସୁନନ୍ଦ ଚାହିଁ ରହିଲା ଆକାଶର ଚନ୍ଦ୍ରମାକୁ । ସତେ କି ଦୁନିଆରେ କଅଣ ଘଟୁଛି ସେ କିଛି ଜାଣେ ନାହିଁ ।

ନନ୍ଦିକା ତାର ହାତ ଧରିଲା ।

ଚମକି ଉଠିଲା ପରି ସୁନନ୍ଦ ଦୃଷ୍ଟି ଲୁଆଁଇଲା । ଚିତ୍କାର କରିବାକୁ ତାର ମନହେଲା, କିନ୍ତୁ ଖୋଲିଲା ନାହିଁ । ନିଜକୁ ସେ ଅପରାଧୀ ମଣିଲା ।

ନନ୍ଦିକା ତାର ଅଚଳ ହାତଟି ଧରି ଟାଣିନେଉଛି । ଏହି ସଙ୍କେତ ସେ ଖୋଜୁଥିଲା, ଏତିକି ଆଉ । ସେ ନିଜେ କୁଆଡ଼େ ଯାଇନାହିଁ । ନନ୍ଦିକା ତାକୁ ଧରି ନେଇଛି, ନିମନ୍ତ୍ରଣ କରି ନେଉଛି । ନିଜର ଅଧିକାର ସେ ନିଜେ ବୁଝିଛି ।

ନନ୍ଦିକାର କୋଠରୀ ଆଗରେ ସେ ସୁନନ୍ଦର ହାତ ଛାଡ଼ିଲା ! ଠିଆ ହେଲା ମୁହୂର୍ତ୍ତେ । ଝାପ୍‌ସା ଆଲୁଅରେ ଆଗରେ ଉଭା ହୋଇଥିବା ସ୍ୱାମୀଙ୍କ ମୁହଁକୁ ଚାହିଁଲା । କାନରେ ନିଜ ମନର ଅଭିଳଷିତ ଡାକ ବାଜୁଥାଉଛି, ସେମିତ କାହା ପରି ଠିଆହୋଇ କଅଣ ଦେଖୁଛ ତୁମେ ନନ୍ଦିକା, ଭିତରକୁ ଚାଲ ।

ନନ୍ଦିକାର ଦେହରେ ଅଜାତ ଅନୁଭୂତ ଶିହରଣ ହେଉଛି । ସତେକି ହାତରେ ଲାଗିଛି ସୁନନ୍ଦର ହାତ, ମୁହଁରେ ସୁନନ୍ଦ ଓଠର ପରଶ । ଦୁଇଟି ଚଞ୍ଚଳ ବାହୁର ନିବିଡ଼ ବନ୍ଧନ । ଆଶାପ୍ରୀ ଆତ୍ମାର ଆଗ୍ରହଭରା ଆହ୍ୱାନ, ଆସ ନନ୍ଦିକା !

ସୁନନ୍ଦ ପଥର ମୂର୍ତ୍ତି ପରି ଠିଆ ହୋଇଛି । ସେ ବିଚଳିତ ହୋଇଛି । ଲଳିତାର କୋଠରୀ ଭିତରୁ ଅଗଣାକୁ ଆସୁଛି ଅଳପ ଆଲୁଅ । ଦୃଷ୍ଟି ସେଇ ଆଲୁଅ ଉପରେ ସ୍ଥିର । ନିଜେ ସେ କର୍ତ୍ତବ୍ୟ ସ୍ଥିର କରିପାରୁ ନାହିଁ । ଭାବୁଛି, କାହିଁକି ନନ୍ଦିକା ହାତ ଛାଡ଼ିଲା ? ହାତଧରି ଟାଣିନେଲା ନାହିଁ ପ୍ରକୋଷ୍ଠ ଭିତରକୁ ? ପଲଙ୍କ ଉପରେ ଦୁଧଫେଣ ପରି ବିଛଣା । ଚମ୍ପାଫୁଲର ମହକ ଛୁଟିଛି କୋଠରୀ ଭିତରୁ । ନନ୍ଦିକା ବି କଣ ଭାବୁଛି, ଲଳିତା ଶୋଇନାହିଁ, ଚେଇଁଛି, ଅପେକ୍ଷା କରିଛି ?

ନନ୍ଦକା ନିଜ କର୍ମଫଳର ଫଳ ଦେଖୁଛି । ସ୍ୱାମୀଙ୍କ ମନର ଭାବନା ସେ ଉପଲବ୍ଧ କରୁଛି । ମୁହୂର୍ତ୍ତେ ବଳମ୍ବ କାନରେ କହୁଛି, ସେ ଚେଇଁଛି, କଅଣ ସେ ଭାବବ ?

ନନ୍ଦକାର ଦେହରେ, ମନରେ ଅନଳ ଲାଗିଲା । ସେ ପୋଡ଼ିହେଲା, ସେ ଜଳିଲା, ସେ ପୋଡ଼ାକାଠ ପରି ମଳିନ ହେଲା । ଆଖି ବୁଜି ସେ ଆଖି ଖୋଲିଲା । କ୍ଷଣକ ଭିତରେ ସେ ହେଲା ନୂଆ ମଣିଷ ।

ଶାଶୁ ଭାବ ଭାବ ମରନ୍ତୁ, ତା'ର କି ଥାଏ ? ସେ ନିଜେ ଜହର ଢୋକୁଛି ଅନ୍ୟର କି ଦୋଷ ? ସ୍ୱାମୀଙ୍କୁ ଛଟପଟ, କଲବଲ କରି କି ଲାଭ ମିଳିବ ? ନିଜର କର୍ତ୍ତବ୍ୟ ସେ ନିଜେ ସ୍ଥିର କରି ପାରୁ ନାହାନ୍ତି । ତାଙ୍କ ପାଇଁ ନନ୍ଦକା କର୍ତ୍ତବ୍ୟର ବାଟ ଦେଖାଇବ ।

ବ୍ୟଗ୍ର ହୋଇ ସେ ସୁନନ୍ଦର ହାତ ଧରିଲା । କାହାର ହାତ ଧରୁଛି କେହି ଜାଣିପାରିଲେ ନାହିଁ । ନନ୍ଦକା ଧୀରଲା କଣ୍ଠରେ କହିଲା, ଏତେବେଳଯାଏ ପଦାରେ, ଅନ୍ଧାରେ ବୁଲୁଛ, ଦେହ ଖରାପ ହେବ ନାହିଁ ?

ସୁନନ୍ଦର ଉତ୍ତରରୁ ଖସିଲା, ସୁନ୍ଦର ଜହ୍ନରାତି !

ନନ୍ଦକା ସୁନନ୍ଦର ହାତ ଟାଣିଲା ଲଳିତାର କୋଠରୀ ପାଖକୁ । ଅଭିମାନିଆ ଅଳସ ସ୍ୱରେ କହିଲା, କେତେ ରାତି ହେଲାଣି, ପିଲାଟା ଚେଇଁ ବସିଛି, ଦିନସାରା ଖଟଣି, ଦେହ ଖରାପ ହେବ ନାହିଁ ?

ଲଳିତାର କୋଠରୀ ଆଗରେ ନନ୍ଦକା । ଡାକିଲା, ଲଳିତା, ଲଳିତା, ଶୋଇଲୁ କି ?

ଲଳିତା ଧଡ଼ପଡ଼ ହୋଇ ଉଠିଲା । ମୁଣ୍ଡ ଉପରକୁ ଓଢଣା ଟାଣି କହିଲା, କଅଣ ଅପା ? ଆରେ, ତମେ ଚେଇଁ ବସିଛ ? ତମର ନୂଆ ଦେହ, ପୁଣି ମତେ ହରବର କରିବ ?

ଦେଖିଲୁ ସ୍ୱାମୀଙ୍କୁ, ଅନ୍ଧାରେ ବସି ରାତି ଅଧଯାଏ ଜହ୍ନରାତି ଦେଖୁଛନ୍ତି । ତୁ ଏଠି ଏକା । ମଝିଖଞ୍ଜାର କବାଟ ମୁଁ ବନ୍ଦ କରିବ ।

ସୁନନ୍ଦ କହିଲା, ବେପାର ବଷୟ ଭାବୁଥିଲି । ଟିକିଏ ଅଡ଼ୁଆ ହୋଇଛି ।

ହସିବାକୁ ଚେଷ୍ଟା କଲା ।

କଟକରେ ଭାବବ । ତୁ ଶୋଇପଡ଼ ଲୋ ଲଳିତା !

ଗଡ ଟାଣିଲା ପରି, ହସିଲା ମୁହଁ ଟେକି ନନ୍ଦକା ଦୁହିଁଙ୍କୁ ଚାହିଁଲା । ବୁଲିପଡ଼ି ପବନରେ ଉଡ଼ିଲା ପରି ସେ ଗଲା ଚାଲି ଖଞ୍ଜାର ଦାଣ୍ଟଘର ପାଖକୁ । ସଶବ୍ଦରେ କବାଟ କିଳାହୁ । ଭରା ଦେଇ କାହିଁକି କେଜାଣି ମୁହୂର୍ତ୍ତେ ରହିଲା ।

ମଥା ନଇଁପଡ଼ିଲା ନିଷ୍ଠୁର, କଠିଣ, ଶୁଖିଲା ପଥରର ସ୍ତୂପ ଉପରେ । ମୁଣ୍ଡ ଘୁରିବାକୁ ଲାଗିଲା । ମନେ ହେଲା, ସେ ସେଇଠି ଟଳିପଡ଼ିବ ।

ଶବ୍ଦ ହେଲା । ନନ୍ଦିକା ମୁଣ୍ଡ ଟେକି ଚାହିଁଲା । ଲଳିତା କବାଟ ବନ୍ଦ କରିଛି । ଆଲୋକ ଦେଖା ଯାଉନାହିଁ । ଜହ୍ନ ଆଲୁଅ ତାକୁ ଉପହାସ କରୁଛି । ରହି ରହିକା ପବନ କରୁଛି ବିଦ୍ରୂପ । ଦେହର ବସନ ଇତସ୍ତତଃ କରୁଛି । ନିର୍ଜନତା ମନରେ ଆଣୁଛି ଅଜଣା ଭୟ ।

ନନ୍ଦିକା ଟଳି ଟଳି ନିଜ କୋଠରି ଭିତରକୁ ଆସିଲା । କବାଟ କିଳିଲା । କିଏ ସତେକି ତାକୁ ଶୂନ୍ୟେ ଶୂନ୍ୟେ ଟେକି ପଲଙ୍କ ଉପରେ କଚାଡ଼ିଦେଲା । ମୁହଁ ମାଡ଼ି ପଡ଼ି, ଅଝଟ ପିଲାଟି ପରି ସେ କହିଁ କହିଁ ହୋଇ କାନ୍ଦିଉଠିଲା । ତାର ମନେ ହେଲା, ଦୁନିଆରେ ଆଜିଠାରୁ ସେ ଏକୁଟିଆ, ଯାହା ସମ୍ବଳ କେହି ନାହିଁ, ଲୁହର ପାରାବାରରେ ସାରାଜୀବନ ସେ ଭାସିବ, ଉବୁଟୁବୁ ହେବ, ଅଶାନ୍ତି ଓ ଅସନ୍ତୋଷର ବୋଝରେ ସେ ବୁଡ଼ିବ ।

ସେ ବୁଡ଼ିବ, ଲୋତକ ପାରାବାରର ଅତଳ ତଳେ ପଡ଼ି ରହିବ ତାର ହୁଡ଼ିଲା ବଡ଼ିମା !

ଆଉଜା ଝରକାର କବାଟ ଦଫାଳ ଅଳପ ଠେଲି ଲଳିତା ଭିତରକୁ ଚାହିଁଲା । ଚମକି ଉଠିଲା । ତା'ର ନନ୍ଦିକା ଅପା ମୁହଁ ମାଡ଼ି ତଳେ ଶୋଇଛନ୍ତି । ମୁଣ୍ଡ ତଳେ ବାହୁ । ବେଳ ଆସି କେତେ ହେଲାଣି । କେତେବେଳୁ ସୂର୍ଯ୍ୟ ଉଠିଲେଣି । ମେଘୁଆ ପାଗ ବୋଲି ଜଣା ପଡ଼ୁନାହିଁ । ଯିଏ ସବୁଦିନେ ସମସ୍ତଙ୍କ ଆଗରୁ ଉଠି ଜଣଜଣ କରି ଉଠାନ୍ତି, ଆଜି ପହରେ ଦିନଯାଏ ତାଙ୍କର ନିଦ ଭାଙ୍ଗି ନାହିଁ । ପୁଣି, ତଳେ ଶୋଇଛନ୍ତି, ଶୀତୁଆ ଖୋଲା ଚଟାଣ ଉପରେ ।

ତାଙ୍କୁ ଉଠେଇବାକୁ ମନ କଲା । ପୁଣି ଭାବିଲା, ନା, ଉଠାଇବ ନାହିଁ, ମନକୁ ଯେ ଉଠନ୍ତୁ । ଆକାଶର ଜହ୍ନ ଓ ବୁଦାବାଡ଼ର ଜହ୍ନି ଫୁଲକୁ ବୃଦ୍ଧ ସ୍ୱାମୀ ଗତ ରାତିରେ ଏତେ ତେଜଶ କଲେ ଯେ ଶୋଉ ଶୋଉ ରାତି ଦୁଇଟା ହେଲା । କାଲେ ଲଳିତା ଡରିବ ବୋଲି ଅପା ବି ଅନିଦ୍ରା ହୋଇ ଜଗି ବସିଥିଲେ । ଶୋଉନ୍ତୁ ।

ତା'ର ଆଖିପତା ମଧ୍ୟ ମାଡ଼ି ମାଡ଼ି ପଡ଼ୁଛି । ରାଜ୍ୟଯାକର ଗପ । ମୂଳ ନାହିଁ, ଶେଷ ନାହିଁ । ହୁଁ ନ କହିଲେ ଚିମୁଟି ଦେଉଛନ୍ତି । ଶୋଇଦେଉ-

ନାହାନ୍ତି । କେତେବେଳେ ନିଦ ହେଲା, ଲଳିତା ଜାଣେ ନାହିଁ । ସେ ଏ ଜଗିଲା କେଉଁଥିରେ । ସ୍ୱାମୀ ବଡ଼ ସକାଳୁ ଉଠି କୁଆଡ଼େ ଚାଲିଗଲେଣି । ଲଳିତା ଜାଣେ ନାହିଁ । କବାଟ ଆଉଜା ।

ରାତିରେ ତାଙ୍କୁ ନିଦ ହୋଇନି ? ଗଲେ କୁଆଡ଼େ ?

ଲଳିତା ଡାକିଲା, ଅପା '

ପଦଟିଏ ଡାକରେ ନନ୍ଦିକାର ନିଦ ଭାଙ୍ଗିଲା । ତା'ର ପାତଳା ନିଦ । ଚାହିଁଲା ଲଳିତାର ହସ ହସ ମୁହଁ ଝରକା ସେପାଖେ ଦିଶୁଛି । ମନେପଡ଼ିଲା ସବୁ କଥା, ରାତିର ଉତ୍ତେଜନା, ରାତିର କୋହ, ଛଟପଟ ଝଗଡ଼ା ଉଠିଥିବା ମନର ଉଦ୍‌ବେଗ, ଚଞ୍ଚଳ ଭାବନାର ନିଷ୍ପତ୍ତି ।

ଲଳିତା ଛିଗୁଲାଇବାକୁ ଆସିଛି ? ମୁହଁ ଖୋଲି ଆଜି ସେ ଉପହାସ କରି କହିଦେବ ପରା, କିଏ ଜିତିଲା ଅପା, କାହା ପାଇଁ ସେ, ବୁଝିଲ ତ ?

ନନ୍ଦିକା ପୁଣି ଆଖି ବୁଜିଲା ।

ଅପା !

ନନ୍ଦିକା ଉଠି ବସିଲା । କବାଟ ଖୋଲିବାକୁ ତା'ର ଶକ୍ତି ନାହିଁ । ମୁଣ୍ଡ ଓଜନ ଲାଗୁଛି । ଦେହ ଥକ୍କିଛି । କେତେ ଭାବନା ମନକୁ ବ୍ୟତିବ୍ୟସ୍ତ କରିଥିଲା, ସତେ ବା ସେ ପାଗଳ ହୋଇଥିଲା । ସବୁ ତା'ର ନିଜ ଦୁର୍ବଳତାର ଦୋଷ । ଲୋକଦେଖାଣ ଭଲପଣିଆର ଦଣ୍ଡ । କାହାର ସେ ଦୋଷ ଦେବ ?

କୁଆଁତାରା ଆକାଶରେ ଦିଶିଲା, ରାତି ପାହି ଆସିଲା, କ୍ଲାନ୍ତ ହୋଇ ସେ ଚଳେ ଶୋଇପଡ଼ିଥିଲା । ନିଦ ହୋଇଛି କି ନାହିଁ, ସେ ଜାଣେନାହିଁ । ଯାହା ପାଇଁ ତାର ଦୁଃଖ, ସେଇ ପୁଣି ଆସି ନିଦ ଭାଙ୍ଗୁଛି ।

ଅପା, କବାଟ ଖୋଲ ମ ।

ବାପମାମୁଁ ଡ଼ାକୁଛି, ଟିଆଁରେ, ଟିଁରେ କବାଟ ଖୋଲ । ନ ଖୋଲିଲେ ବାପମାମୁଁ ଗୁଳି କଣା କରି ପଶିବ । ନନ୍ଦିକା ଠିଆ ହେଲା । ହେଲା ଅସଂଯତ ଅସ୍ତବ୍ୟସ୍ତ ଢଙ୍ଗ । କବାଟର କିଳିଣୀ ଖୋଲିଲା । ଟଳି ଟଳି ଖଟ ଉପରେ ବସିପଡ଼ିଲା ।

ଲଳିତା ଘରେ ପଶିଲା । ନନ୍ଦିକାକୁ ଚାହିଁ ସେ ଚମକି ଉଠିଲା । ଏପରି ଦିଶୁଛନ୍ତି କାହିଁକି ? ଗୋଟିଏ ରାତିରେ ତାଙ୍କର ବୟସ ଗୋଟିଏ ଯୁଗ ବଢ଼ିଯାଇଛି । ମଳିନ ମୁହଁ, ପଶିଲା ଆଖି, ନିସ୍ତେଜ ଡୋଳା ! ତଳ ପତାକୁ କଜଳ ବୋଳିହୋଇଛି । କପାଳର କୁଙ୍କୁମ ନେସିହୋଇଛି । କେଶ ଖୋଲା । ଖୋସାର ଚମ୍ପାକଢ଼ିମାଳ ତଳେ ପଡ଼ିଛି । ବେକର ହାର ଖସିପଡ଼ିଛି ପଲଙ୍କ ଉପରେ ।

କାହିଁକି କାହିଁକିର ଉଦ୍‌ବେଗ ମନକୁ ଆସିଲା । ସେ ମୁହଁ ଖୋଲିଲା ନାହିଁ । ଭିତର କୋହ ଚାପି, ଥଙ୍ଗେଇ ଥଙ୍ଗେଇ ପଚାରିଲା, ଏମିତି କାହିଁକି ଦିଶୁଛ ଅପା ?

ନନ୍ଦିକାର ମଳିନ ଓଠରେ ହସ ।

ଚଳେ ଶୋଇଲି, ନୂଆ ଦେହ !

ପୁରୁଣା ଦେହ ଲୋ ଲଳିତା, ବୁଢ଼ୀ ଚମକୁ କିଛି ବାଧେନାହିଁ । କାଲି ରାତିରେ ଜ୍ୱର ଗରମ ହେଲା ।

ଡେରି ହେଲାଣି, ଗାଧୋଇବ ଯାଅ ।

ଉତ୍ତର ନ ଦେଇ ନନ୍ଦିକା ଟଳି ଟଳି ପଦାକୁ ଗଲା ।

ଘର ଭିତରୁ ଫେରୁଥିଲା ଲଳିତା । ଉପର ଝରକାରୁ ଜଳ ଆସୁଛି । ନନ୍ଦିକାକୁ ଦେଖି ସେ ମୁହୂର୍ତ୍ତେ ଆଶ୍ଚର୍ଯ୍ୟ ହେଲାପରି ଠିଆ ହେଲା । କେଜାଣି କାହିଁକି ତା ମୁହଁରେ ହସ ଚହଟିଲା । କହିଲା, ନୂଆ ହଉ, ପୋଖରୀରେ ଗାଧୋଇବ କି କୂଅମୂଳେ ?

ନନ୍ଦିକା ଚାଲି ଝରକାର ବାହାର କବାଟ ଖୋଲି କୂଅମୂଳକୁ ଗଲା । ସେଇଟି ଆବର ସ୍ଥାନ ।

ଛୋଟ ବାଗ । ପୁନ୍ଦନୀ ପାଖେ ଚମ୍ପା, ବଉଳ ଓ ଅଶୋକ ଗଛ । ଦୁଇଧାଡ଼ି ମଲ୍ଲୀବୁଦା । ଡନ ରଙ୍ଗର ବୁଦା ଗୋଲାପ, ରଙ୍ଗରଙ୍ଗର । ରଜନୀଗନ୍ଧା, ହସଗୋଲ, ସୂର୍ଯ୍ୟମୁଖୀ, ଜହ୍ନିଆ ବାଡ଼ କଡ଼ରେ ଲାଗିଛି । କାନ୍ଥ କଡ଼ରେ ଟଗର, ବାସନ୍ତୀ କନିଅର ଓ ରଙ୍ଗଣୀଫୁଲି । ବଉଳଗଛଟି ସୁନ୍ଦର ଦିଶୁଛି । କୂଅମୂଳର ଛୋଟ ବାଗରୁ ବଡ଼ ବାଗକୁ ଯିବାକୁ ବାଟ ଅଛି ।

ଲଳିତା ପୂର୍ବପଟର ଝରକା ବାଟେ ଚାହିଁଲା । କୂଅପାଖ ବାଗ ଝରକା ବାଟେ ସୁନ୍ଦର ଦିଶୁଛି । ଏ ବାଗଟି ଜନନର ଜୀବନ । ନନ୍ଦିକା ଓ ଲଳିତା ମଧ୍ୟ ଗଛଗୁଡ଼ିକର ଯତ୍ନ ନିଅନ୍ତି ।

ଲଳିତା ଅନେଇ ରହିଲା, ନନ୍ଦିକା ଅପା ଦିଶୁ ନାହାନ୍ତି । କୂଅ ଓ ପୁନ୍ଦନୀ ଏ ଘରକୁ ଦିଶେ ନାହିଁ ।

ଲଳିତାର ମନରେ ସନ୍ଦେହ ଆଜି ବାହୁନି ଉଠିଛି । ଶ୍ୱଶୁରଙ୍କଠାରୁ ଯାହାଦିନ ଚାଲେ ଯେଉଁ ଚିଠିଖଣ୍ଡି ପାଇ ଥରଥର କରି ଆଖି ପକାଇ ଶେଷ ଚାଲେ ଲୁଚାଇ

ଦେଇଥିଲା, ସେ ଖଣ୍ଡି ଖୋଲି ଆଜି ସକାଳେ ସେ ଭଲକରି ପିନ୍ଧିଲା । ଗ୍ରୁପ ଅବ ହ୍ରିକ, ସେମାନେ ଦୁଃଖରେ ଅଛନ୍ତି ।

ଚଟିଖଣ୍ଡି ଅଣ୍ଟାରେ ଖୋସି ନନ୍ଦକାକୁ ଦେଖାଇବ ବୋଲି ସେ ଆଣିଥିଲା । ସ୍ୱାମୀଙ୍କୁ ଦେଖାଇବାକୁ ଲାଜ ମାଡ଼ିଲା । ନନ୍ଦକାଙ୍କ ପାଖରେ ତା'ର ଲାଜସରମ ନାହିଁ । ସମସ୍ତଙ୍କର ସୁଖଦୁଃଖ ସେ ବୁଝନ୍ତି । ତାଙ୍କର ମନ ସହାନୁଭୂତିଶୀଳ ।

ଆଜି ତାଙ୍କର ମୁହଁକୁ ବୃଦ୍ଧିବାର୍ଷିକ ଗ୍ରୁପରେ ଛନକା ପଶିଲା । କାନରେ ବାଜି-ଯାଉଛି ଛୁଗୁଲି କଥା, ବୁଢ଼ୀଚମକୁ କିଛି ବାଧେ ନାହିଁ । ବୁଢ଼ୀ ଚମ ? ସେଇ ମୁହଁରେ ପୁଣି ସ୍ୱାମୀଙ୍କର ଗେଲ ? କୁଆଡ଼େ ଗଲେ ସେ କେତେବେଳୁ ?

ଲଳିତାର ଆଖିରେ ଅଜଣା ସନ୍ଦେହ ଭରିଲା । ଆଖି ପକାଇଲା ଅସଜଡ଼ା ଘରେ । ସ୍ନେହକରବା ମାନସରେ ପରଘରେ ପଶିଥିବା 'ମଣିଷର ଅସ୍ଥିରତା ଅନୁଭବ କଲା । ତରଙ୍ଗ ତରଙ୍ଗ ହୋଇ ପଦାକୁ ବୃଦ୍ଧିଲା, ନିଜେ ନିଜ ପାଖରେ ଲଜ୍ଜିତ ହେଲା ।

କାନରେ ଡକା ଶୁଭିଲା ନିଜ ବିବେକର ଭଲପଣିଆ, ସେ ତୋ ଅପାଟି, ସେହି ଭଲ ନାହିଁ, ଅଭିମାନ କରିବା ଉଚିତ ନୁହେଁ । ସବୁ ସନ୍ଦେହ କ୍ଷଣକରେ ମନରୁ ଝଡ଼ିଲା । ବିଛଣା ଟେକିଲା । ସଜାଡ଼ି ରଖିଲା । ଖୋଲି ହାରଟି ଥୋଇଲା ଟେବୁଲ ଉପରେ । ମୂଲ୍ୟବାନ୍ ପଥର ଝଟକୁଛି । ଏ ହାରଟି ଦିନେ ନନ୍ଦକା ତା' ବେକରେ ନାଇଦେଇ-ଥିଲା । ବାରମ୍ବାର ବେକରୁ ଖୁଗୁଲି ପଡ଼ିବାରୁ ନିଜେ ସେ ନନ୍ଦକାକୁ ଫେରାଇ ଦେଲା । ତାଙ୍କର ଅତି ଗୋରା ଦେହକୁ ଖାପ ମାନେ ।

ଘର ଓଲେଇ ପରିଷ୍କାର କଲା । ଆରେ, ଟିପସ୍ ତଳେ ଗୁବ ପେନ୍ଥାକ ପଡ଼ିଛି । ଅପା ଅତି ଅସାବଧାନ । ଏମିତି ସେ ଗୁବଗୁଡ଼ା ଯେଉଁଠି ପାରି ସେଠି ପକାଇ-ଦିଅନ୍ତି । ଅଣ୍ଟାରେ ଝୁଲାଇଲା । ଚୁପ୍ ଚୁପ୍ ଧରି ପଶିଲା ମଝି ଘରେ । ଅନ୍ଧାରିଆ ଘର ।

ଏଇ ଘରଟି ସବୁଠୁଁ ବଡ଼ । ରାସ୍ତା ପାଖକୁ ଦୁଇଟି ଓ ବାରି ଆଡ଼କୁ ଦୁଇଟି ଝରକା । ଦୁଇ ପାଖରେ ଦୁଇ କୋଠରୀକୁ ଦାଉଜା । ନନ୍ଦକା ରହିବା ଘର ଆଡ଼ର କବାଟ ଖୋଲା । ଲଳିତା ରହିବା ଘରଆଡ଼କୁ ଯେଉଁ ଯାଉଁଲା କବାଟ, ସେଥିରେ ଝୁଲୁଛି ବଡ଼ କୋଲପ । ସେ କୋଲପର ଗୁବ କେବେ ଖୋଲା ହେବାର ସେ ଦେଖି-ନାହିଁ । ସେଥିରେ ଲଳିତାର ନଜର କେବେ ପଡ଼ିନାହିଁ ।

ଏଇ ବଖରାଟି ଭଣ୍ଡାର ଘର । ଦୁଇପାଖରେ କାନ୍ଥ କଡ଼କୁ ଲାଗି ଚଉଡ଼ା ବେଞ୍ଚ ଉପରେ ବଡ଼ଗ୍ରେଟ କେତେ ଟ୍ରଙ୍କ, ସୁଟ୍‌କେସ୍, ରଖା ହୋଇଛି । ସେଥିରେ ଅଛି ଜାତଜାତକା ନୂଆ ପୁରୁଣା ଶାଢ଼ୀ, ସେମିଜ୍, ବ୍ଲାଉଜ, ଜାମା, କୁରୁତା । କାହିଁରେ ଅଛି ସୁନା ଗହଣା, ବାସନ କୁସନ । ସବୁ ଟ୍ରଙ୍କ ସେ ଅଦ୍ୟାପି ଦେଖିବାର ସୁଯୋଗ ପାଇନାହିଁ ।

କାନ୍ଥ କଣରେ ରଖା ହୋଇଛି ବଡ଼ ଲୁହା ବାକ୍ସ । କେତେଥର ସେ ନିଜେ ଫିଟାଇଛି । ଥାକଥାକ ହୋଇ କେତେ ଟଙ୍କାର ନୋଟ୍ ରଖା ହୋଇଛି, ସେ ଜାଣେ ନାହିଁ । ତା ଭିତରେ ରଖା ହୋଇଛି ଛୋଟ ଛୋଟ ଟିଣ ବାକ୍ସ । କାହିଁରେ ସୁନା ମୋହର ଭର୍ତ୍ତି, ଆଉ କାହିଁରେ ଦାମିକା ସୁନା ଗହଣା । କେତେ ଟଙ୍କାର ହେବ, କଳନା କରିବାର ଶକ୍ତି ତାର ନାହିଁ ।

ଦୀର୍ଘଶ୍ୱାସ ଛାଡ଼ିଲା । ଅଣ୍ଟାରେ ଖୋସା ହୋଇଥିବା ଶାଶୁଙ୍କର ଅତି କରୁଣ ଚିଠିଟି ତାକୁ କେଞ୍ଚିବାକୁ ଲାଗିଲା, ଶୁହିଁ ରହିଛ କଅଣ ? ଏଡ଼େ ବେଗି ସବୁକଥା ଭୁଲିଗଲ ? ତୁମର ବାପାଘରକୁ ଜମି ଦ'ମାଣ, ମୋଟେ ଟଙ୍କା ତିନିଶକୁ ବନ୍ଧା ପଡ଼ିଥିଲା । ମୋର ସବୁ ଗହଣା ବନ୍ଧା ପଡ଼ିଥିଲା ଦୁଇଶ ଟଙ୍କାକୁ । ସବୁ ତ ଜାଣ ଲଳିତା, ପେଟରେ ଓଦାକନା ଦେଇ କେତେଦିନ ଆଉ ଆମେ ଚଳିପାରିବୁଁ ?

ଅଣ୍ଟାରୁ ଚିଠି କାଢ଼ିଲା । ଟଙ୍କା କେଇଟା ଯେ, ଧାନଶୁଖା ହେଁସରୁ କାଉଖୁମ୍ପା ପରି ଖୁମ୍ପାଏ ଯିବ । ପାଞ୍ଚଶ ଟଙ୍କାରେ ଯେଉଁ ଗହଣା ଓ ଶାଢ଼ୀ ଶାଶୁ ଶ୍ୱଶୁର ଦେଇଥିଲେ, ସେତକ କେଉଁ ଟୁଙ୍ଗରେ ପଡ଼ିଛି ସେ ଜାଣେ ନାହିଁ । ଏ ଘରେ ଗୋଡ଼ ଦେଲା ଦିନ ନନ୍ଦିକା ସେ ସବୁ ଉତାରି ମୂଲ୍ୟବାନ ନୂଆ ଗହଣା ନାଇଦେଇଥିଲା ।

ଲଳିତାର ହାତର ଚିଠିମୁଠା ଅଣହଠିଲା ।

ସେ ଚୋରି କରିବ ? ଛି । ଏ ଘରେ ତାର କି ଅଧିକାର ଅଛି ? ଏ ଘରର ଘରଣୀ ହୋଇ ସେ ଆସିନାହିଁ, ସେ ଆସିଛି ନନ୍ଦିକାର ପରିଚାରିକା ହୋଇ, କେଜାଣିବା ଖେଳଣା ହୋଇ । କଣ୍ଢେଇକୁ ସଜାଇଲା ପରି ନନ୍ଦିକା ତାକୁ ସଜାଇ ଦେବ । ନିଜେ ନେଇ ଛାଡ଼ିବ ତା'ର ସ୍ୱାମୀ ପାଖରେ । ପୁଣି, ସ୍ୱାମୀ ଅବାଧ ହେଲେ ତାଙ୍କର ହାତ ଧରି ଲଳିତାର ଘରେ ଛାଡ଼ିବ । ସମସ୍ତେ ତାର ହାତର ଖେଳଣା ।

ସେ ସମସ୍ତଙ୍କର ହାତଟେକାରେ । ସବୁ ତୋର, କାହିଁରେ ତୁ ହାତ ଦେବୁ ନାହିଁ ।

ଲଳିତା ତରତର କରି ଘର ଓଲେଇଲା । ମନ୍ଦିଘରେ ଚାକରବାକର, ଏପରି କି ଅତି ବିଶ୍ୱାସୀ ଜନ ବି କେବେ ପଶନ୍ତି ନାହିଁ । ଏ ଘର ଓଳାଓଳି ସଜଡ଼ାସଜଡ଼ି କରେ ନିଜେ ନନ୍ଦିକା । କେବେ କେମିତି ସେ କହିଲେ, ଲଳିତା ସେତକ କରେ । ଆଜି ନିଜ ମନକୁ ସେ କରୁଛି ।

କାଚକବାଟଲଗା ଆଲମାରି ଦୁଇଟି ଦୁଇ ଭାଇ ପରି ଏକା ଧାଡ଼ିରେ ପୂର୍ବପଟ କାନ୍ଥ ଆଡ଼କୁ ପଛକରି ଠିଆ ହୋଇଛନ୍ତି । ତଳ ଥାକମାନଙ୍କରେ ଲୁଗାପଟା, ଆଳକୁଟ । ଉପର ଥାକଗୁଡ଼ିକ ଉପରେ ରଖାଯାଇଛି ନାନାଜାତିକା ଖେଳଣା—ମଣିଷ, ଯୁଗଳ ମୂର୍ତ୍ତି, ବାଘ, ଭାଲୁ, କୁମ୍ଭୀର, କଳ ଖେଳଣା—ମଟରଗାଡ଼ି, ଉଡ଼ାଜାହାଜ । କଡ଼ ଆଲମାରିର ଉପର ଥାକରେ ଲୁଗାଜାମା ପିନ୍ଧି ବସିଛନ୍ତି ଦୁଇଟି ଶିଶୁ, ଚାରିପାଞ୍ଚ ମାସର ପିଲା ଦୁଇଟି ପରି । ଗାଲ ପାଉଁଶ । ପୁଅଟିଏ, ଝିଅଟିଏ ।

ଲଳିତା ଚାହିଁ ରହିଲା ।

ତାଲାପଡ଼ା ଯାଉଁଳି କବାଟ ! ଆଉ ଘରେ ଲଳିତା ରହେ । କାହା ପାଇଁ ପଡ଼ିଛି ଏ ତାଲା ? ଲଳିତା ଅନୁଭବ କଲା, କେବଳ ତା'ଆରି ପାଇଁ । ଏତେ ଅବିଶ୍ୱାସ ? ତେବେ, ଏ ଘରର ସେ କିଏ ? ଖାଇବା, ପିନ୍ଧିବା, ପଦେ ମିଠା କଥା ଶୁଣିବାଛଡ଼ା ଏ ଘରେ ତାର ଆଉ କାହିଁରେ ଅଧିକାର ନାହିଁ । ସେ ଏହା ସହିପାରିବ ନାହିଁ । ଅବଶ୍ୟ ସେ ତାଲା ଖୋଲିଦେବ ।

ଚାବି ପେଣ୍ଡାକ ଧରି ଗୋଟି ଗୋଟି କରି ଚାବି ତାଲାରେ ଲଗାଇଲା । ହେଲା ନାହିଁ । ଖୋଲିଲା ନାହିଁ । ତାଲାର ଚାବି ନନ୍ଦିକା ନିଜେ କେଉଁଠି ଲୁଚାଇ ରଖିଛନ୍ତି ପରା ! ଏତେ ଅବିଶ୍ୱାସ ! ତାଙ୍କର ସବୁ ସ୍ନେହ, ସବୁ ସରାଗ କେବଳ ଲୋକଦେଖାଣି !

ଲଳିତାର ଆଖିରୁ ଲୁହ ଗଡ଼ିଲା ।

ଓଦା ଲୁଗା ପିନ୍ଧି ନନ୍ଦିକା ଘରେ ପଶିଲା ।

ଲଳିତା ତରତର ହୋଇ ଘୁଞ୍ଚିଆସିଲା । ଆଖିରୁ ଲୁହ ପୋଛିବାକୁ ତାକୁ ତର ମିଳିଲା ନାହିଁ ।

ନନ୍ଦିକା ମୁହୂର୍ତ୍ତେ ତା ଆଖିକୁ ଚାହିଁଲା । ଲଳିତାର ମନର କଥା ସେ ବୁଝିଲା । ତା'ର ହାତଟି ଧରି କହିଲା, ତୋ ଆଖିରେ ଲୁହ ଯେ ?

ତମେ ଚାବିଟା ପକାଇ ଦେଇ ଯାଇଥିଲ ଅପା, ନିଅ ।

ଘୃଣାରେ ନନ୍ଦିକାର ନାକ ଫୁଲିଫୁଲି ଉଠିଲା । ଲଳିତାର ହାତ ଛାଡ଼ି ସେ କହିଲା, ମୋର କି ଚାବି ଲୋ ? ଏତେ ବଡ଼ ବୋଝ ବୋହିବାକୁ ଆଉ ମୋର ବଳ-ବୟସ କି ଶକ୍ତିସାମର୍ଥ୍ୟ ନାହିଁ । ସେ ଚାବି ତୋର, ତୁ ଏଥର ସେଇଟା ରଖ ।

ଲଳିତାର ଆଖିରେ ଭୟ । ଡରିଲା ଥରିଲା ସ୍ୱରରେ ପଚାରିଲା, ଏ କି କଥା କହୁଚ ଅପା ?

ଠିକ୍ କହୁଚ । ମୋ ମନରେ ଦୁଃଖ ନାହିଁ । କାହା ପାଇଁ ମୋର ଏ ବୋଝ ? ବୁଝିପାରୁନ ? ତୋ'ର ପାଇଁ । ତୋ ପେଟରୁ ମୋର ଯେଉଁ ପିଲାଟି ଦିନେ ଆସିବ, ତାଆର ପାଇଁ । ତୁଭ ତ ସବୁକଥା ଏବେ ଶିଖିଲୁଣି, ସବୁ ଘରକରଣା ଜାଣିଲୁଣି, ମୁଁ କାହିଁକି ଏ ବୋଝ ବୋହିବି ? ଏଣିକି ଏ ଚାବି ତୁ ରଖ । ତୁ ସବୁ କାରବାର କର । ମୁଁ ନିଶ୍ଚିନ୍ତ ହେବି ଲଳିତା, ଜଞ୍ଜାଳରୁ ମୁକ୍ତ ହେବି । ତୁ ମୋର ସୁନା ଭଉଣୀଟି, ସାନ ଭଉଣୀଟି, ମରଣ ମୁହଁରୁ ମତେ ବଞ୍ଚାଇଲୁ, ମୋତେ ଏ ଜଞ୍ଜାଳରୁ ବି ବଞ୍ଚାଇଦେ ।

ନନ୍ଦିକା କବାଟକୁ ଅନେଇଲା । କଡ଼ା ଦେହରେ ତାଲାଟା ଓଲଟିଛି । ଘଣ୍ଟାଏଟି ସେ ବୁଝିଲା କହିଲା, ତୋ' ଉପରେ ଅବିଶ୍ୱାସ କରି ସେ ତାଲା ମୁଁ ପକାଇନାହିଁ ଲୋ ଓଲମୀ, ମୋ ନିଜ ଉପରେ ଅବିଶ୍ୱାସ କରି ମୁଁ ସେ ତାଲା ପକାଇଛି । ତାଲାର ଚାବି ଅଛି ସାତତାଲ ପଙ୍କତଳେ, ଫଣ୍ଡୁଆ ଭିତରେ ଦେଖିବୁ ?

ଉତ୍ତେଜିତ ହୋଇ ନନ୍ଦିକା ଲଳିତାର ହାତରୁ ଚାବିମୁଠାକ ଟାଣିନେଲା । ଆଲମାରୀ ଖୋଲି ଟିଣବାକ୍ସରୁ ଗ୍ରେଟ ଚାବିଟିଏ ସେ କାଢ଼ିଲା । ସେଥିରେ ଟ୍ରଙ୍କ୍ ଖୋଲି ତା ଭିତରେ ଥିବା ଛୋଟ ଚମଡ଼ା ସୁଟ୍‌କେସ୍ ଖୋଲିଲା ସେଇ ଗ୍ରେଟ ଚାବିରେ । ସୁଟ୍‌କେଶ ଭିତରେ ବଡ଼ତାଲାର ଚାବି ଅଛି !

ଏବେ ସେ ତାଲା ଖୋଲିବି ଲୋ ଲଳିତା, ଏଇ ଦେଖ୍—

ତାଲା ଖୋଲି କବାଟ ଠିଆମେଲା କଲା । ସେପାଖେ ଲଳିତାର କୋଠରୀ, ଏପାଖେ ନନ୍ଦିକାର ।

ଝରଝର ଆଖିରେ ଲଳିତାର ହାତ ଧରି ନନ୍ଦିକା କହିଲା, ତୋ ଉପରେ ମୋର ଅବିଶ୍ୱାସ ନାହିଁଲୋ ପାଗଳୀ, ମୋ ନିଜର ଦୁର୍ବଳତା ଉପରେ ମୋର ଅବିଶ୍ୱାସ । ପିଲାଲୋକ ତୁ, ମୋ ମନର କଥା ବୁଝିପାରିବୁ ନାହିଁ । ତତେ ବୁଝାଇ କହିବାକୁ ମୋର ସାହସ, କି ଧୈର୍ଯ୍ୟ ନାହିଁ । ନେ ଏ ତାଲାର ଚାବି । ଭିତର ପାଖରୁ ଏଇ କବାଟରେ ସେ ତାଲାକୁ ପକାଇ ଦେ । ତୁ ନିଶ୍ଚିନ୍ତ ହେବୁ, ମୁଁ ବି ଆଉ ମୋ ଭିତରେ ନିଜ ସଙ୍ଗେ ଲଢ଼ିବି ନାହିଁ । ଏବେ ହେଲା ତ ?

ନନ୍ଦିକା ନିଜ କୋଠରୀକୁ ଆସିଲା । ର୍‍ୟାକ୍‌ରୁ ଟାଣିଆଣିଲା ଶୁଖିଲା ଶାଢ଼ୀ । ସେ ରହୁଥିବା କୋଠରୀଆଡ଼କୁ ଲାଗିଥିବା ଯାଉଁଳି କବାଟ ଟାଣି ଜଞ୍ଜିର ଲଗାଇଲା ।

ଲଳିତା ବାବା ହୋଇ ଠିଆ ହୋଇ ରହିଲା । ସେ ଅନୁଭବ କଲା ଯେ ସେ ଗୋଟାଏ ଅକ୍ଷମଣୀୟ ଅପରାଧ କରିପକାଇଛି । ଅତୁର ହୋଇ ସେ କବାଟରେ ହାତ ମାରି କାନ୍ଦୁରି ସ୍ୱରରେ ଡକା ଛାଡ଼ିଲା, ଅପା, ଅପା, ଅପା— !

ଉତ୍ତର ନ ପାଇ ବାଇଆଣୀ ପରି ବାରଣ୍ଡାବାଟେ ଆଗ କୋଠରୀକୁ ଦେ ଛୁଟି-ଆସିଲା । ଦେଖିଲା, ନନ୍ଦକା ଲୁଗା ପାଲଟି ଚିରୁଣୀ ଧରି ମୁଣ୍ଡ କୁଣ୍ଡାଉଛି । ତାର ଦୁଇ ଆଖିରୁ ଦ'ଧାର ଲୁହ ଗଡ଼ିପଡ଼ୁଛି ।

ଲଳିତା ନଇଁପଡ଼ି, ନନ୍ଦକାର ଦୁଇ ପାଦ୍ୱୟର ଉପରେ ମଥା ଲଗାଇଲା । କଇଁ କଇଁ ହୋଇ କାନ୍ଦିଉଠିଲା । ତାର ଅମାନିଆ ଲୁହ ନନ୍ଦକାର ପାଦ ପଖାଳିଲା ।

ନନ୍ଦକା ଚିରୁଣୀ ରଖି ତାର ହାତ ଧରି ଟାଣି ଉଠାଇଲା । ପଲଙ୍କ ଉପରେ ପାଖରେ ବସାଇଲା । ଲଳିତାର ଆଖିରୁ ଲୁହ ପୋଛିଲା । କଅଁଳେଇ କହିଲା, ତୋ ଆଖିରେ ଲୁହ ଦେଖିବ ନାହିଁ ବୋଲି ମୋର ସବୁ ପ୍ରତିଜ୍ଞା ସବୁ ତପସ୍ୟା ଆଜି ପଣ୍ଡ ହୋଇଛି ଲଳିତା, ତୋ ମନର ଛପିଲା ସନ୍ଦେହ ଆଜି ମତେ କନ୍ଦାଇଛି । ମୋ ଉପରୁ ତୋର ବିଶ୍ୱାସ ତୁଟିଛି, ଏଇ କଥା ଛୁଆବେଳକୁ ଛାତି ମୋର କରତ ହେଉଛି । ଏଇଥିପାଇଁ ମତେ ତୁ ଅପା ବୋଲି ସମ୍ମାନ ଦେଉ ? ଏଇଥିପାଇଁ ତୋ ଅପାକୁ ତୁ ଯମ ହାତରୁ ଟାଣିଆଣିଥିଲୁ ? ଛାଡ଼ିଦେଇଥିଲେ ତତେ ଆଶୀର୍ବାଦ କରି ହସି ହସି ମୁଁ ଚାଲିଯାଇଥାନ୍ତି ।

ଦୋଷ କ୍ଷମାକର ଅପା, ମୋ ମନର କଥା ମୁଁ ତମକୁ କହି ପାରିନାହିଁ । କହିବାକୁ ମତେ ବେଳ ଦେଲ ନାହିଁ । ମଝି କବାଟରେ ଏତେ ମୁଠାଏ ତାଲା ଯଦି ପଡ଼ି ନ ଥାନ୍ତା, ମୋ ଅପା ହେମାଳିଆ ତଳଟାରେ ଘରରେ ଶୋଇ କାନ୍ଦି କାନ୍ଦି ଆଖି ଫୁଲାଇ ନ ଥାନ୍ତା । ମୁଁ ଏହା କେବେ କରାଇ ଦେଇ ନ ଥାନ୍ତି ।

ଲଳିତା ଅଶଲ ପାଦରେ ଉଠିଗଲା । ମଝି କବାଟର ଶିକୁଳି ଖୋଲିଲା । ପାଖକୁ ଆସି ପୁଣି ବସିଲା ନନ୍ଦକା ନିକଟରେ । କହିଲା, ଏ କବାଟ ଏମିତି ଖୋଲା ରହିବ ଅପା, ମୋ ମନରେ ଯେଉଁ ସନ୍ଦେହ ତମେ ରୋପିଛ, ସେ ସନ୍ଦେହ ସତ ହେବ । ତମେ ମତେ ତମର ସର୍ବସ୍ୱ ଦେଇଛ । ମୁଁ ତମର ଖେଳବସର ଟିକି ଭଉଣୀଟି, ନିଜକୁ ତମର ଗୋଡ଼ତଳେ ଅରପି ଦେଉଛି । ତମର ଗୋଡ଼ ଧରୁଛି, ନେହୁରା ହୋଇ ମିନତି କରୁଛି, ଅପା, ତମେ ଆଉ ମତେ ହତାଶ କରନାହିଁ । ତମେ ମୋତେ ଗ୍ରହଣ କର, ମୋ ସାଥିରେ ତମ ଅରପିଲା ସର୍ବସ୍ୱକୁ ତମେ ତୁମର କର । ବାହାରେ ହସି, ଭିତରେ କାନ୍ଦି ଦୂରେଇ ଦିଅ ନାହିଁ । ଅପା, ଅପା—

ଲଳିତା ଢଳିପଡ଼ୁଣୁ ନନ୍ଦକା ତାକୁ ଛାତି ଉପରକୁ ଓଟାରିନେଲା । ପିଠି ଆଉଁସି କହିଲା, ଛି, ଏ କି କଥା କହୁଛୁ ଲୋ, ତୁ ମୋର ସାନ ଭଉଣୀଟା, ତୁ ହେବୁ ମୋର ସଉତୁଣୀ ?

ଅପା, ମତେ ହସାଇବାକୁ ଚେଷ୍ଟା କରି ତମେ କେବଳ କାନ୍ଦୁଥିବ, ମୁଁ ଏହା ସହିପାରୁନାହିଁ । ତମର ଆଖିର ଲୁହର ଭାଗ ମୁଁ ନେବି । ତମର ମୁଁ ସଉତୁଣୀ ହେବି

ପଛେ, ଅବାଧ ହେବ ନାହିଁ । ତମେ ଆଗ । ତମର ପଦସେବା କରିବା ମୋର ଧର୍ମ, ମୋର କର୍ତ୍ତବ୍ୟ । ମୋର କର୍ତ୍ତବ୍ୟ ମତେ କରିବାକୁ ଦିଅ ।

ଲଳିତା, ଚାହିଁଲୁ ମୋ ମୁହଁକୁ ।

ଲଳିତା ମୁହଁ ଟେକିଲା । ଆଖିରେ ଲୁହ ।

ନନ୍ଦିକା ଭାବିଲା, ଏଇ ପିଲାଟା ଅଳି କରୁଛି, ମୋର ସହଚରୁଣୀ ହେବ ? ଅସମ୍ଭବ; ଦୁନିଆରେ ଚହଲ ପଡ଼ିବ । ନା, ନା ।

ନନ୍ଦିକା ଦୁଇ ହାତରେ ଲଳିତାର ମୁହଁ ଟେକି ଧରିଲା । କୋଳେ କଲା । ଆଖିରେ ଲୋତକ ଭରି କହିଲା, ତୋ'ର କଥା ହେଉ ଲୋ ଲଳିତା, ଏ କବାଟ ସେମିତି ଖୋଲା ରହୁ । ଡାଳଟା ସେ ଥିଲା ମୋ ଦୁର୍ବଳତାର ଜଗୁଆଳ । ଡାଳଟା ଯାଉ । ତୋ ଅପା ବଞ୍ଚିଥିବାଯାଏ ସେ ତୋର ଅପା ହିଁ ରହିବ, ସହଚରୁଣୀ କେବେ ହେବ ନାହିଁ । ତୋ ଅପାର ଆଖିରେ ଆଉ କେବେ ବି ଲୁହ ଦେଖିବୁ ନାହିଁ ।

ଲଳିତା ହସିଲା । ଗୁଡ଼ିଏ ମୁଠିକ ବଢ଼ାଇ ଦେଇ କହିଲା, ନିଅ ଅପା, ତମେ ଆଉଣୁ ମୁଁ କାହିଁକି ଇଆର ବୋଝ ବୋହିବ ?

ନନ୍ଦିକା ଚୁପ ନେଲା । କହିଲା, ଖେଳିବାର ବୟସ ତୋର ଯାଇନାହିଁ, ମୁଁ ଥାଉଣୁ କାହିଁକି ସତେ ଏ ଜଞ୍ଜାଳର ବୋଝ ବି ବୋହିବୁ ? ସବୁ ମୁଁ ତୋ'ର ପାଇଁ ସାଇତି ରଖିଛି । ଅନା ସେ ଆଲମାରୀକୁ । କେମିତି ସୁନ୍ଦର ପୁଅ ଓ ଝିଅ ସଜେଇ ରଖିଛି । କଣ୍ଢେଇ ଖେଳାଇ ବେଳ କାଟିବାକୁ ମୋର ମନ ଆଉ ହେଉ ନାହିଁ । ରକ୍ତମାଂସର କଣ୍ଢେଇ ଗଢ଼ି ବି ମୋ କୋଳରେ ଦେବୁ ଲଳିତା, ତାଙ୍କର ଭବିଷ୍ୟତ ପାଇଁ ଏ ବୋଝ ମୁଁ ବୋହୁଛି ।

ଲଳିତା ମୁହଁ ତଳକୁ କଲା ।

ସେ କୁଆଡ଼େ ଗଲେ ?

ଜାଣେ ନାହିଁ ।

ତାଙ୍କ ପାଇଁ ଜଳଖିଆ କରିଛୁ ?

ଯାଉଛି ।

ବର୍ତ୍ତେ ଯିବା ଚାଲ । ଅଜି ତାଙ୍କୁ କଥା କହିବା ନାହିଁ । ପାହାନ୍ତାରୁ ଉଠି ପଳାଇବାର ମଜା ଦେଖିବା, ରହ । ହେଲା ତ ?

ହସି ହସି ଲଳିତା ମୁଣ୍ଡ ହଲାଇ ହଁ ଭରିଲା । ତାର ପ୍ରଫୁଲ୍ଲ ମୁହଁକୁ ଚାହିଁ ଚାହିଁ ନନ୍ଦିକା ତନ୍ମୟ ହେଲା । ନନ୍ଦିକା ନିଜକୁ ଭୁଲିଲା । ନଅ ବର୍ଷର ଝିଅଟିଏ ସେ ଲଳିତା,

ଶୋଭା ଅପାଙ୍କ ସଙ୍ଗେ ନନ୍ଦିକାର ବୋଉପଣିଆ ଦେଖିବାକୁ ଆସିଛୁ କି ? ସେମିତି ସେ ବସିଛୁ । ଲଳିତାକୁ ଆଲିଙ୍ଗନ କରି ତାର ମୁଣ୍ଡଟିକୁ କାନ୍ଧ ଉପରକୁ ନୁଆଇଦେଲା, ପ୍ରତ୍ୟେକ ବିଅଟି ଦେହକୁ ମିଶାଇ ସେ ଏକାକାର କରିବ ।

ସୁନନ୍ଦ କିଛି ବୁଝିପାରିଲା ନାହିଁ ।

ତାହାର ଭଉଣୀ କଥା ବାହାରୁନାହିଁ । ବିହେଁ କେବଳ ହସୁଛନ୍ତି । ପରସ୍ପରର ମୁହଁକୁ ଅନାଇଁ ଆଖିରେ କଥା ଭାଷା ହେଉଛନ୍ତି । ସେ ଜଣେ କିଛି ପଚାରିଲେ ଲଳିତା ମୁହଁକୁ ନନ୍ଦିକାର ମୁହଁକୁ, କହୁନ ? ହସି ହସି ନନ୍ଦିକା ଉତ୍ତର ଦେଉଛି, ତୁ କହ ।

ବିହେଁ ଚୁପ୍ ।

କିଛି ନ ବୁଝି ସୁନନ୍ଦ ବି ହସୁଛି । ବିହେଁ ଆଜି ଶପଥ କରିଛନ୍ତି ପରା, କଥା କହିବେ ନାହିଁ ।

ସୁନନ୍ଦର ସକାଳ ଧୂପ ସରିଲା । ଟେବୁଲ ଉପରେ କାଚ ଗ୍ଲାସଟି ରଖି ସେ ପଦାକୁ ଯାଇ ହାତ ଧୋଇଲା । ତଉଲିଆରେ ହାତ ପୋଛି ଘର ଭିତରକୁ ଆସିଲା, ଲଳିତା ଟେବୁଲ ଉପର ସଫା କରୁଛି । ନନ୍ଦିକା ର୍ୟାକ୍‌ରେ ଲୁଗା, ଜାମା, ଶାଢ଼ୀ ସଜାଇ ରଖୁଛି ।

ସୁନନ୍ଦ ଚଉକି ଟାଣି ବସିଲା । କାନ୍ଥଘଣ୍ଟାକୁ ଚାହିଁ ଦେଖିଲା, ଦଶଟା ବାଜିବ । ମେଘୁଆ ପାଗ । ଏବେ ରାତି ପାହିଲା ପରି ଲାଗୁଛି । ନନ୍ଦିକା ଓ ଲଳିତା ମଝିଘର ବାଟେ ଆର ଘରକୁ ଗଲେ । ସୁନନ୍ଦ ଦେଖିଲା, ମଝିଘରର ଦୁଇପାଟ କବାଟ ଖୋଲା । କିଏ ଖୋଲିଲା, କାହିଁକି ଖୋଲିଲା ସେ ଅନୁମାନ କରିପାରିଲା ନାହିଁ ।

ଡାକିଲା, ନନ୍ଦିକା !

ତୁ ଯା ଲଳିତା, ମୁଁ ଯାଏ ରୋଷେଇଘରକୁ ।

ଲଳିତା !

ତମେ ଯାଅ ଅପା, ମୁଁ ଆଜି ରାନ୍ଧିବ ।

ଶୁଣ ମ ।

ନନ୍ଦିକା କହିଲା, ବିହେଁ ଯିବା ଚାଲ ।

ଲଳିତାର ହାତ ଧରି ନନ୍ଦିକା ଆସିଲା ଲଳିତାର କୋଠରୀକୁ । ବିହେଁ ସୁନନ୍ଦର ଆଗରେ ଠିଆହେଲେ । ସୁନନ୍ଦର ଦୃଷ୍ଟି ଡେଇଁଲା ଜଣକ ମୁହଁରୁ ଆର ଜଣକର ମୁହଁକୁ । ବିହେଁ ଗମ୍ଭୀର । ଦୃଷ୍ଟି ତଉଲୁଛି ପରା, କିଏ ଅଧିକ ସୁନ୍ଦର ?

ଲଳିତା ହସିଲା ଲାଜରେ ହୋଇ ନନ୍ଦିକାର କାନ୍ଧରେ ମୁଣ୍ଡ ନୋଇଁଲା । କହିଲା, କଅଣ ସେ ଦେଖୁଛନ୍ତି ବା ?

ନନ୍ଦିକା କହିଲା, ପଚାରୁନୁ ତୁ ?

ଲଳିତା କହିଲା, ତମେ ପଚାର ।

ସୁନନ୍ଦ ପଚାରିଲା, ମନ୍ଦିଘର କବାଟର ତାଲା କିଏ ଖୋଲିଲା ?

କହୁନା ଅପା, ମୁଁ ଖୋଲିଲି ।

ତୁ କହୁନୁ, ମୁଁ ଖୋଲିଲି ।

ହୁଁ, ବୁଝିଲି ।

ଦୁହେଁ ହସିଉଠିଲେ । ଦୁହିଁଙ୍କର ହସ ସୁନନ୍ଦର ମନକୁ କୁରୁକୁରୁ କଲା । ହସ ଚାପି ସୁନନ୍ଦ କହିଲା ଗମ୍ଭୀର ହୋଇ, ମୁଁ ଆଜି କଟକ ଯିବି । ଉପରଓଳି ବର୍ଷା ହେବା ପରି ଲାଗୁଛି । ଏଇବେଳେ ଚାଲିଗଲେ ଭଲ ହେବ ।

ଅପା, କାଲି ଏତେବେଳକୁ ତ ସେ ଆସି ନ ଥିଲେ ?

ଦିନ ଗଣିଲେ ଦି ଦିନ ମିଳୁଛି, ରାତି ଗଣିଲେ ଗୋଟିଏ ।

ଶୁଣ, ଅତି ଜରୁରୀ କାମ ପଡ଼ି ଆସିଛି । ଏଇକ୍ଷଣି ମନେ ପଡ଼ିଲା । ଯିବାକୁ ହିଁ ହେବ ।

ଆଲୋ ଲଳିତା, ଗୁଡ଼ପାଗରେ ପିମ୍ପୁଡ଼ି ଲାଗିଥିବ । ରାଜୀବ ଝାଡ଼ିବାକୁ ଡରୁଥିବ । ହେଲେ, ଗାଆଁକୁ ଆସିବା ଆଗରୁ ସେ ଜରୁରୀ କାମଟା ମନେ ପଡ଼ିଥିଲେ ଦିନକ ପାଇଁ ଝାଳନାଳ ହୋଇ ଏତେ କଷ୍ଟ ସହି ଉଦୁଉଦିଆ ଦି'ପହରେ ଧାଇଁ ଆସିବା ଦରକାର ପଡ଼ି ନ ଥାନ୍ତା ।

କାହାକୁ କଣ୍ଟା ଦେଇ ଆସିଥିବେ ମ, ଅପା !

ହଁ ଲୋ ବେପାରୀ ମଣିଷ, କଣ୍ଟା ଦିଅନ୍ତି, କଣ୍ଟା ବି ଦିଅନ୍ତି । ସେଥିପାଇଁ ଘରେ ମନ ଲାଗେ ନାହିଁ । ରାତିକୁ ଦିହେ ରାତି ଅଧ ହୁଏ ।

ସୁନନ୍ଦ ହସିଲା । ନନ୍ଦିକା ଓ ଲଳିତା ପରସ୍ପରର ମୁହଁକୁ ଚାହିଁ ହସୁଛନ୍ତି । କଣେଇଁ ଚାହୁଁଛନ୍ତି ତାକୁ । ମନେହେଲା, ଦୁନିଆଟା ଆଜି ହଠାତ୍ କିପରି ବଦଳି ଯାଇଛି । ଦୁହେଁ ଏକାଠି ହୋଇ ଆଗରୁ [illegible] ତାକୁ ପରିହାସ କରିବାକୁ ପଣ କରିଛନ୍ତି । ଦୁହିଁଙ୍କଠାରେ ଏପରି ଢଙ୍ଗ ଆଜି ସେ ନୂଆ ଦେଖୁଛି ।

କିଛିକ୍ଷଣ ସୁନନ୍ଦ ମୁହଁ ଗମ୍ଭୀର କଲା । ଉଠି ଠିଆ ହେଲା । ଖଟବାଡ଼ ଉପରୁ ଗେଞ୍ଜିଟି ନେଇ ଦେହରେ ଗଳାଇଲା । କାମିଜଟି ହାତରେ ଧରି ବଡ଼ ଅଇନା ଆଗରେ ଠିଆହେଲା । ନିଜର ପ୍ରତିବିମ୍ବକୁ ଅନାଇ କହିଲା, ଶୁଣ, ସେମାନେ ହେଲେ ଦୁଇଜଣ

ମୁଁ ଥିଲି ଏକା । ଏବେ ଆମେ ହେଲୁ ଦୁଇଜଣ । ଘୋଡ଼ାକୁ ଘୋଡ଼ା ସଙ୍ଗ ନୁହେଁ । ଶୁଣ ମୋର କା, ସୁନନ୍ଦକୁ କେହି କଥା କହୁନାହାନ୍ତି । ସେ ଏବେ କଟକ ଯାଉଛି । ତମେ ତାଙ୍କୁ କହିଦେବ, ମୋ'ର କା' !

ଅପା ମ, ଆମେ ସେମିତି ଗୃଶଟା ହେବା ଆମ ।

ଲଳିତା ନନ୍ଦିକାର ହାତ ଧରି ସୁନନ୍ଦ ପଛରେ ଠିଆହେଲା । ଏପାଖେ ନନ୍ଦିକା ସେପାଖେ ଲଳିତା । ବୁଦ୍ଧିଙ୍କ ମନ୍ଦିରେ ଆଗରେ ଠିଆ ହୋଇଛି ସୁନନ୍ଦ । ତିନୋଟି ରୂପର ହସିଲା ପ୍ରତିଛବି । ତିନୋଟି ଦେହ ଆଇନା ଭିତରେ ଲଗାଲଗି ହୋଇ ଗୋଟାଏ ହୋଇଛି, ଆଉ ସେଇ ଗୋଟାଏ ଦେହର ତିନୋଟି ମୁଣ୍ଡ !

ଘଇତା ପଛେ ମରୁ, ସଉତୁଣୀ ରାଣ୍ଡ ହେଉ, କେଉଁ ଯୁଗ କେଉଁ କାଳରୁ ଗଢ଼ିଆସୁଛି ଏହି ବଚନ ତୁଣ୍ଡରୁ ତୁଣ୍ଡ ।

ଜଣକର ଦୁଇଟି ପତ୍ନୀ, ଏ ଖବର ପାଇଲେ, ଅନ୍ୟର ମନରେ ଉଚ୍ଛଳ ଚଞ୍ଚଳ ହୁଏ କୁତୂହଳ ପ୍ରବଣ ହୁଏ ମନ । ଅନୁସନ୍ଧାନ କରି ଜାଣିବାକୁ ଆଗ୍ରହ ହୁଏ ।

ରାଗ ରୋଷ, କଚଡ଼ା ଫୋପଡ଼ା, ବାକ୍‌ବିତଣ୍ଡା, ଚୁଟି ଧରାଧରି । ଦେଖା ମୁହଁ । ଅନ୍ୟର ମଜା ଦେଖିବାକୁ ଆଗ୍ରହ, କିନ୍ତୁ ଦେଖାଇହେବା ଦୁଃଖ ଓ ସହାନୁଭୂତିର ଯା-ଲାଗିଯା-ଯା ଛୁଉଁଯା କଥା । ପଛରେ ବିଦ୍ରୂପ, ଥଟ୍ଟା ତାମସା । ଆଜି, ପୁଣି ଏ ପାଖେ, ଯା ମୁହଁରେ ଲକ୍ଷ୍ମୀର ପ୍ରଶଂସା ତ କାଲି ପୁଣି ସେ ପାଖେ, ତା ମୁହଁରେ ଲକ୍ଷ୍ମୀଟା ଉଦ୍ଧତ, ଏତତ୍ ମେଘର ହୁଏ, ସରସ୍ୱତୀଟି ଭଲ । ମୁହଁ ବୁଲାଇଲେ ସରସ୍ୱତୀ ହୁଏ ସ୍ୱରୂପା, ଅଲସୋଇ, ଗରବୀ । ପୁଣି କେବେ, କି ଶୋଭା ଦିଶୁଛନ୍ତି ଗୋ, ଲକ୍ଷ୍ମୀ ସରସ୍ୱତୀ ପରି ।

ନନ୍ଦିକା ଏହା ଜାଣେ । ଲଳିତା ବି ଜାଣେ । ମା ଖୁଡ଼ୋଇ, ଗାଆଁର ଆଈ ଆଉ ମାଉସୀମାନଙ୍କର କଥା, ଟାହି ଟାପରା, ହସ ତାମସା କାନରେ ବାଜୁଛି । ଦୁଇଜଣଙ୍କର ଭଜଆ ଦେଖିଲେ ତୁଣ୍ଡରୁ ବାହାରେ, ଦେଖ ମ, ଦୁଇ ସଉତୁଣୀଙ୍କ ପରି ଲାଗିଛୁ ଝଁଟାପଟା ଭଜଆ, ଧରାପରା । ଲୋକେ ନଖ ଘଷୁଛନ୍ତି ।

କାନରେ ବାଜୁଛି, ଆହା, ବିଚରା ନରସିଂହଟି, ଘର ଘରକଥା ହେବ କାଠପାଷାଣ ପାଲଟିଗଲାଣି । କଅଣ ସେ କରିବ ? ଏକ ପରିକା ଦୁଇଟି ଶାଢ଼ୀ, ଦୁଇଟି ଗହଣା ସିନା ଆଣିଛୁ, ଏକା ସଙ୍ଗରେ ସିନା ଦେବ, କାହାକୁ ଦେବ କେଉଁ ହାତରେ, କାହା ମୁହଁକୁ ଆଗ ଚାହିଁବ ? କାହାକୁ ଆଗ କଥା କହିବ ? ମନ୍ଦିରେ ଖଟ ପକାଇ, କି ବୁଦ୍ଧିଙ୍କ ମନ୍ଦିରେ ବଢ଼ିଣା ପାଇଁ, ଡାହାଣକୁ କଏ, ଦାଆଁକୁ କଏ ?

ମନ୍ଦିରମାନେ କ୍ରନ୍ଦନ କରନ୍ତି । ହତାଶ ହୋଇ ଫେରନ୍ତି ସୁନନ୍ଦ ଘରୁ । ସେ ଘରେ ସନ୍ତରୁଣୀ ନାହିଁ । ନନ୍ଦିକା ମାଆ, ବଡ଼ ଜା, କି ବଡ଼ ଭଉଣୀ । ସେମାନେ ବି ଏମିତି ନିର୍ଲୋଭ ହେବେ ନାହିଁ ଗୋ, ସାତ ବରଷର ଝିଅ ପରି କଏ ସେ ନ ସନ୍ତରୁଣୀକୁ କୋଳକୁ ଆଉଜାଇ ନିଜ ହାତରେ ଖୋଇଦେବ ?

ପୁଣି ଶୁଣିବ ? ସାନ ନଣନ୍ଦ ପରି ଲଳିତାର ମୁଣ୍ଡ କୁଣ୍ଡେଇ, ମଥାରେ ସିନ୍ଦୂର ଆଖିରେ କଜଳ, ପାଦରେ ଅଳତା ଦେଇ, ନିଜ ହାତରେ ଶାଢ଼ୀ ପିନ୍ଧେଇବ ? ନିଜ ଦେହରୁ ଗହଣା ଉତାରି ଲଳିତାର ଦେହରେ ଖଞ୍ଜିବ ? ଡେଲି କରିବ ? ରାତି ଅଧରେ ହାତ ଧରି ନେଇ ଛାଡ଼ିଦେବ ଶେଜଘରେ ? ଦେଖିବ ରହି, ସବୁ ସୁଆଗ ଥରେ ଲାଗିବ, ପୁଣି ଥରେ ନାଟ ଲାଗିବ । ଭଗାରି ହସିବେ ହେ !

ନନ୍ଦିକା ସବୁ ତ କରିଥିଲା, ମନ୍ଦିରର ମନର ଉଦ୍‌ବେଗକୁ ଦଳିଥିଲା ମୁହଁର ହସରେ, ତଥାପି ସେ କାନ୍ଦିଲା ନାହିଁ କି ? ପାଗଳ ହୋଇ ଅନ୍ଧାରରେ ନିଜକୁ ନିଜେ ଦଣ୍ଡିଥିଲା, ମରଣକୁ ନିମନ୍ତ୍ରଣ କରିଥିଲା ନାହିଁ କି ? ଅନ୍ଧାର ଘରେ ମଝି କବାଟର ତାଲିକୁ ଧରି କେତେଥର ସେ ଠିଆ ହୋଇଛି, ଅଖିରୁ ଗଡ଼ାଇଛି ଲୁହ । ଅନିଦ୍ରା ହୋଇ ତଳେ ପଡ଼ିଛି ବାତପ୍ରନ୍ତ ହୋଇ ।

ଲୋକଙ୍କର କଥା ମିଛ ନୁହେଁ ।

ନନ୍ଦିକା ସେ ଜଟିଳତା ଛୁଆଁଇଥିଲେ ମଧ୍ୟ ନିଜର କଳ୍ପନା ତୁଳିରେ ପରି ତାର ନଟପଟ ପତ୍ନୀତ୍ୱକୁ ଜଳାଇଥିଲା । ରାତିରେ ସେ ହୋଇଥିଲା ସପତ୍ନୀ । ଦିନରେ ହୋଇଥିଲା ମା, ଜା, ଭାଉଜ, ବଡ଼ଭଉଣୀ । ଯାହାର ଟକଟକ ଫୁଟିଲା ଭାବ ସପନପ୍ରତିମା ମନ୍ଦିରକୁ ରାତିରେ ନିମନ୍ତ୍ରଣ କରି ଆଣିଥିଲା, ବେଦ ବାଦ ଛେଦର ନାଦ ଗଦଗଦ ହୋଇ ଶୁଣାଇବାକୁ, ସେଇ ଜୀବନ୍ତ ଚଳନ୍ତ ମନ୍ଦିରକୁ ଦିନର ଆଲୁଅରେ ସେ ଇଙ୍ଗିତ ଦେଇ-ଥିଲା, ପଳାଅ, ପଳାଅ, ଆଶା ତୁମର ବ୍ୟର୍ଥ ହେବ, ଏ ଘରେ ବୁଣି ନାହିଁ । ଦେଖିବାକୁ ଆଇଚ ? ହେଇଟି ଦେଖ, ଏଇଟି ମୋର ଟିକି ଝିଅ, ସାନ ଜାଆଟି ମ, ମୋର ସ୍ନେହର ପିଲୁଲା ନଣନ୍ଦ, ମୋର ଅତି ଗେହ୍ଲାର ପିଲା ଭଉଣୀଟି, ଯାହାକୁ କାଖରେ କୋଳରେ କରି ବଢ଼ାଇଛି, ଅଖି ପୁରାଇ ଦେଖୁଥା ଗୋ !

ଦର୍ପଣରେ ଥରେ ନୋହି ହସିଲା ମୂର୍ତ୍ତିର ପ୍ରତିବିମ୍ବ ପଛରେ ମଝି ଘରର ଠିଆମେଲା କବାଟର ଆଁ-ରୁଇ ପଡ଼ିଛି, ନନ୍ଦିକାର ଛଟପଟ, ଆକୁଳ ବିକଳ; ଖେଳନ୍ତି କାମନା-ରାକ୍ଷସର ଭୟଙ୍କର ପାଟିର ଆଁ ପରି । ଏ ଘରର ସମସ୍ତଙ୍କର ସୁଖ, ଆନନ୍ଦ, ଶାନ୍ତି ସବୁକି ସେହି ଠିଆମେଲା ମଝିଘର ଗ୍ରାସ କରିବ, ମେଦିନୀ-ଅସ୍ର ତତ୍ତ୍ୱକାର ଗୁଞ୍ଜିବ, ଗ୍ରାସିଲା, ଅନ୍ଧ ମନ୍ଦିର, ଏଇବାଟେ ଆସ ।

ନନ୍ଦକାର ଗୁପ୍ତ କର୍ମ ଉଠିଲା । କି କର୍ମ କଲା ଏ ଲଳିତା, କାହୁଁ ବୁଝିବ ? ଆହା, ଜଗମାଖୀ ଜାଣେ ନାହିଁ ।

ନନ୍ଦକାର ପ୍ରଭବମ୍ବୁର ମଳିନ ମୁହଁ ଚାନ୍ଦ ଜଙ୍କେର ଦୃଷ୍ଟିରେ ପଡ଼ିଲା । ମୁହୂର୍ତ୍ତିକରେ ଲଳିତାର ମୁହଁକୁ ଚାହିଁଲା ବହୁଦ ।

ଗୋଟିଏ ବର୍ଷ କଟିବାକୁ ବସିଲାଣି । ଏ ଘରେ ପାଦ ଦେଲା ଦିନୁ ସଉରୁଣୀ ସେ ଦେଖି ନାହିଁ । ନନ୍ଦକାକୁ ଦେଖିଲେ ତାର ଆଦର, ସ୍ନେହ, ଯତ୍ନ ଦେଖିଲେ, ଆଳଟ କଥା ଶୁଣିଲେ ସେ ଅନୁଭବ କରେ ଯେ ସେ ନନ୍ଦକାର କନ୍ୟା, ନଣନ୍ଦ ଅବା ସାନ ଭଉଣୀ । ଅଳି କରି କୋଳରେ ମୁହଁ ଯାକି ଶୋଇଛୁ, ଅଭିମାନ କରି କାନ୍ଧରେ ମୁହଁ ଲଦି ବସିଛୁ, ପିଠିରୁ ଘିମିରି ମାରିଛୁ, ଗୋଡ଼ ଘଷିଛୁ, ସେବା କରିଛୁ, ତାକୁ ସଜାଇଛୁ ।

ତଥାପି ମନରେ ଈର୍ଷା ଜାଗିଥିଲା, ନନ୍ଦକା ଏ ଘରର ସର୍ବେସର୍ବା, ଆଉ ସେ, ଗୋଟାଏ ପରଗୃହିକା । ଭିତରେ ଭିତରେ ସେ ସନ୍ଦେହ ନିଆଁରେ ସନ୍ତୁଳି ହେଉଥିଲା, କାହିଁକି ସ୍ୱାମୀ ସେ ଘରେ ପଶି ଗପ କରୁଛନ୍ତି, ଏତେ ଗପ ?

ନନ୍ଦକା ଡାକୁଛନ୍ତି, ଆଲୋ ଲଳିତା । ସନ୍ଦେହ ଦୂରେଇ ଯାଉଛି, ପୁଣି ଧାଇଁ ଧାଇଁ ଫେରି ଆସିବାକୁ । ବେଗଣା ମୁହଁରେ ଗଲା । ସନ୍ଦେହର ଅବକାଶ କାହିଁ ?

ବାପଘରେ ଝିଅ, ସପନରେ କୁହୁଡ଼ି ପହଁରେ । ଶାଶୁଘରେ ବୋହୂ, କୁହୁଡ଼ି ପରବର୍ତ୍ତିରେ ଦେଖେ ସରୋବର । ନିର୍ମଳ ନୀଳ, ତରଙ୍ଗ ଚଞ୍ଚଳ, ଶୀତଳ ଜଳ । କେବଳ ସେ ଅବଗାହେ ନାହିଁ, କଇଁ ଓ କମଳର ଉଚ୍ଛୁଳ ଝଳମଳ ଦୋହଲା ହସ ଦେଖି ନୟନରେ ପୁଲକ ଜଗାଏ, ଆକଣ୍ଠ ପାନକରି ତୃପ୍ତ ଲଭେ । ମନ ପୁଣି ଝୁରେ ।

ଜାଣି ମଧ୍ୟ ଜାଣିନାହିଁ ସତେ, ଶୋଷେଇଲା ନନ୍ଦକାର ହସିଲା ଆଗ୍ରହ ପଛରେ ଛପିଲା ତତଲା ମରୁଭୂମିର ହାହାକାର । ସେ ଅପା । କିନ୍ତୁ ଅପା ବି ତ ନାରୀ, ଯୁବତୀ ! ଯେଉଁ ପ୍ରେମର ସରୋବର କୂଳରେ ଠିଆ ହୋଇ ଲଳିତାକୁ ସେ ପଠାଇଦେଇଛି, ଡହଳ ବିକଳ, ଛଳଛଳ, କଜଳ ଗୁହା ଆଖି ଦିଓଟି ତାର ସେଇ ସରୋବର ସଲିଳ ଆଡ଼କୁ ଚାହିଁ ରହିଛି ।

ଆଜି ସେ ଅନୁଭବ କରିଛି, ସନ୍ଦେହର ଝରମା ତଳେ ଫଣା ଟେକିଲା ଈର୍ଷା । ସନ୍ଦେହ ଦୂରେଇଗଲା । ସହାନୁଭୂତି ଓ ସମବେଦନାର ନାଟେଶ୍ୱରୀ ଗୁମୁରିଉଠିଛି ମରମରେ । ଈର୍ଷା ମଥା ନୋଇଁଛି । ନିଜ କଳୁକର୍ମ ପାଇଁ ନନ୍ଦକାକୁ ସେ ଅନୁତାପ

କରିବାକୁ ସେ କେବେ ପ୍ରସ୍ତୁତ ହେବ ନାହିଁ । ଅପାର ଆବରଣ ତଳେ ସପତ୍ନୀର ଆତ୍ମତ୍ୟାଗ ଓ ବଡ଼ିମା ତାର ମନରେ ସପତ୍ନୀତ୍ୱର ଭାବ ଆଣିବ । ଏହା ସେ ସହିପାରିବ ନାହିଁ ।

ନନ୍ଦିକା ତାର ଅପା ନୁହେଁ; ନନ୍ଦିକା ତାର ଲୋକଧାରଣାର ସଉରୁଣୀ ନୁହେଁ, ସେ ତାର ସଙ୍ଗିନୀ । ହାତ ଧରାଧରି ହୋଇ ଦୁହେଁ ଚାଲିବେ ଏକ ସଙ୍ଗରେ । ନନ୍ଦିକାର ରକ୍ତମାଂସର ଦେହ ତଳେ ନିଜେ ସେ ନିଜକୁ ଅନୁଭବ କରିବ । ମନ୍ଦିରର କବାଟ ଖୋଲିଛି, ଗୁଢତଳର ଛପିଲା ସନ୍ଦେହ ଓ ଈର୍ଷାର ଘାଉଁଳା କବାଟ ଖୋଲିଛି । କେଉଁ ଘରଟି ନନ୍ଦିକାର ଆଉ କେଉଁଟି ଲଳିତାର ? କେଉଁ ସ୍ୱାମୀଟି ତାର, ଆଉ କେଉଁଟି ନନ୍ଦିକାର ?

ଲଳିତାର ପ୍ରତିବିମ୍ବ ହସିଉଠିଲା । ନନ୍ଦିକାର ଓଠକୁ ଡେଇଁଲା ସେ ହସ । ସୁନନ୍ଦର କା ମୁଗ୍ଧ ହୋଇ ଚାହିଁ ରହିଲା ।

ନନ୍ଦିକା କହିଲା, ଆଲୋ ଲଳିତା, ତାଙ୍କୁ ସିନା କହିବା ନାହିଁ, ତାଙ୍କ 'କା'କୁ କହିଲେ ଦୋଷ ହେବ ନାହିଁ ।

ଲଳିତା କହିଲା, ଭଲ ତ । ଆଗୋ କା, ସେ ପଛେ କଟକ ଯାଉନ୍ତୁ, ତୁମେ ଥା ।

ସୁନନ୍ଦ ଭୁଲିପଡ଼ି ଦୁଇଜଣଙ୍କର ହାତ ଧରିଲା । ହସି ହସି କହିଲା, ମୋର କଟକ ଯିବା ନ ହେଲା । କା ରହିଲେ ମୁଁ ରହିଲି; କିନ୍ତୁ ଶୁଣେ, ତମ ଦୁହିଁଙ୍କର ଆଜି କଅଣ ହୋଇଛି ? ଦୁହେଁ ଦିଶୁଛ ଶୁଖିଲା । ଶୁଖିଲା ମୁହଁରେ ପୁଣି ହସ ଫାଟିପଡ଼ୁଛି । ଅଭିମାନ କାହିଁକି ?

ଲଳିତା କହୁ ।

ନନ୍ଦିକା କହୁ ।

ଏ କ'ଣ, ସେ ପରା ତୁମର ଅପା ?

ଆଉ ସେକଥା ଚଳିବ ନାହିଁ । ଆଜିଠୁଁ ସେ ଉଭା ଗଲା । ଅପା ହୋଇ ମତେ ସେ ଧମକାଉଛି । ସେଇଥିପାଇଁ ମନ୍ଦି କବାଟ ଖୋଲିଲି । ସେ ମୋର ସାହା, ସେ ମୋର ସାଥୀ ।

ଏ କଅଣ କହୁଛୁ ଲଳିତା ? ମୁଁ ତୋଠୁ ଆଠ ବରଷ ବଡ଼, ଜାଣୁ ତ ? ମୁଁ ତୋର ଅପାଟି !

ନା, ନା, ନା, ବୁଢ଼ୀଙ୍କର ବୟସ ଆଜିଠାରୁ ସମାନ ହେଲା । ତୁ ମୋର 'ସା' ତାଙ୍କ ନାମରୁ ତୁ ନେଇଛୁ ପଛ ଦ ଅକ୍ଷର । ସେଇଥିପାଇଁ ତତେ ସେମାନେ ଡାକନ୍ତି ନନ୍ଦୀ ବୋଲି । ତୋ ନାମରୁ ଗୋଟିଏ ଅକ୍ଷର ମୁଁ ନେବି । ମୁଁ ହେବି ତୋର 'କା' । ସେଇ ନାମରେ ତୁ ଏଣିକି ମତେ ଡାକିବୁ ଲୋ ମୋର 'ସା' ।

ବାଉଆଣୀ ହେଲୁ ?

ନାହିଁ ତ !

ମୋର ସଉତୁଣୀ ହେବୁ ?

ଉହୁଁ, 'କା' ।

ଛି, ଲୋକେ ହସିବେ ।

ତା ବୋଲି ମୁଁ କାନ୍ଦିବି ?

ତୋ ଆଖିର ଲୁହ ମୁଁ ସହିପାରିବି ନାହିଁ ।

ତୋ ଆଖିର ଲୁହ ମୁଁ ସହିବି କେମିତି ?

ସୁନନ୍ଦ ତନ୍ମୟ ହୋଇ ଶୁଣୁଥିଲା । କହିଲା ମୁଁ ତାର ସମାଧାନ କରିଦେଉଛି । ନନ୍ଦବାର କାନ ପାଖରେ ବୋକ ଦେଇ କହିଲା, ତମେ ଆଜିଠୁ 'ସା' ହେଲ ! ମୁହଁ ବୁଲାଇ ଲଳିତାକୁ ଟେଲି କଲା । କହିଲା, ଆଉ ତମେ ହେଲ ତାଙ୍କ 'କା' । ମୁଁ ବୋଉକୁ ଜଣେଇଦିଏ ।

ଲାଜ ନାହିଁ କି ? ନନ୍ଦିକା ପଚାରିଲା ।

ସରମ ନାହିଁ ? ଲଳିତା ଜିଜ୍ଞାସିଲା ।

ସୁନନ୍ଦର ମୁଣ୍ଡହଲା ଦେଲା ଦୁଇଟି ପ୍ରଶ୍ନର ଉତ୍ତର । ସେ ଚାଲିଲା ବୋଉଙ୍କ ପାଖକୁ ।

ତା' ଆଗରେ ଭୁବନାଙ୍କର ଛାୟାଛବି । କାନରେ ବାଜିଯାଉଛି ତାଙ୍କର କଥା । ଯାହା ସେ କେବେ କରିବାକୁ ସାହସ କରି ନ ଥିଲା, ସେ କଥା ହୋଇଛି । 'ସା' କରିଛି କି 'କା' କରିଛି ସେ ଜାଣେ ନାହିଁ । ଅନୁଭବ କରୁଛି, ତା'ର ମର୍ତ୍ତ୍ୟର କୁଟୀରକୁ ଓହ୍ଲାଇ ଆସିଛି ସ୍ୱର୍ଗର ସୁଷମା । ତା'ର ଦଉଟି ସାଥୀ, ଜୀବନସଙ୍ଗିନୀ । ବୁଢ଼ୀଙ୍କର ହାତ ଧରି ସେ ଚାଲିବ ଜୀବନପଥରେ । ଦୁହେଁ ତାର ସା ଓ କା, ସାକା । ଦୁହେଁ ତାର ଦୁଇ ସଖୀ ଦୁଇ ଆଖି !

ଘରେ ଘରେ ସଭା ବସିଛି ।

ମାଉସୀ ମହଲରେ ଚର୍ଚ୍ଚା,—ସେମାନେ ବେହେଲ, ସ୍ବେଚ୍ଛାଚାରୀ, ଫୁଲେଇ । ଦେଖେଇ ହେଉଛନ୍ତି ଗୋ, ଉଲେଇ ହେଉଛନ୍ତି । ଓହୋ, ଯା ପୁଣି କା ! ନୁଣ ଖାଏ ହାଣ୍ଡି । ମନ ଭିତରେ ତାଙ୍କୁ ସେମିତ ଈର୍ଷା ଖାଉଛି । ଦେଖିବ ରହ । ଦିନେ ପୁଣି ଧରାପରା ହୋଇ ଦାଣ୍ଡକୁ ଆସିବେ । ଲକ୍ଷ୍ମୀ ସରସ୍ଵତୀ ସହପାଠୀ ନାହାନ୍ତି, ରହପାଠୀ ନାହାନ୍ତି, ଏମାନେ କେତେର କେତେ ?

ଲଳିତା ପଚାରିଲା, ଶୁଣିଛୁ କଥଙ୍କ କଥା !

ନନ୍ଦିକା କହିଲା, ଲୋକଙ୍କର ଦୋଷ ନୁହେଁ, ଲେ ଯାହା ସଂସାରରେ ଘଟେ ସେଇଆ ସେମାନେ କହୁଛନ୍ତି । କେତେ ଦୃଶ୍ୟ ସେମାନଙ୍କ ଆଖି ଆଗରେ ଠିଆ ହେଉଥିବ । ଆମର ସମ୍ବନ୍ଧ, ଆମର ଚଳନ ତାଙ୍କୁ ନୂଆ ଲାଗିବ । ସେମାନେ ଯାହା କହୁଛନ୍ତି ହସି ଉଡ଼େଇ ଦେବାର ନୁହେଁ । ବରଂ ସବୁ ଶୁଣି ଧୈର୍ଯ୍ୟ ଧରି, ବିଚାର କରିବାର କଥା । ଯେମିତି ସେମାନେ ତାଳି ମାରିବାର ସୁଯୋଗ ନ ପାଆନ୍ତି ସେଥିକି ସାବଧାନ ହେବା ।

ନନ୍ଦିକା ଲଳିତାର ମୁଣ୍ଡ ବାନ୍ଧୁଛି । ବେଳ ରତରତ ହେଲାଣି । ଆଜି ପୁନେଇଁ । ଆକାଶରେ ମେଘ ଫଉଜ ମାଡ଼ି ବୁଲୁଛନ୍ତି । ଦିନସାରା ସ୍ୱାମୀଙ୍କ ସଙ୍ଗେ କାହାରି ବେଶି ସମସ୍ତ ଦେଖା ହୋଇ ନାହିଁ । ସକାଳୁ ଉଠି ବଲବାଣ ଦେଖିବାକୁ ଯାଇଥିଲେ, ଫେରିଲେ ଗାଧୁଆବେଳେ । ଗଣ୍ଡାଏ କ'ଣ ଖାଇଦେଇ ସେ ସଙ୍ଗେ ସଙ୍ଗେ ପୁଣି ବାହାରିଗଲେ ପଦାକୁ । ଗାଆଁରେ ସଭା ହେଉଛି । କୋଠଗୃହ କରାହେବ । ଭୂଦାନ ଯଜ୍ଞ ସମ୍ବନ୍ଧରେ ବିଚାର ପଡ଼ିଛି । ସେ ସେଇଠି ଅଛନ୍ତି । କେତେବେଳେ ଫେରିବେ କେଜାଣି ।

ନନ୍ଦିକାର କଥା ଲଳିତାର ମନରେ ଭେଦିଲା । ସେ ଉତ୍ତର ଦେଲା ନାହିଁ । ଦୀର୍ଘଶ୍ୱାସ ଛାଡ଼ିଲା ।

ଗତ ରାତି ନିଜ ଅନୁଭୂତିର କଥା ଭାବି ଲଳିତା ବିଚଳିତ ହେଲା ।

କାହାନ୍ତି ସେ ?

ଅଣ୍ଡାଳିଲେ ଅନ୍ଧାରରେ ହାତ ହତାଶ ହେଉଛି । ଘର ଅନ୍ଧାର କଲା କିଏ ? ଆଖି ଖୋଲିଲେ ଦିଶୁଛି, ଝରକା ସେ ପାଖରେ ଫିକା ଆଲୁଅ । ଗୁହାରେ

ନିଶ୍ୱାସ ଅଟକିଯାଉଛି । କୋହ ଉଠୁଛି । ଯାହା ନିଶ୍ଚିତ ସତ୍ୟ, ବିଶ୍ୱାସ କରିବାକୁ ମନ ରାଜି ହେଉ ନାହିଁ । ଭଲପଣିଆ ହେଉ, କି କ୍ଷଣିକ ଉତ୍ତେଜନା ହେଉ, ଯାହା ସେ ନିଜେ ଭୋଗିଛି ମ ସହିପାରୁନାହିଁ ।

କାନ ପାରୁଛି । ନୀରବ ନୁହେଁ ତ ରଜନୀ ଝିଙ୍କାରର ଅଚ୍ଛିନ୍ନ ଶବଦ କାନରେ ବାଜୁଛି । ମୁଣ୍ଡ ହେଉଛି ଝାଇଁ ଝାଇଁ । ଲଳିତା ଉଠି ବସିଲା । ଦୋହଲି ଉଠିଲା ପଲଙ୍କ । ଶବଦ ହେଲା । ଭୟରେ ସେ ହେଲା ନିଶ୍ଚଳ । ସଚେତ ଉଠି ପଦାକୁ ଯିବାର ଅଧିକାର ବି ତାର ନାହିଁ । ସେ ସ୍ୱୈରଣୀ । ସେମାନଙ୍କର ନିଶ୍ଚିନ୍ତ ନିଦ ଭାଙ୍ଗିଯିବ । ପଚାରିବେ ନିଧିକା, କିଏ ସେ ? କି ଉତ୍ତର ଦେବ ?

ଲଳିତା ବସିଲାଠାରୀରେ ତକିଆରେ ମୁଣ୍ଡ ନୋଇଁଲା । ମନେ ପଡ଼ିଲା, ସେ ନିଜେ କହିଥିଲା, ଶୁଣିଲଣି, ମୋ ସା ପର ଦିନେ ଶୋଇ କାନ୍ଦି କାନ୍ଦି ଆଖି ଫୁଲେଇଥିଲା, ସେ ଏକା ରହିଲେ ତାକୁ ରୋଗଣା ଦୁର୍ବଳ ମନରେ ଦୁଃଖ ଆସୁଛି । ତମେ ଯାଅ, ନଇଲେ ମୁଁ ଯାଉଛି ତା ପାଖରେ ଶୋଇବି । କେତେ ଗପ ସେ ଜାଣେ ଗୋ !

ମତେ ଭାରି ନିଦ ମାଡ଼ୁଛି । କାମ କରି କରି ଦିନଯାକ ମୁଁ କ୍ଳାନ୍ତ । ଗଳ୍ପ ଶୁଣିବାକୁ ମୋର ଆଗ୍ରହ ନାହିଁ । ମୁଁ ଏଇଠି ଶୋଉଛି ଲଳିତା, ତମେ ଯାଅ, ତମ ସା ପାଖରେ ଶୋଇ ଗପ ଶୁଣିବ ।

ସା ଅଛି ଶେଷଘରେ । ସଜଡ଼ା ସଜଡ଼ି କରି, ତାଲା ପକାଇ ଅସୁ ଅସୁ ତାର ଘଣ୍ଟାଏ ଯିବ । ତମେ ନିଶ୍ଚିନ୍ତରେ ଶୋଇପଡ଼ିବ, ଆସ । ଆସ— ।

ଅବାଧ ଅଟ୍ଟ ପିଲାର ହାତ ଧରି ମା ଗୃହଶାଳୀକୁ ନେଲା ପରି ସୁନନ୍ଦର ହାତ ଧରି ସେ ଆର ଘରକୁ ନେଇଥିଲା । ଅସ୍ୱାଭାବିକ ବୀରତ୍ୱ ଦେଖାଇ ଫେରି ଆସିଥିଲା ନିଜ ଘରକୁ । କବାଟ କିଳି ଆଲୁଅ ଲିଭେଇଲା । ଖଟ ଉପରେ ପଡ଼ି କେବଳ ଥରିବାକୁ ଲାଗିଲା । କଅଣ ସେ କରିଛି ? ଭଲ କି ମନ୍ଦ ? ମନକୁ ବୋଧ ଦେଲା, ସେ ତ ପର ନୁହେଁ, ସେ ମୋର କାହିଁକ । ମୁଁ ସ୍ୱାର୍ଥପର ହେବି ?

କ୍ଳାନ୍ତ ଆଖିପତାକୁ ଅଜାଣତରେ କେତେବେଳେ ମାଡ଼ିବସିଲା ନିଦ । ସପନ ଦେଖିଲା, କେଡ଼େ ଭୟଙ୍କର ! ନିଦ ଭାଙ୍ଗିଲା । ହାତ ବୁଲିଲା ପଲଙ୍କ ଉପରେ । ଯାହାକୁ ଖୋଜିଲା ସେ ନାହାନ୍ତି ।

ଧୀରେ ଧୀରେ ପଲଙ୍କ ଉପରୁ ଓହ୍ଲାଇଲା ତଳକୁ । ଗୋଡ଼ ଚପି ଚପି ଝରକା ପାଖକୁ ଗଲା । ଚାହିଁଲା ବାହାରକୁ । ଜହ୍ନ ମଥା ଉପରୁ ତଳକୁ ଗଡ଼ିଲଣି । ମେଘ ସଙ୍ଗେ ତାର ଲୁଚକାଳି ଖେଳ । ଈର୍ଷା, ସ୍ୱାର୍ଥପରତା, ଭୟ, ନିରାଶା ଓ ଅଭିମାନର ଉହାଡ଼ରେ ଚଞ୍ଚଳ, ଅଧୀର, ଅଶାନ୍ତ, ଦୋହଲା, ଦୁରୁଣିଆ ମନର ଲୁଚକାଳି ଖେଳ ପରି । ଆଲୁଅ

ଛାଇ । ଆଶାୟୀ ସବୁଜ ପ୍ରକୃତ ଅନାଇଁ ରହିଛି । ଅଳସ ଅଙ୍ଗ ଆନ୍ଦୋଳରେ ଆମନ୍ତ୍ରଣ କରୁଛି ଆଲୋକକୁ, ଅଥବା ଅସରକୁ ।

ଲଳିତା ଅନାଇଁ ରହିଲା । ଅଜାଣତରେ ଆଖିରୁ ଲୁହ ଗଡ଼ିଲା । ମୁହଁ ଫେରାଇଲା । ମଝିଘରର କବାଟ ଠିଆ ମେଲା । ଯନ୍ତ୍ରଚାଳିତ ପରି ଟଳି ଟଳି ଆସିଲା । ଛାତି ଦାଉଁ ଦାଉଁ । କି ଅନ୍ୟାୟ ସେ କରିବାକୁ ଆଗଭର ? ହାତ ହେଉଛି ମୁଠା ମୁଠା । ନିଦକାର ତଣ୍ଟି ଖୋଜୁଛି । ଯେଉଁ ନିଦକାର ପ୍ରାଣ ବଞ୍ଚାଇବାକୁ ସେ ଜୀବନ ପଣ କରି ସେବା କରିଥିଲା ସେହି ନିଦକାର ଜୀବନ ସେ ନେବ ? ସେ ତାର ସା ନୁହେଁ, ସେ ତାର ସହରୁଣୀ, ଶତ୍ରୁ, ଦୁଃଖ !

ହାତ ବାଜିଲା ଆଲମାରିରେ । ଶବଦ ହେଲା । ଭୟରେ ସେହି ଆଲମାରିକୁ ଆଉଜି ଠିଆ ହେଲା । ଗୋଡ଼ ଥରୁଛି, ଛାତି ପଡ଼ୁଛି ଉଠୁଛି । ମୁଣ୍ଡ ଘୁରୁଛି । ପିଣ୍ଡରୁ ପ୍ରାଣ ଛାଡ଼ିଲା ପରି ଲାଗୁଛି । ନିଶ୍ୱାସର ଶବଦ କାଳେ ସେମାନଙ୍କ କାନରେ ବାଜିବ ? ରୋକି ରୋକି ନିଶ୍ୱାସ ଛାଡ଼ୁଛି ଲଳିତା । ଆଗକୁ ପାଦ ପକାଇ ପାରୁନାହିଁ । ଫେରିଯିବାକୁ ମନ ହେଉଛି ଇଙ୍ଗିତ ଭିତରୁ କିଏ ଡାକ ଦେଉଛି, ଛି, ଛି, ଛା !

ସେ ଘରର କବାଟ-ବନ୍ଦ ?

ହାତ ବଢ଼ାଉଛି । ଅନୁଭବ କରୁଛି, ବନ୍ଦ ନୁହେଁ, ଆଉଜା । ହାତ ବାଜି କବାଟ ଖୋଲିଲା, ଅଳପ । ସତେ କି ସେ ମୂର୍ଚ୍ଛିତ ହେବ । ପଲଙ୍କ ଉପରେ ଧୋବ ଫର ଫର ମଶାରି । ଅନ୍ଧାର ଘର । ଦୁଇଟି ପ୍ରାଣୀଙ୍କର ନିଶ୍ଚିନ୍ତ ନିଦର ସୂଚନା ଦେଉଛି ସମତାଳ ନିଶ୍ୱାସ ।

ଚମ୍ପା ଫୁଲର ମନହରା ମହକ ।

ସେ ବି ଯିବ ।

ଏରୁଣ୍ଡି ଡେଇଁବାକୁ ଗୋଡ଼ରେ ବଳ ନାହିଁ । ପଛ ଆଲମାରି ଭିତରୁ ସ୍ଥିର ଦୃଷ୍ଟିରେ ଗ୍ରହି ରହିଛନ୍ତି ପିତୁଳା ଦଶଟି । ସତେ କି ସେମାନେ ଲଳିତାର ମନକଥା ବୁଝି ପାରିଲେଣି । ଟିକିପଟିର ଟିକ୍ ଟିକ୍ । ପଚାରି ଉଠୁଛି, ତେଣେ କୁଆଡ଼େ ? ପିତୁଳାଗୁଡ଼ିକ ବି ଡାକ ଛାଡ଼ିବେ, ତେଣେ କୁଆଡ଼େ ?

କଡ଼ ମୋଡ଼ିବାର ସଙ୍କେତ, ଦୀର୍ଘଶ୍ୱାସ '

ଏଥର ସେ ଉଠିବ । ପଚାରିବ, 'କିଏ ? ଓ, 'କା', କଅଣ କି ? ଆରେ, ଅଛୁ କାହିଁକି ? ଏଁ, କାନ୍ଦୁଛୁ ଯେ ? ସହିପାରୁନୁ ? ଜାଣେ, ମୁହଁଟାଣ ଚୋର ଗର୍ଜିବ, ଅଭିମାନ ଓ ଈର୍ଷା ଢଳପଣିଆର ପରଦା ଉହାଡ଼ରୁ ହାତ ଧରା ଧରି ହୋଇ ବାହାରିପଡ଼ିବେ । ଜାଣେ, ସହିପାରିବୁ ନାହିଁ । ମୁଁ ବି ସହିପାରି ନ ଥିଲି ।

ନିଜର ଦୃଢ଼ତା ଉପରେ ମୋର ଆସ୍ଥା ନଥିଲା । ନିଜ ଉପରେ ଅବିଶ୍ୱାସ କରି ମଝି କବାଟ କିଳିଥିଲି । ପ୍ରକୃତି ମୋର ସେଇ ଚୋଲପ । ସାତ ତାଲ ପଙ୍କ ତଳେ ଲୁଚାଇଥିଲି ଗୃହ ।

ଲଳିତା ଜିଜ୍ଞାସିଲା । କିଏ କହୁଛୁ ?

ନିଧକାର ନିଶ୍ୱାସ !

ମୁଁ ପାରିବ ନେ ଲଳିତା, ମୁଁ ତୋର 'ସା' ନୁହେଁ, ତୁ ମୋର 'କା' ନୋହୁ । ମୁଁ ତୋର ସହଚରୀ ନୁହେଁ, ମୁଁ ତୋର ଅପା, ଅପା ! ଶୁଣିଥା ଏଠିକି । ମୁଁ ଯାଉଛି ସେ ଘରକୁ । କବାଟ ଖୋଲା ହେବ, ପୁଣି ପଡ଼ିବ ତାଲା । ପୁଣି ମୁଁ ତଳେ ଲେଟିବ । କାନ୍ଦିବ । ତୋର କି ଯାଏ ? ଶୁଣିଥା—

ଶୁଣିଥା—!

ବାଘୁଣୀ ପରି ଲଳିତା ଗର୍ଜିଉଠିଲା । ନିଜର ତକିଆରେ ମୁହଁ ମାଡ଼ି ଦେଇ ଚିପି କହିଲା ନାଇଁ, ନାଇଁ, ମୁଁ ତୋ ପରି ଦୁର୍ବଳ ନୁହେଁ, 'ସା', କବାଟରେ ତାଲା ପଡ଼ିବ ନାହିଁ, ତାଲା ପଡ଼ିବ ମୋ ମୁହଁରେ ।

ଦୁହିଁଙ୍କର ମୁହଁରେ ତାଲା ପଡ଼ିଛି ।

ମୁହଁ ଖୋଲିଲେ ଦୁହିଁଙ୍କ ତୁଣ୍ଡରୁ ବାହାରେ ଯେଉଁ କଥା, ସେଥିରୁ କେବଳ ଝରିପଡ଼େ ପରସ୍ପର ପ୍ରତି ସ୍ନେହ, ସହାନୁଭୂତି ଓ ବ୍ୟାକୁଳତା । ଲୋକେ ଶୁଣି ବିସ୍ମିତ ହୋଇ ପରସ୍ପରକୁ ଅନାଇରହନ୍ତି । ଜଣକୁ ନ ଦେଖିଲେ ଆର ଜଣକ ଛୁଆଖାଇ ବିଲେଇ ପରି ହୁଏ । ଜଣକ ତୁଣ୍ଡରେ ଆର ଜଣକ ଅଧାର ନ ଦେଲେ ନିଜେ ଖାଏ ନାହିଁ । କ୍ଷୀରନୀର ପୀରତି । ଧନ୍ୟ ଧନ୍ୟ । କଳିଯୁଗରେ ତ ସାତ ସପନ, ସତ୍ୟଯୁଗରେ ବି ସମ୍ଭବ ନ ଥିବ ।

ସୁନନ୍ଦ କେବେଠାରୁ କଟକ ଚାଲିଗଲାଣି । କାମକାର୍ଯ୍ୟର ଭିଡ଼ ପାଇଁ ସହଜରେ ସେ ଘରକୁ ଫେରି ପାରେ ନାହିଁ । ଦଶହରା ପାଖେଇ ଆସିଲା । ଏ ଭିତରେ ଯେଉଁ ଥରେ ଅଧେ ସେ ଆସିଥିଲା, ଘରେ ଦୁଇ ଦିନରୁ ତିନି ଦିନ ସେ ରହି ନାହିଁ । କାହାକୁ ସେ ପାତର ଅନ୍ତର କରି ନାହିଁ । ଦୁହେଁ ତାର ପତ୍ନୀ, ଦୁହେଁ ସମାନ । କାହାର ଶୁଖିଲା ମୁହଁ ସେ ଦେଖିନାହିଁ । ଜଣକ ମୁହଁରୁ ଶୁଣେ ଆରଜଣର ପ୍ରଶଂସା । ମାଆଙ୍କ ମୁହଁରୁ ଶୁଣେ ଦୁହିଁଙ୍କର ପ୍ରଶଂସା, ତମର ସୁଖ ଆନନ୍ଦ ହସମୁହଁ ଦେଖି ତମରି ପ୍ରଶଂସା କାନରେ ଶୁଣି, ମୋର ପ୍ରାଣ ଯାଉ ରେ ବାପ, ଏତିକି ମୋର ଲୋଡ଼ା ।

ବୁଢ଼ୀ ଦିନୁଦିନ ଅଚଳ ହେବାକୁ ଲାଗିଲେଣି । ବୟସ ସେପରି ଅଧିକ ହୋଇନାହିଁ, ତଥାପି ମୁଣ୍ଡର କେଶ କେଶକ ଧୋବଲା ହେଲଣି, ଦାନ୍ତ ଗଳିପଡ଼ିଲଣି, ଆଖିରେ ମାଡ଼ିଲଣି ପରଳ । ଗୋଡ଼ହାତ ଥରୁଛି । ଚାଲିଲେ ଲାଗୁଛି ସତେ ଅବା ଟଳି-ପଡ଼ିବେ । ବୋହୂ ଦୁହେଁ ଓ ନାତି ହାତ ଧରି ଚଳପ୍ରଚଳ କରାଉଛନ୍ତି । ଲଳିତାର ସେବା ଯତ୍ନ ଦେଖି ସେ ପ୍ରୀତ ହୋଇଛନ୍ତି । କଥା, ବରଷକର ବୋହୂ, ନନ୍ଦକାକୁ ସେ କେତେ ଗୁଣରେ ଟପିଯିବଣି ! ମା ନଥିଲା ଝିଅ, କାହାଠୁ ଶିଖିଲା ଏତେ କଥା ? ଭଲ ଘରର ଝିଅ, ଭଲ ଗାଆଁର ଝିଅ !

ନନ୍ଦକା ତାଠୁଁ ବଳି, ଜମାସ୍ତା ଜରମାଖୀ । ଲଳିତାକୁ କୋଳରେ ପୂରେଇ ଶୁଏ ଗୋ, ଗୋଡ଼ ବି ଆଉଁଷେ ଶୋଇଲା ଝିଅଟାର । ବଡ଼ ସାନ ଜ୍ଞାନ ନାହିଁ । ପର ଆପଣା ଭେଦ ନାହିଁ । ଲୋକ ପଠେଇ ଚିଠି ଲେଖି ଲଳିତାର ଭାଇକୁ ସେ ଡକାଇ ଆଣିଥିଲା । ସଙ୍ଗରେ ଆସିଥିଲେ ଦୁଇଟି ପୁରୁଷ । ସାତଦିନ ସେ ରହିଲେ । ଗଲାବେଳକୁ କହିଗଲେ, କିଏ ଲଳିତା, କିଏ ନନ୍ଦକା, ମୁଁ ଜାଣିପାରିଲି ନାହିଁ ମାଉସୀ । ଦୁହେଁ ମୋର ଭଉଣୀ, ନନ୍ଦକା ଆଗ, ଲଳିତା ପଛ । ଏକାସଙ୍ଗେ ଦୁହିଙ୍କୁ ମୁଁ ନେଇଯିବ ତାଙ୍କ ଭାଉଜଙ୍କ ପାଖକୁ, ଏଇ ଦଶହରାକୁ ।

ତମ ଭଉଣୀ ସେ ଦୁହେଁ, ନେବାକୁ କଣ୍ଟ ପଠେଇଲେ କିଏ ମନାକରିବ ପୁଅ ?

ସାଥିକ ଓଳିଆ ବଡ଼ ଲଫାପାଟି ଖୋଲିଦେଇ କାବା ହୋଇ ଅନେଇ ରହିଥିବେ । ଚିଠି ଖଣ୍ଡିକ ଅତି ଛୋଟ, ନନ୍ଦକା ଲେଖିଥିଲା, ଲଳିତା ମୋର ପ୍ରାଣରୁ ଅଧିକ । ଘରକଥା ଭାବି ସେ ଯଦି ଆଖିରୁ ଲୁହ ଗଡ଼େଇବ, କେମିତି ମୋ ଆଖି ଶୁଖିଲା ଠାଉ ଠାଉ ରହିବ, ଭାଉଜ ? ଆମକୁ ତମେ କ'ଣ କହିଦେଇବ କି ? ଏତେକ ଟଙ୍କାରେ ଯଦି ବନ୍ଧାଜମି ଓ ବନ୍ଧାଗହଣା ନ ମୁକୁଳେ, ତମକୁ ମୋ ଧଣ, ଆଉ କେତେ ଲୋଡ଼ା ନିଶ୍ଚୟ ଲେଖିବ । ନଇଲେ, କଣ୍ଟ ପଠାଇ ଚାହିଁ ବସିଥିବ କହୁଛି, ଯେତେ ଅଧାଏ ଯାଚିଲେ, ଯେତେ କଅଁଳେଇ ଡାକିଲେ, ପିଢ଼ାରେ ବାଉ ନ ବସେ ।

ଭାଉଜ ଲେଖିଲେ, ହଜାରେ ଟଙ୍କା, ଯାହାକୁ ଯେତେ । ସେତିକ ହେବ । ତମେ ମୋର ଆଗ, ଲଳିତା ସେ ପଛ । ଆଗରୁ କହୁଛି ବୋଲି ହସିବ ନାହିଁ, ହେଲେ ନଣନ୍ଦର ଧାରୁଆ ହୋଇ ରହିବ ନାହିଁ । ଯେବେ ହେଲେ ଶୁଝିବ ।

ଆଲେ, ଯା !

କଅଣ କି ଲଳିତା, ତୁ କାନ୍ଦୁଛୁ ? ମୋ ଶାଉଜ ମୋ ପାଖକୁ ଚିଠିଟି ଦେଇଛି । ତୋ ହାବୁଡ଼େ କେମିତି ପଡ଼ିଲା ଲୋ 'ମା' ?

ଲଳିତା ଆଖି ପୋଛି କହିଲା, ମୋ ଶାଉଜ ମୋ ପାଖକୁ ଯେଉଁ ଚିଠି ଦେଇଥିଲେ ତୁ ତାକୁ ନଷ୍ଟେ ପାଇ ପଡ଼ିଛୁ ।

ହଁ ଲୋ, କେବେଠୁଁ । ମତେ ତୁ ଲୁଚାଇଥିଲୁ କାହିଁକି ?

ଲଳିତା ତୁନି ରହିଲା ।

ନନ୍ଦକା କହିଲା, ଏତେ କପଟୀ ତୁ ? ସବୁ ନେଇ ନିଜେ ବାକ୍ସ ଖୋଲି ଟଙ୍କା କାଢ଼ି ପଠେଇ ଦେଲୁନାହିଁ ? ସେମାନେ ଦୁଃଖ ପାଇବେ, ଆଉ ଆମ ବାକ୍ସରେ ଟଙ୍କା ସଜଡ଼ା ହୋଇ ରହିଥିବ ?

ତୁ ତାଙ୍କୁ ପଚାରିଛୁ 'ମା' ?

କାହିଁକି ପଚାରିବ ? ଜାଣୁ, ପଚାରିଥିଲେ ସେ ମନରେ ଦୁଃଖ କରିଥାନ୍ତେ । ଏ ଧନ ମତେ ଦେଇଥିଲେ, ମୁଁ ସାଇତି ରଖିଛୁ ତୋ'ର ପାଇଁ ।

ଲଳିତା ଦୀର୍ଘଶ୍ୱାସ ଛାଡ଼ିଲା ।

ବୃଦ୍ଧିପାଣରୁ ନାହିଁ 'ମା' ତୋ'ର ପେଟର ପିଲାଟିଏ ଦେଖିଲେ ମୋ ଆଖି ପବିତ୍ର ହେବ । ଯାହା ମୁଁ ସାଇତି ରଖିଛି, ସବୁ ହେବ ତା'ର । ତୁଇ ରଖିବୁ ତା'ର ପାଇଁ । ଆଉ ବେଶି ଦିନ ମୁଁ ବଞ୍ଚିବି ନାହିଁ ମ !

ଲଳିତା ବିଚଳିତ ହେଲା । ଆଖିରୁ ଲୁହ ପୋଛି କହିଲା, ଛି, ଏମିତି କଥା କାହିଁକି ତୁଣ୍ଡରେ ଧରୁଛୁ ?

ମତେ ସେମିତି ଲାଗୁଛି । ଦେହ ଭଲ ଲାଗୁନାହିଁ । ଗୋଡ ଥର ଥର ହୋଇ କମ୍ପୁଛି । ବେଳେବେଳେ ମୁଣ୍ଡ ଝାଇଁ ଝାଇଁ ହେଉଛି । କାନ ଝାଁ ଝାଁ । କେତେବେଳେ ଆଖି ଆଗରେ ସବୁ ଦିଶୁଛି, ଅନ୍ଧାର । ରାତିରେ ସପନ ଦେଖୁଛି, ଚେମିତି ମୋର ବାହାଘର ହେଉଛି କାହାବୋବାଳି ପଡ଼ିଛି ବାଦାବାଦ ହେଲେ, ମନାକଲେ ମୁଁ ବସୁଛି, ସେମାନେ ମତେ କୁଆଡ଼େ ନେଇ ପଳାଉଛନ୍ତି । ହେଇଟି ମୁଣ୍ଡ ଝାଙ୍କିଦେଲି ।

ଲଳିତାର କାନ୍ଧ ଉପରେ ନନ୍ଦକା ମୁଣ୍ଡ ରଖିଲା । ଆଖି ବୁଜିଲା । ଲଳିତା ତାକୁ କୁଣ୍ଢାଇ ଧରିଲା । ଦେହ ଥରୁଛି । ଗ୍ଲାନିହେଉଛି ବେଳ । ବାହାରେ ଝଡ଼ । ଖଞ୍ଜାରେ ଆଉ କେହି ନାହିଁ । ଜନ କୁଆଡ଼େ ଛୁ । କାହାକୁ ଡାକିବ ?

ନନ୍ଦକା ଆଖି ଖୋଲିଲା । ମୁଣ୍ଡ ଟେକିଲା । କହିଲା, ଡରିଲୁ କି ? କେବେ କେବେ ଏମିତି ହେଉଛି, ଆପେ ପୁଣି ଭଲ ହେଉଛି ।

(୭)

ତୁ ଟିକଏ ଶୋଇପଡ଼ ।

ନନ୍ଦକା ଲଳିତାର କଥା ମାନିଲା ।

ଲଳିତା ପଚାରିଲା, ଦେହ ଏମିତ ଖରାପ ହୋଇଛି ବୋଲି କେବେ କହୁନୁ 'ଯା' ! କବିରାଜଙ୍କୁ ଡକାଇବି ?

ନାହିଁ ।

ତାଙ୍କୁ ଚିଠି ଲେଖୁଛି, ସେ କଟକରୁ ଡାକ୍ତର ନେଇ ଆସନ୍ତୁ । ରୋଗ ବଳେଇ ପଡ଼ିଲେ ଅଉ ହାତଗୋଡ଼ ପାଇବ ନାହିଁ । ଯେତେ ମନା କଲେ ତୁ ଚୂଲି ପାଖକୁ ଯାଉଛୁ ।

ତୋତେ ମୋ ରାଣ, ତାଙ୍କୁ କିଛି ଲେଖିବୁ ନାହିଁ । ଡାକ୍ତରଂ କବିରାଜ ମୋର ଲୋଡ଼ା ନାହିଁ । ଭଲ ହେବାର ଥିଲେ ଆପେ ଭଲ ହେବ, ନୋହିଲେ ଯାହା ହେବାର ହେବ । ଢେର ବରଷ ହେଲାଣି ମୋର ଏ ରୋଗ । କାହାକୁ କହେ ନାହିଁ । ବେଳେବେଳେ ଏମିତ ହୁଏ, ପୁଣି ଆପେ ଭଲ ହୁଏ ।

ଲଳିତା ନନ୍ଦକାର ମୁଣ୍ଡ ଆଉଁସୁଛି । ନନ୍ଦକା ହସିଲା ମୁହଁରେ ଚନାଇ ଦେଉଛି ତାଆର ଆଡ଼କୁ । ସତ୍ରୁଚି ମିଛ, ମିଛ, ଏମିତ କେତେଥର ହୁଏ । କନ୍ଦ ଲୁଚେଇ ଠାକୁର ପାଖରେ ମାନସିକ କରେ ଭୋଗରାଗ କରାଏ କେତେ ଆଗ୍ରହରେ ! ମାନେନାହିଁ କାହା କଥା । ଠାକୁରାଣୀ ସିନ୍ଦୂର ଲଗାଏ ନନ୍ଦକାର କଣ୍ଠରେ । ଚୁଣ୍ଡରେ ଦିଏ ତୁଳସୀ । ବୃନ୍ଦାବତୀ ଚଉରା ତଳେ ଅଧିଆ ପଡ଼େ ରାତପାରା । ଦନେ ପୁଣି ସେ ହତାଶ ହୁଏ ।

କନ ଉପାସ ରହେ । ଘର ଘର କାହୁଁଙ୍କଲୁଏ ଆଖିରୁ । ସେ ମଣେ, ଅପରାଧ ତାଆର ନନ୍ଦକାକୁ ଯେ ଅଣିଛି ଏ ଘରକୁ । ଫଳ ନ ଫଳିଲେ ସେ ଏକା ଦାୟୀ । ତ ପଛରେ କେଜାଣି କେ କେଉଁ ଠାକୁର ପାଖକୁ ଧାଁଇଥିବ । ଦେବତାଏ ଫୁଲ ତୋଳି ନେଇଛି । କେବେ କେବେ ନନ୍ଦନା ତାକୁ ଯେଉଁ ଝଙ୍କାଏ ମଯ୍ୟାଏ ଦିଏ, ସେତିକ ସେ ସାଇତ ରଖେ ନନ୍ଦକା ପାଇଁ । ହତାଶ ହେବାକୁ ଭୋଗରାଗ କରେ, ବାଲନାଳା କରେ । ଗାଆଁ ମାଇପେ କହନ୍ତି, କନ ମାନସିକ କରିଛି ଗୋ, ଚଉଠି ରାତିରେ ଝିଏ ବୁହିଁ ଦେଇ ପଳେଇ ଯାଇଥିଲା, ସେ ପୁଣି ବୃନ୍ଦାବନେ ଆଗେଇ ଆସିବ, ହାତ ଧରି ଘରକୁ ନେବ '

ସୁମିତ୍ରାର ଓଠ କି ଆଖି ଖାଲି ହସେ ନାହିଁ, ତୁଣ୍ଡ କି ମୁହଁ ଖାଲି କଥା କହେ ନାହିଁ । ତାର ସାରା ଶରୀର ହସେ, କଥା କହେ । ସେ କହିଲା, କଳା ଗୋରା, ମୋଟ ସରୁ, ସୁନ୍ଦର ଅସୁନ୍ଦର କର ବାହାରଟାକୁ ସିନା ବହୁ ଗଢ଼ିଛ ଅପା, ମଣିଷର ମନକୁ ସେ ସମାନ କରିଛି । ଜନଙ୍କର ମନ ହେଲା, ଚଉଠିରାତି କଥା ମନେପକାଇ ବାଲିମାଲି ଜରେଇବେ, ସେଥିକି ହଂସୁକା ଲୋକେ ତାଳି ମାରିବେ କାହିଁକି ?

ନନ୍ଦକା କହିଲା, ଲୋକଙ୍କୁ ପରକଥା ଚର୍ଚ୍ଚା କରିବାକୁ ଆନନ୍ଦ ଲାଗେ ଲୋ ସୁମିତ୍ରା, କହନ୍ତୁ ସେମାନେ ଯାହା ଇଚ୍ଛା ।

ଜନ ଯାଇଥିବ କେଉଁ ଠାକୁର ପାଖକୁ, ନନ୍ଦକା ଅନେଇ ରହିଛି ଲଳିତାକୁ । ଭାବୁଛି, କାଲେ ସତ ହୋଇଥିବ, ତେବେ ଲଳିତା ଜାଣିବ, କଅଣ ହେବ ତାର ମନ ? ସେ କଅଣ ସୁଖୀ ହେବ ?

ଯଦି ସତ ହୋଇଥାଏ, କେଡ଼େ ବଡ଼ମୁନା କଥା ! ଡାକ୍ତର ମନା କରିଥିଲେ, କହିଥିଲେ ଫଳ ଫଳିବ ନାହିଁ । ଲୁଚି ଲୁଚି କହିଥିଲେ ସୁନନ୍ଦକୁ, କଷି ଧରିଲେ ସେ କଷି ଶୁଖିବ । ଯଦି ରହେ, ପେଟ ନ କାଟିଲେ ନ ବାହାରେ । ନନ୍ଦକା ଶୁଣିପାରିଛି ପେଟ କଟା ହେବ ! କଲବଲ ମରଣ । ସବୁଥର ପରି ଏଥର ବି ଜନର ସପନ ମିଛ ହେବ । ରୋଗ ଧରିଛି, ନେବ ଯାଇ ଛାଡ଼ିବ ।

ଲଳିତାର ମନରେ କଲବଲ ହେଉଛି ଭାବନା, ସୁମିତ୍ରା କହିଲା, ବଡ଼ ଅପାଙ୍କର ପିଲାଟିଏ ହେବ ପରା ! କେଜାଣି, ରୋଗ ହୋଇଥିବ । ସେମିତି ରୋଗ ତାଙ୍କର ହୁଏ, ଆପେ ଆପେ ଭଲ ହୁଏ ।

ତାଲେ ରୋଗ ହୋଇ ନ ଥିବ ? ସେ ଖୁସି ହେବ କି ଦୁଃଖ କରିବ ନନ୍ଦକା । ଯଦି ଅପା, ଭାଉଜ, ଜା, ନଣନ୍ଦ କି ସାଙ୍ଗସାଥୀ ହୋଇଥାନ୍ତା, ଆନନ୍ଦରେ ଲଳିତାର ଗୋଡ଼ ତଳେ ପଡ଼ନ୍ତା ନ ଥାନ୍ତା । ଭାଉଜ ତାର କେତେଥର ମା ହୋଇଛନ୍ତି । ଗଣ୍ଡା ଗୁଣ୍ଡା ମଲା ମଲା । ଭୂଇଁରେ ପଡ଼ି ପୁଅ କୁଆଁ କୁଆଁ ଡାକ ଛାଡ଼େ । କୋଳକୁ ଧରି ବସିବାକୁ ଲଳିତା ଛଟପଟ ହୁଏ । ସାତ ରାତି କେମିତି କଟିବ, ଉଠିଅଣ ହେବ, ଲଳିତା ଗୁଣି ରହିଥାଏ ।

ସେଇଠୁ ଛାତି ଖାଇବାତକ ପିଲାସଙ୍ଗେ ମାଆଙ୍କ ସମ୍ପର୍କ । ଲଳିତା ସବୁ କରେ । ଗୁଅ ମୂତ ଅପନା ବାଛେ ନାହିଁ । ଧା ଧାଉଡ଼ ନିଜେ ହାତରେ ଧୋଇ ସଫା କରେ । ଗୁଡ଼ରେ ପକେଇ ଶୁଏ । ଜଙ୍ଘ ଉପରେ ଗୋଡ଼ାଏ, ତ କଡ଼ରେ ଆଉ ଦଜଣ । ଭାଉଜ ଜାଣନ୍ତି । ପିଲାଙ୍କ ଅର୍ଦ୍ଧେକ ତାକୁ ଭଲପାଏ । ମାଈପେ କହନ୍ତି ଲୁଆଣେକ୍ଷଣରେ ହାତ ପୁଅ, ସାତ ଝିଅ ହେବେ ।

ତା 'ପା'ର ଯଦି ପୁଅ ହେବ, ଗୋଟିଏ ପିଲାକୁ ଯଉଠି ମା ପାଳି ପାରିବେ ନାହିଁ ? ମାଇପେ କହନ୍ତି, ସମକୁ ପଛେ ସାତପୁଅ ଦେବ,. ସଉତୁଣୀକୁ ଗୋଟାଏ ଦେବ ନାହିଁ । କାହିଁକି କହନ୍ତି ? ନନ୍ଦକା ତାକୁ ଦେବ ନାହିଁ ?

କାହିଁକି ସେ ଆସିଛି ଏ ଘରକୁ ? କିଏ ତାକୁ ଆଣିଛି ?

ମନ ବାହୁନି ଉଠିଲା । ତୁଣ୍ଡ ଖୋଲିଲା ନାହିଁ । ମୁହଁରେ ହସ ଲାଗି ରହିଛି । ହାତ ବୁଲୁଛି ନନ୍ଦକାର କପାଳରେ । ମନର ଭାବନା ବାହାରି ଆସିବ କି ପଦାକୁ, ତାର ଚାହାଣୀ ବାଟେ ? ଆଖିର କଥା ତ ଆଖି ବୁଝେ ।

'ପା' ଏମିତ ଚାହିଁଛି କାହିଁକି ? ଦୃଷ୍ଟି ତାର ହୃଦୟକୁ ଭେଦିଦେଲା କି ? ଉଠି ପଳାଇବାକୁ ମନ ହେଉଛି । ଗୋଡ଼ ଚଳୁନାହିଁ । ଆଉ ସେ ଚାହିଁ ପାରିବ ନାହିଁ ।

ଲଳିତା ଚୁଲିପଡ଼ି ନନ୍ଦକାର ଗୋଡ଼ରେ ହାତ ଦେଲା । ଆଖି ତାର ଓଦା ହୋଇ ଆସିଲା । ଏଥର ଲୁହ ଝରିବ । ଏ ଘରେ ତାର ଗେହ୍ଲାପଣିଆ ସରିଆସିଲା । ସେ ହେବ ଅଲୋଡ଼ା ଅଖୋଜା । ସେ ହେବ ସତେ ଗୋଟିଏ 'କା' ଯାହାର ନିଜତ୍ୱ ନାହିଁ, ଛାଇଠାରୁ ବି ସେ ହୀନ । ଛାଇର ଆକୃତି ଅଛି, ଅବସ୍ଥିତି ଅଛି, ଚଳନ ଅଛି, ଯଦିଚ ନାହିଁ ଜୀବନ, ମନ ଓ ଅନୁଭବ ଶକ୍ତି । ଆଉ 'କା', ସେତ ଗୋଟାଏ ଅଦେଖା ପଦାର୍ଥ । ପରଠାରେ ସେ ଅବତରେ । ପରର ଜୀବନ, ମନ, ଭାବନା, ଚଳନ ଓ ଅନୁଭୂତି ସବୁ ଆରୋପ କରାହୁଏ ତା'ଠାରେ । କାହାର କା ସବୁ ସେ ବାସ୍ତବ ଶବ୍ଦ ହୋଇ ଲକ୍ଷ ଲୋକଙ୍କର କାନରେ ବାଜେ ନାହିଁ । ତୁଣ୍ଡରୁ ବାହାରେ ସଭିଙ୍କର ଗୋଟାଏ ଅବାସ୍ତବ ଆବଶ୍ୟକତାର ରବ, ଆରେ, ଆରେ, ଯେ ସିନା ମଲା, ତାର ଅଛି 'କା' । ପୁଣି ସେ ଉଠୁ ।

ସେ ଉଠେ । ତାର 'କା' ବୋବାଳି ଶୁଭେ, ହା ତୁତୁ, ତୁ ତୁ— ।

ତୁ କାନ୍ଦୁଛି, କା ?

ନନ୍ଦକା ଉଠି ବସିଲା । ପାଦରେ ସେ ଅନୁଭବ କରିଛି ଲଳିତାର ତତଲା ଲୁହର ପରଶ । ମୁହଁଟିକୁ ଟେକିଧରି ପୁଣି ପଚାରିଲା, କାନ୍ଦୁଛୁ କାହିଁକି ?

ତୁ ସେମିତିକା ତରକଥା କହିଲୁ କାହିଁକି ?

ନ କହିଲେ ବି ସେଇଆ ହେବ ଲୋ, ମୋର ହେବ ମରଣ । ମୁଁ ବି ସେଇଆ ଚାହେଁ । ଆଉ ଦାହଗଣ୍ଡ ହେବାକୁ ମୋର ମନ ନାହିଁ ।

ନନ୍ଦକାକୁ କୁଣ୍ଢାଇ ଧରି ଲଳିତା; ପାଟି କରି ଉଠିଲା, ସେ କଥା ତୁ ତୁଣ୍ଡରେ ଧରନା 'ପା', ତା ହେଲେ ମୁଁ କାନ୍ଦିବି, ଝୁରିବି । ତତେ ଆଉ କଥା କହିବି ନାହିଁ !

ନନ୍ଦକାର ଅଇ ଉଠିଲା । ଲଳିତାର ଖୋଲା ପିଠି ଉପରେ ବୋହିଗଲା ଦଗ୍ଧ ଥଇର ଧାର ।

ଦଶରୁ ପାଖେଇ ଆସିଲା ।

ସୁନନ୍ଦର ବ୍ୟବସାୟ ଭଲରେ ଚାଲିଛି । ମାହାବେଳ କଟିଗଲାଣି । କଣ୍ଟ୍ରୋଲ ଉଠିଲା ପରେ ଶହ ଶହ ଦୋକାନ ଉଠି ଗଲାଣି । ସହଜଲବ୍ଧ ଲାଭର ପ୍ରଶ୍ନ ଉଠୁନାହିଁ । ବାଦବୁଦିଆ ବଜାର । ବ୍ୟବସାୟର ପ୍ରକୃତ ପରୀକ୍ଷା ଆରମ୍ଭ ହୋଇଛି । ହୁଡିଲେ ବୁଡ଼ିଲା । ହୂରକୁ ଅନେକେ ଗୋଡ଼ ଚପି ଚପି ଧୀରେ ଧୀରେ, ଅତି ସତର୍କତାରେ ଆଗେଇବାକୁ ପଡ଼ୁଛି । ଧୈର୍ଯ୍ୟ, ହସିଲା କଥା, ଭଦ୍ର ବ୍ୟବହାର, ସଚ୍ଚୋଟପଣିଆ ଓ ଜବାବ ଠିକ୍ ରଖିବା ସୁନନ୍ଦର ହେଉଛି ଉପାୟ ।

ସଙ୍ଗବିବେଚନ ଏହିସବୁ ନୀତି ଅନୁସାରେ କାମ ଆଗେଇନେଉଛି । ବୁଦ୍ଧିକୁ ଅଗାଧ ପରିଶ୍ରମ କରିବାକୁ ପଡ଼ୁଛି । ଜଣେ ବାହାର କଥା ଦେଖିଲେ ଆଉ ଜଣକ ଭିତର କଥା ବୁଝୁଛି । ନୌକରଙ୍କ ଉପରେ ସବୁବେଳେ କଡ଼ା ନଜର ରଖିବାକୁ ହେବ । ଯେହେତୁ ବିଶ୍ୱାସୀ ହେଲେ ବି ସେମାନେ ମଣିଷ ପରା, କେଉଁ ଛଟକରେ କ'ଣ କରିବେ କହି ହେବ ନାହିଁ । ଟିକିଏ ଅସାବଧାନ ହେଲେ କ୍ଷତି, ଅଥବା ଦୁର୍ନାମ ! ଦୁଇଟିଯାକ ବ୍ୟବସାୟର ପରମ ଶତ୍ରୁ ।

ଘରକଥା ବୁଝିବାକୁ ତର ନାହିଁ । ଚିଠି ଖଣ୍ଡିଏ ଲେଖିବାକୁ ବେଳ ନାହିଁ । ସବୁ ବିଷୟର ତଦ୍ଭି ନେଇ, ଏକାଉଣ୍ଟାଣ୍ଟଙ୍କ ହିସାବ ଟଙ୍କା ଓ ସ୍ୱାମୀଙ୍କର ତହବିଲ ଟଙ୍କା ମିଳାଇ ରଖି, ଯେଣୁ ତେଣୁ କରି ମୁଠିଏ ଖାଇ ବିଛଣା ଧରିଲାବେଳକୁ ରାତି ଅଧ । ତଥାପି ନିଦ ହେଉ ନାହିଁ । କେତେ ଚିନ୍ତା,—ରାମଲାଲଙ୍କୁ ଜବାବ୍ ଦିଆ ହୋଇଛି ଯୋଗାଣ ତେଲ ଦଶଠ ବାବଦ କାଲି ତାଙ୍କୁ ତିନି ହଜାର ଟଙ୍କା ଦେବାକୁ ହେବ । ଇନ୍‌କମ୍ ଟିକସ୍ ଅଫିସ ଆଜଯାଏ ଛାଡ଼ିଲା ନାହିଁ । ପାଞ୍ଚଜଣ ମଫସଲ ଖୁଚୁରା ବେପାରୀଙ୍କ ଉପରେ ଦେଢ଼ହଜାର ବାକି, ପରିଶୋଧ କରିବାକୁ ଟାଳଟୁଳ କରୁଛନ୍ତି । ଓକିଲ ନୋଟିସ ନ ଦେଲେ ଟଙ୍କା ଆଦାୟ ହୋଇପାରିବ ନାହିଁ ।

ଖବରକାଗଜରେ ପ୍ରାୟ ବାହାରୁଛି,—ଦିନ ଦୁଇପ୍ରହରରେ ଖୋଲାରେ ଡକାୟତି । ରାତିରେ ତ ଜାଣିକରି । ତ୍ରିଲୋଚନ ଶୋଇଛି । ଘର ଅନ୍ଧାର । ସ୍ୱିଚ୍‌ଟା ହାତ ପାଖରେ । ପୁଣି ଆଲୁଅ ଜଳିଲା । ରାତି ଗୋଟାଏ ବାଜିବ । ଠିକ୍ ଅଛି । ଦୁଇ ପାଖରେ କବାଟ ବନ୍ଦ । ଲୁହା ରେଲିଙ୍ଗ୍ ଓ ଭିତରେ ଲୁହା ଜାଲିଦିଆ ଝରକା ଗୁଡ଼ିକ ଖୋଲା ଅଛି; ଭୟ ନାହିଁ ।

ଦୋତାଲାର ଝରକା ପାଖକୁ କେହି ଆସିପାରିବେ ନାହିଁ । ଲୁହା ବାକ୍ସରେ ଦୁଇଟି ବଡ଼ ତାଲା ପଡ଼ିଛି । ଚାବି ତକିଆ ତଳେ । ହଁ, ଅଛି । କାନ୍ଥ କଡ଼ରେ, ଛୋଟ ଟେବୁଲ ଉପରେ ଟେଲିଫୋନ୍ । ହାତ ପାଉଛି । ଭୟ ନାହିଁ । ଏଥର ସେ ନିଶ୍ଚିନ୍ତରେ ଶୋଇବ । ସ୍ୱିଚ୍ ଟିପିଲା । ଆଲୁଅ ଲିଭିଲା । ନା, ଆଜି ଆଉ ଲଳିତାକୁ ପତ୍ର ଲେଖିପାରିବ ନାହିଁ ।

ଲଳିତାର ପତ୍ର,—ମରୁ ଭଲ ଯେ, 'ସା'ର ଦେହ ଭଲ ନାହିଁ । ମୁଣ୍ଡବୁଲା, ବାନ୍ତିଉଛୁଳା, ଦୁର୍ବଳତା, ନ ଧରିଲେ ଖଟରୁ ଉଠି ଦାନ୍ତ ଘଷିବାକୁ ଯାଇପାରୁନାହିଁ । ସମସ୍ତେ ଚିନ୍ତିତ, ତା'ର କଅଣ ପିଲା ହେବ । ସେ କହୁଛି, ନାଇଁ ଲୋ ମୋର ଏଇଟା ରୋଗ, ବେଳେ ବେଳେ ଏମିତି ହୁଏ, ଏଥର ବଢ଼ିଛି, ମରିବ । କେମିତି ଡରିଲା କଥା ସେ କହୁଛି ! କେଜାଣି ବା ମତେ ଲୁଚଉଛି । ସତକଥା ତମେ ଲେଖିବ, ଡାକ୍ତରଙ୍କୁ ବୁଝିବ ।

ଏ ମହଲ ଉତ୍ତର ଲେଖିବାକୁ ସେ ବେଳ ପାଇ ନାହିଁ । ପୁଣି ସେ ପତ୍ର ଲେଖିଲଣି,—'ସା' ଟିକିଏ ଭଲ ଅଛି । ଗୋଟିଏ କଥା ନ ଲେଖି ମୁଁ ରହି ପାରୁ ନାହିଁ । ମୋ'ର କି ଦୋଷ ତମେ ବୁଝିବ । ବୋଉ କାହିଁକି ସବୁବେଳେ ମୋ ଉପରେ ଚିଡ଼ିବେ ? 'ସା' ପାଖରେ ରାତି ଅଧଯାଏ ଥିଲି, ସେ କହିଲାରୁ ଆସି ଘରେ ଆସି ଶୋଇଲି । ସକାଳୁ ଉଠୁ ଉଠୁ ଟିକିଏ ଡେରି ହେଲା । କିଏ ଉଠେଇଦେଲେ ନାହିଁ । ସକାଳୁ ଉଠି 'ସା' ଗଲେ ଗୋଷ ଘରକୁ । ତାକୁ ଯିବାକୁ ମୁଁ ମନା କରିଥିଲି । ସେଇଠି ସେ ଅ ଅ ହୋଇ ବାନ୍ତି କଲା । ଅଖି କାନ ବୋଜି ପିଣ୍ଡା ଉପରୁ ତଳକୁ ଗଡ଼ିପଡ଼ିଲା । ପାଣି ମନ୍ଦାଏ ଦେବାକୁ ପାଖରେ କେହି ନାହିଁ । ବୋଉ ନିଜେ ଧାଇଁଆସିଲେ । ତାଙ୍କ ପାଟି ଶୁଣି ମୁଁ ଧାଇଁ ଆସିଲି, ନନା ବି ଆସିଲେ ।

ଦୋଷ ହେଲା ମୋର ଯେ ମୁଁ କାହିଁକି ଆଗରୁ ନ ଉଠିଲି, 'ସା' କାହିଁକି ଗୋଷଘରକୁ ଗଲା ? ଯେତେ କଥା କହି ବୋଉ ଶୋଧିଲେ, ମୁଁ ଲେଖି ପାରୁ ନାହିଁ । ହେଲା ମୁଁ ଗ୍ରେଟ ଘରର ଝିଅ, ମୋ ବାପଭାଇଙ୍କ ଭିଖାରି । ମୁଁ କଣ ବଳେ ବଳେ ଆସି ତମ ଘରେ ପଶିଥିଲି କି ? କାମ କଲେ ମୁଠିଏ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ ଦେଉଛ, ସେତକ ଦେବାକୁ ବହୁତ କଷ୍ଟ ହେଉଛି, ମତେ ମୋ ବାପ ଘରେ ଛାଡ଼ିଦେଇ ଆସ । ଲୋକଙ୍କୁ ଶୁଣେଇ ମତେ କାହିଁକି ସେ କହିବେ ଯେ ମୁଁ ହିଂସେଇ ମୁଁ ବାଦୋଇ ? କେଉଁ କଥାରେ ମୁଁ କାହା ସଙ୍ଗେ ହିଂସା ଦାଉ କଲି କି ?—

ସୁନ୍ଦରର ନିଦ ହେଉ ନାହିଁ । ଲଳିତାର ଛଅଟି ବାରମ୍ବାର ପଢ଼ି ସେ ମୁଖସ୍ଥ କରିଦେଲେଣି । ଅତି ଜଟିଳ ପରିସ୍ଥିତି । ଏଣୁ ମାରିଲେ ବ୍ରହ୍ମହତ୍ୟା, ତେଣୁ ମାରିଲେ ଗୋହତ୍ୟା । ମାଆଙ୍କୁ କହିହେବ ନାହିଁ, ଲଳିତାକୁ ସାନ୍ତ୍ୱନା ଦେଇହେବ ନାହିଁ । ସେଇଥିପାଇଁ ସେ ଚିଠିର ଉତ୍ତର ଦେଇ ପାରି ନାହିଁ, ଘରକୁ ବି ଯାଇ ପାରୁ ନାହିଁ । ଘରେ ଅଶାନ୍ତି ଆରମ୍ଭ ହେଲାଣି । କିପରି ସେ ସମାଧାନ କରିବ ? ସତ ଘଟଣାଟି ନଜିଣା ସେଇଠି ନ କହିଲେ କାହିଁକି ? କଥାକୁ ଏତେ ଦୂର ଆଗେଇ ଜଟିଳତା ଓ ଅଶାନ୍ତି ବଢ଼ାଇବାକୁ କାହିଁକି ସେ ମନ କଲେ ?

ସେ କଅଣ ଲଳିତା ଉପରେ କୌଣସି କାରଣରୁ ବିମୁଖ ହୋଇଛନ୍ତି ? ଦୁହିଁଙ୍କର କ୍ଷୀରନୀର ସମ୍ବନ୍ଧ । ଜଣକ ଭିତରେ ଆଉ ଜଣକ ନିଜର ଉପସ୍ଥିତି ଅନୁଭବ କରେ । ନିଜର କଥାକୁ ପଛରେ ପକାଇ ସେ ଭାବେ ଆରଜଣର କଥା । ତେବେ, ଏପରି ହେଲା କାହିଁକି ?

ସୁନନ୍ଦର ମନେ ପଡ଼େ—

'ମା' ମୋ କଥା ଶୁଣିବ ବୋଲି ଚେଇଁଛୁ । ତମେ ଏଇଠି ଶୋଇପଡ଼ । ମୁଁ ଯାଏ ତା ପାଖକୁ । ଛାଡ଼ ମୋର ହାତ, ମୋ ରାଣ ।

ମୁଁ ବି କଥା ଶୁଣିବି ।

ଚାଲ ତା ପାଖକୁ, ଦୁହେଁ ଶୁଣିବା, ପୁରୁଣା ଗପ ।

ନନ୍ଦିକା ଆଲୁଅ ତେଜେ । ମଶାରି ପଡ଼ିନାହିଁ । ଲଳିତା ଶୋଇପଡ଼ିଲାଣି । ମୁହଁରେ ମଶା ବସୁଛନ୍ତି ।

ଆହା, ଦିନସାରା ପରିଶ୍ରମ କରି ପିଲାଟା କ୍ଲାନ୍ତ ହୋଇ ଶୋଇପଡ଼ିଲାଣି । ଉଠେଇବି ନାହିଁ । କାଲି ସେ ଗପ ଶୁଣିବ । ଏତେ ରାତି ଯାଏ କେଉଁଠି ବସି ଗପ କରୁଥାଆନ୍ତି, ରାତି ବଢ଼ିଲଣି ।

ଲଳିତାର ମୁହଁରୁ ନନ୍ଦିକା ମଶା ହୁରୁଡ଼େଇଦିଏ । ମଶାରି ପକାଏ । କହେ, ଆରେ, ଆଲୁଅଟା ଲାଗୁଛନି କାହିଁକି ? ହଉ, ଶୋଇପଡ଼ ।

ଅନ୍ଧାରରେ ନନ୍ଦିକାର ପଛେ ପଛେ ଚିପେଇ ଚିପେଇ ନିଶ୍ୱାସ ବନ୍ଦ କରି ସେ ଆସେ । ନନ୍ଦିକା ମଶାରି ପକାଇ ଶୋଇଲାଣି । ଧୀରେ ଧୀରେ ମଶାରି ଟେକି ସୁନନ୍ଦ କହେ ମତେ ତ ନିଦ ମାଡ଼ୁନାହିଁ, ମୁଁ କାହାଣୀ ଶୁଣିବି । କହ । ତମ 'ମା' ନିଶ୍ଚିନ୍ତରେ ଶୋଇଛୁ । କାମ କରି ସେ କ୍ଲାନ୍ତ, ନିଦ ଭାଙ୍ଗିବ ନାହିଁ ।

ଶ୍ରେଷ୍ଠ ଗପଟିଏ କହିବ ।

ହଁ, ଅତି ଶ୍ରେଷ୍ଠ ।

ଅଗନାଗି ବନନ୍ତ ଭିତରେ—

ସେ ଗପ ମୁଁ ଶୁଣିବି ନାହିଁ ।

ଆଉ କେଉଁ ଗପ ?

ତୁମେ ଜାଣ ନାହିଁ, ମୁଁ କହିବି ।

କହ ।

ହଷ ହଷ ହଭ ପାହାଡ଼ ମନ୍ଦିରେ —

ଭଁ—ଭଁ—!

ଉପତ୍ୟକାଟିଏ—

ଆରେ— !

ଯେବେ, ମୁଁ କହିପାରିବ ନାହିଁ !

ମତେ ବି ନିଦ ମାଡ଼ିଲାଣି ।

ଅନ୍ଧାର ହିଁ କଥା କହେ ।

ସେଇ ନିଗଞ୍ଜ ଅନ୍ଧାରର ଦୁର୍ଭେଦ୍ୟ ପରଦା ଉହାଡ଼ରେ ଲଳିତାର ଆଖିରୁ ଲୋତକ ଗଡ଼େ । ପିଣ୍ଡରୁ ପ୍ରାଣ ଗ୍ରୁଡ଼ିଲା ପରି ଲାଗେ । ଲୁହରୁ ଉଠେ ଅଦମନୀୟ କୋହ । ପାଟିରେ ଅଞ୍ଚଳ ଭରି ସେ ପଡ଼ିରହେ ।

ସେ ଛଳନା କରି ଶୋଇଥିଲା । ନନ୍ଦିକା ଜାଣେ ନାହିଁ, ସୁନନ୍ଦ ଜାଣେ ନାହିଁ । ନ ଜାଣନ୍ତୁ, ଦୁହେଁ ତାର ଶତ୍ରୁ । କାହାରିକୁ ସେ କଥା କହିବ ନାହିଁ ।

ରହିବ କିପରି ଏ ଘରେ ? ଆତ୍ମହତ୍ୟା କରିବ ?

ଦିନର ଆଲୁଅ ଦୁନିଆର ହସ ବିକଶାଏ । ବଖୋଇଲା ମନର କଳୁଷ ନାଶେ ମଣିଷର ବିସ୍ମୃତି କୁହାଟ,—ସେମାନେ ସଉତୁଣୀ ନୁହନ୍ତି ଗୋ, ସେମାନେ ଦୁଇଟି ସାଥୀ, ଦୁଇଟି ବନ୍ଧୁ, 'ମା' ଓ 'କା'।

ସକାଳର ଆଲୁଅରେ ସୁନନ୍ଦ ଦେଖେ ଲଳିତାର ହସିଲା ମୁହଁ ।

ସେ ପଚାରେ, କୁଆଡ଼େ ଯାଉଛ ? ଜଲ୍‌ଦି ଫେରିବ, କହୁଛି । କେଉଁଠି ଗପ କରୁ କରୁ ଦିନ ଘଣ୍ଟା କରିବ ନାହିଁ, ଜଳଖିଆ ଖାଇ ପୁଣି ପଛେ ଯିବ ।

ଆଲୋ, 'ମା' !

ଏମିତି ଚାହିଁକି ଅନେଇଛୁ ବା ?

ବିଲେଇ ଖୋଜୁଛୁ ।

ଦୁଷ୍ଟ !

ସୁନନ୍ଦ ପଛକୁ ଫେରି ଚାହେଁ । ଲଳିତା ନନ୍ଦିକାର ହାତ ଧରିଛି ।

ଗାମୁଛା ଖଣ୍ଡି ଏକାନ୍ତରୁ ନେଇ ସେକାନ୍ତରେ ଥୋଇ ସୁନନ୍ଦ ପଦାକୁ ଚାଲିଯାଏ । ତାର ମନ କହେ, ଲଳିତା କେଡ଼େ ଭଲ ! ନନ୍ଦିକା ବି ।

ଆଖିକୁ ନିଦ ଆସୁନାହିଁ । ବ୍ୟବସାୟର ଚିନ୍ତା ଦୂରେଇଯାଇଛି । ଅନ୍ଧାର ଘୋଟିଛି ବାହାରେ ଓ ଭିତରେ । ଘଣ୍ଟାର ଟିକ୍ ଟିକ୍ ଓ ନିଜର ନିଶ୍ୱାସ ଶବଦ କାନରେ ବାଜୁଛି । ରାତି ବାରଟା ।

ଆଜି ସେ ଜଲ୍ଦି ଖାଇଛି । ନନ୍ଦିକା ଓ ଲଳିତାଙ୍କର କାମ ସରି ନାହିଁ । ସେମାନେ ଶୋଇବାଘରେ । ଦୁଇ ଘରେ ପଲଙ୍କ ଉପରେ ଦୁଧଫେଣ ପରି ବିଛଣା । ନିଜ ମାଳ ମାଳ ଫୁଲ ଝାଙ୍କିଛି । ବିଛଣାରେ ପକାଇଛି । ନନ୍ଦିକାର ଚମ୍ପାଫୁଲରେ ଶରଧା, ଆଉ, ଲଳିତାର ମଲ୍ଲୀଫୁଲରେ । କିନ୍ତୁ ଦୁହିଁଙ୍କର ଶରଧାକୁ ମିଶାଇ ଦେଇଛି, ପୁଣି ନିଜର ସ୍ନେହରେ ବାନ୍ଧିଛି ଦୁହିଁଙ୍କୁ । ସେଇଥିପାଇଁ ସବୁ ଫୁଲ ମିଶାଇ ସେ ମାଳ କରିଛି ।

ସୁନନ୍ଦ ଠିଆ ହୋଇ ରହିଲା । ଲଳିତାର ଘର ଏ, ସେପଟେ ତାର ମନ ଭିତରେ ଗୋଟିଏ ଆସନରେ ବସିଛନ୍ତି, କାହିଁକି ଏ ଭେଦ ? ନିଜକୁ ଦୁଇ ଭାଗ କରି ଦୁଇଟି ମୂର୍ତ୍ତି କରିପାରିବ ନାହିଁ, ଦୁଇଟି ମୂର୍ତ୍ତିକୁ ମିଶାଇ ଗୋଟିଏ ମୂର୍ତ୍ତି କରିବାର ଶକ୍ତି ଦୁନିଆରେ କାହାରି ନାହିଁ । ବରଂ ସେ ଏଇ ମଝିଘରେ ଆଣି ଗୋଟିଏ ପଲଙ୍କ ପାରିବ । ଏ ଘରେ ନନ୍ଦିକା, ସେ ଘରେ ଲଳିତା, ଦୁଇ ନାକ ପୁଡ଼ାରେ ଆତଯାତ ହେଉଥିବା ନିଶ୍ୱାସ ଭଳି ।

ଲଳିତା ଆସୁଛି, କେତେ ପ୍ରଫୁଲ୍ଲ ଦିଶୁଛି । ଦୁଇ ବନ୍ଧୁଙ୍କ ଭିତରେ କ'ଣ ହସକଥା ପଡ଼ିଥିଲା ପରା । କଥା ସରିଛି, ତାର ପ୍ରଭାବ ହସଟା ଏବେ ବି ଲାଖିରହିଛି ମୁହଁରେ ।

ଲଳିତା ମୁହଁ ଖୋଲିଲା, ଏ ଘରୁ ସେ ଘର ଟହଲ ମାରୁଛ କାହିଁକି, ଶୋଇପଡ଼ୁନ ?

କେଉଁଠି ?

ଓ, ସେଇକଥା ଭାବି ସ୍ଥିର କରି ପାରୁନ ?

ବତେଇ ଦିଅ ।

ଅତି ସହଜ, ଯେଉଁଠି ତମର ମନ ।

ସୁନନ୍ଦ ଲଳିତାର ହାତ ଧରିନେଲା । ଚୁମା ଦେଲା । କହିଲା, ମନଟା ଏଘରୁ ସେ ଘର, ସେ ଘରୁ ଏ ଘର ହେଉଛି ।

ନିଦ ମାଡ଼ୁନାହିଁ ତେବେ । ଯାଉନ ସଦାରୁ ଟିକିଏ ବୁଲିଆସିବ । ଟର୍ଚ୍ଚ ଆଲୁଅଟା ନେଇ ଯା । ଆଜି ଆକାଶରେ ଜହ୍ନ ନାହିଁ । ହେଲେ, ନକ୍ଷତ୍ରଗୁଡ଼ା ହାହୁଯାଉ ହେଉଛନ୍ତି । ଗୋଟି ଗୋଟି କରି ସଭିଙ୍କି ଥରେ ଥରେ ଚାହିଁବ । ସେଇଠୁ ତମ ଆଖିକୁ ନିଦ ଆସିବ । ଢୁଳେଇ ଢୁଳେଇ ଫେରିଆସିବ । ଯେଉଁଠି ହେଲେ ଶୋଇପଡ଼ିବ । କଟକରୁ ଧାଇଁ ଆସିଛ ସାଇକେଲ ଚଢ଼ି, ମଟରଗାଡ଼ି କିଣୁନ ?

ସହର ତଳରେ ମଟର ଚାଲେ ନାହିଁ ।

ଉଡ଼ାଜାହାଜ ?

ଆମ ଅଗଣାରେ ଓହ୍ଲେଇପାରିବ ନାହିଁ ।

ବଳଦଗାଡ଼ି ?

ସେଇଥିରୁ ଗୋଟାଏ କିଣିବ । କଟକରୁ ଏଠିକି ଆସିବାକୁ ଦିନଟିଏ ଲାଗିବ । ହଲଦୋହଲ ଆସି ପହଞ୍ଚିଲାବେଳକୁ ଦେହହାତ ଦରଜ ହେଇଥିବ ।

ତମର ସାଇକଲ ଭଲ ।

କ୍ଳାନ୍ତ ଲାଗେ । ନିଦ ଘୋଟି ଆସୁଛି ।

ଆସ ।

ହାତ ଧରି ଲଳିତା ସୁନନ୍ଦକୁ ଓଟାରିନେଲା । ନନ୍ଦିକାର ପଲଙ୍କ ଉପରେ ଦୁହେଁ ବସିଲେ । ଲଳିତା କହିଲା, ମୁଁ ମଶାରି ପକାଇଦେଉଛି, ସୁନା ପିଲାଟି ପରି ଶୋଇପଡ଼ ତ । 'ସା' ଗଲାଣି ବୋଉଙ୍କ ଗୋଡ଼ ଘଷିବାକୁ । ଚାକରବାକରଙ୍କୁ ଖାଇବାକୁ ଦେଇ ରୋଷଘର ବନ୍ଦ କରିବା ଆଜି ମୋ କାମ । 'ସା' ଭଲ କଥାଟିଏ କହୁଥିଲା, ଅଧା କରିଛି । ସେ ଶୋଇବ ମୋ ପାଖରେ । ଗପ କହିବ ।

ମୁଁ ବି ଶୁଣିବି ।

ଭଲ ଶୁଣିବ । ତମେ କ୍ଳାନ୍ତ ହୋଇଛ, ଶୋଇପଡ଼ । ଗପ ଶୁଣି ଅନିଦ୍ରା ହେଲେ ଦେହ ବିଗିଡ଼ିବ ।

ଲଳିତା ମଶାରି ଟାଣିଲା । ବାରଣ୍ଡାର କବାଟ ବନ୍ଦ କଲା । ଆଲୁଅ ଲିଭାଇ ମଝିଘରବାଟେ ନିଜ ଘରକୁ ଚାଲିଗଲା । ସୁନନ୍ଦ ଶୋଇ ପଡ଼ିଲା ନିଶ୍ଚିନ୍ତ ହୋଇ ।

ଜଣା ଗଜୁଁଛି । ଘର ଅନ୍ଧାର ।

କିଏ ଘଷୁଛି ତା ଗୋଡ଼ ? ନନ୍ଦିକା ! ମୁଠି ମୁଠି ଘଷା । କ୍ଳାନ୍ତ ଦେହକୁ ନନ୍ଦିକାର ଘଷା ଭଲ ଲାଗେ । ଲଳିତା ବି ଏମିତି ଘଷେ ।

କେତେବେଳକୁ ନନ୍ଦିକା ଗପ ଶେଷ କରି ଆସିସାରିଲାଣି । ସେ ଘରଟା ବି ଅନ୍ଧାର ଦିଶୁଛି । ଲଳିତା ଶୋଇପଡ଼ିଲାଣି ।

ନିଶା ଗର୍ଜୁଛି । ସୁନନ୍ଦର କ୍ଳାନ୍ତ ଆଖିପତା ପୁଣି ମୁଦ ହୋଇଆସିଲା ।

ସୁନନ୍ଦର ଦେହରେ ଲାଗିଲା କୋମଳ ପରଶ । ତାର ନିଦ ଭାଙ୍ଗିଲା । ସେ ଶୁଣିଲା ନନ୍ଦିକା ଶୋଇପଡ଼ିଲାଣି । ତା'ର ଆଗ୍ରହୀ ହାତ ଗୁଡ଼ାଇ ଧରିଲା ଶୋଇଲା ସାଥୀକୁ ।

ସଜ ସକାଳର ସତେଜ ଶୀତୁଆ ଆଲୁଅ ସୁନନ୍ଦର ଆଖିରେ ବୋଳିଲା କପୂର ଗୁଣ୍ଡ । ମିଞ୍ଜି ମିଞ୍ଜି କରି ସେ ଆଖିପତା ଖୋଲିଲା । ପାଖରେ ନନ୍ଦିକା ନାହିଁ । କଡ଼ ଲେଉଟାଇ ଦେଖିଲା, ଲଳିତା କବାଟ ଖୋଲି ପଦାକୁ ବାହାରି-ଯାଉଛି ।

ସେ ଉଠିବସିଲା । ମଶାରି ଟେକିଲା । ହଁ, ଏ ନନ୍ଦିକାର ଘର, କିନ୍ତୁ ସେ କାହିଁ ?

ସୁନନ୍ଦ ଆର ଘରକୁ ଗଲା । ଧୀରେ ଧୀରେ ମଶାରି ଅଳପ ଟେକିଲା । ନନ୍ଦିକା ଶୋଇଛି, ଲଳିତା ନୁହେଁ ।

ହୁଁ, ନନ୍ଦିକାର କାଣ୍ଡ । ମଜା କରୁଛି, ନା ?

ଧୀରେ ଧୀରେ ସୁନନ୍ଦ ତାର ପାଖରେ ଶୋଇଲା । ଘୁଙ୍ଗୁଡ଼ି ମାରିଲା । ଘୁଞ୍ଚି ଘୁଞ୍ଚି ଲାଗିଆସିଲା ପାଖକୁ ।

ନିଶ୍ଚଳ ହୋଇ ଶୋଇରହିଲା ସୁନନ୍ଦ । ଆଖିପତା ଅଳପ ମୁକୁଳା କରି ଚାହିଁଲା ।

ନନ୍ଦିକାର ନିଦ ଭାଙ୍ଗିଲାଣି । ସେ ଉଠି ବସିଲାଣି । କାବା କାବା ହୋଇ ଚାହୁଁଛି । ସେ ତଳକୁ ଓହ୍ଲାଇଲା । ମଶାରି ଟେକିଲା । ବୁଝିଲା କି କଣ, ହସିଲା କାହିଁକି ? ମୁହଁ ନୁଆଁଇଲା ।

ସୁନନ୍ଦ ଆଖିପତା ବୁଜି ରଖିଲା ।

ଦେହରେ ବିଜୁଳିର ଚମକ ଖେଳାଇ ସିଏ ତାର ମୁହଁରେ ବୋକ ଦେଲା, ତାକୁ ଦୁଇ ବାହୁରେ ଗୁଡ଼ାଇ ଧରିବାକୁ ଉଚ୍ଛନ୍ନ ହାତ ବଢ଼ାଉଣୁ ବିଜୁଳି ବେଗରେ ସେ ଖସି ପଳାଇଲା ।

ମୁଗ୍ଧ ଦୃଷ୍ଟି ଗୋଡ଼ାଇଗଲା ପଛରେ ।
ମଧୁର ସ୍ମୃତି ।

ସୁଖ ଆନନ୍ଦର ସଂସାରରେ କାହିଁକି ବହିବ ଅଶାନ୍ତିର ଝଡ଼ ?

ନନ୍ଦିକାର ସନ୍ତାନ ହେବ । ଡାକ୍ତର ଭୋଇ କହିଥିଲେ, ବିପଦ, ପିଲା ଯଦି କେବେ ପେଟରେ ରହେ, ପେଟ ନ ଚିରିଲେ ସେ ପଦାକୁ ଆସିବ ନାହିଁ । ପେଟ ଚିରିବା ବିପଦ ନୁହେଁ । ବଡ଼ ବଡ଼ ଡାକ୍ତର କହିଲେଣି, ବିପଦର ଆଶଂକା ମୋଟେ ନାହିଁ, ପେଟ କାଟି ଶହ ଶହ ପିଲା କଢ଼ାଯାଉଛନ୍ତି ।

ନନ୍ଦିକା ପେଟରୁ ଜନମ ଲଭିବ ପୁଅଟିଏ, ସେ ହେବ ବଂଶର ଆଲୋକ । ଅବିକଳ ନନ୍ଦିକା ପରି ସୁନ୍ଦର ହେବ ସେ, ଦଉଡ଼ି ମାତାର ସନ୍ତାନ । ଏ କୋଳରୁ ସେ କୋଳକୁ ଡେଇଁ ଖେଳିବ । ମା'ଆଙ୍କର ମନକାମନା ପୂର୍ଣ୍ଣ ହେବ । ସେଥିଲାଗି ସେ ଉଦ୍‌ବିଗ୍ନ, ନନ୍ଦିକାର ଭଲମନ୍ଦ ପାଇଁ ବ୍ୟାକୁଳ ।

ବୁଝାଇଦେଲେ ବଲେ ଲଳିତା ବୁଝିବ ଯେ ମା ବୁଢ଼ୀ ହେଲଣି, ବୁଢ଼ୀ ମଣିଷର କଥାରେ ରୁଳ କରିବା ଉଚିତ ନୁହେଁ ।

ସୁନନ୍ଦ ରାଜୀବକୁ ଡାକିଲା । କହିଲା, କିଛିଦିନ ପାଇଁ ମୁଁ ଗାଁରେ ରହିବ, ବେପାରର ଭଲମନ୍ଦ କଥା ତୁ ବୁଝିବୁ ।

ସବୁ ଚଳାଇନେବ ଯେ, ତେବେ—

ମୋ'ଦଙ୍କର ଟଙ୍କା ଏଷସ୍ଥ ଖବୁଛୁ ?

ପୁଣି, ମକଦ୍ଦମା ତାରଖ କଥା । ଆପଣ ନ ଥିଲେ ଓକିଲ ଭଲ କାମ କରିବେ ନାହିଁ । ଆପିଲ ଯଦି ମଞ୍ଜୁର ନ ହୁଏ, ଜାଣ ଏଇ ସେଲଟିକସ ପାଇଁ ବେପାର ବୁଡ଼ିବ । ମକଦ୍ଦମା ତାରଖ ତ ଦିନ ପାଞ୍ଚଟା ରହିଲା, ତା ପରେ ଘରକୁ ଗଲେ ନିଶ୍ଚିନ୍ତ ହୋଇ ପାରିବେ ।

ଘରେ ଟିକିଏ ଅଶାନ୍ତି ସୃଷ୍ଟି ହୋଇଛି ।

ରାଜୀବକୁ ଚନ ସେ କଥା ଜାଣେ, ସୁମିତ୍ରା ଲେଖି ଜଣାଇଛି ।

ରାଜୀବ କହିଲା, ସଂସାର କଲେ କେତେ ଅଶାନ୍ତି ଆସେ, ସେଥିପାଇଁ ଧୈର୍ଯ୍ୟ ଲୋଡ଼ା । ତୁମ ରହି ସବୁ କଥାକୁ ହସି ଉଡ଼ାଇଦେବା ଭଲ । କାହାର ପକ୍ଷ ନେଇ ପଦଟିଏ ଯଦି ପାଟିରୁ ଖସେ, ଘରେ ଓ ବାହାରେ ତୁମୁଳ କାଣ୍ଡ ଘଟିବ । ଦୁଇ ଚାରିଦିନ ପରେ ଆପଣ ଘରକୁ ଗଲେ ଭଲ ହେବ ।

ମାନଭଙ୍ଗ ହେଲେ ମଧ୍ୟ ସୁନନ୍ଦ ରାଜୀବର ଉପଦେଶ ଅନ୍ୟଥା କରେ ନାହିଁ । ଚୁରିଆଡ଼କୁ ଶିବଚନ୍ଦ୍ର ସେ ମୁହଁ ଖୋଲେ ।

କଥା ବୁଲାଇ ସୁନନ୍ଦ କହିଲା, ଟଙ୍କା କଥା ତୁ ଭାବ ନାହିଁ, ଦିନ ସାତଟା ପାଇଁ କାହାଠାରୁ ଟଙ୍କା ପାଞ୍ଚହଜାର ଧାର ଆଣିବା, ନୋହିଲେ ଘରୁ ଆଣିବା ! ଅତନୁବାବୁଙ୍କର ଆଜିକାଲି ଭଲ ରୋଜଗାର ହେଉଛି ପରା !

ତୁଳସୀପୁରର ନୂଆ କୋଠାରୁ ଜଣା ପଡୁଛି ଭାଇ, ଛବି ଦେଖିବାଟା ଆଜିକାଲି ଲୋକଙ୍କର ଗୋଟାଏ ରୋଗ ହୋଇପଡ଼ିଛି ।

ମୁଁ କହୁଛି, ରୋଗ ନୁହେଁ ଯେ, ନିଶା ।

ହଁ, ନିଶା, କି ଝିଙ୍କ ! ସ୍କୁଲ କଲେଜ ପିଲା ବାପଙ୍କର ପଇସା ସେଇଠି ଉଡ଼ାଉଛନ୍ତି । ପଇସା କେମିତି କେଉଁଠୁ ଆସେ ତାଙ୍କୁ ଜଣା ନାହିଁ ସିନା, ଦୋକାନଠୁ ଆରମ୍ଭ କରି ରିକ୍ସାଟଣାଳି ମୂଲିଆ ମୂର୍ଖ ବି ସେଇଥିରେ ବାଇ ହୋଇଛନ୍ତି । ସିନେମା ବେପାରଟା ମନ୍ଦ ନୁହେଁ ।

ଆମେ ଗୋଟାଏ କରିବା କି ?

ରାଜୀବ ଅଡୁଆରେ ପଡ଼ିଲା । ଟିକିଏ ଚିନ୍ତା କରି କହିଲା, ନୂଆ ବେପାର କରିବାକୁ ହେଲେ ସବୁ ବିଷୟ ଭଲ କରି ପରୀକ୍ଷା କରି ଦେଖିବା ଦରକାର । ଯାହା ଆମର ଚାଲିଛି ସେତିକି ଆଗ ଭଲରେ ସୁରୁଖୁରୁରେ ଚାଲୁ ।

ଆଚ୍ଛା, ଅତନୁବାବୁଙ୍କୁ ଧାର ମାଗେଁ ତ ।

ଚେଷ୍ଟା କରି ଦେଖନ୍ତୁ, ଭାଇ !

ଅତନୁବାବୁଙ୍କ ସଙ୍ଗରେ ଦି'ପହରେ ସୁନନ୍ଦର ଦେଖା ହେଲା । ସେତିକି ବେଳେ ସେ ଘରେ ରହନ୍ତି । ଅନ୍ୟ ସମୟରେ ବାହାରେ ବୁଲୁଥାନ୍ତି । ତୁଳସୀପୁରରେ ସେ ନିଜର ନୂଆ ଘର ତୋଳିଛନ୍ତି । ନଅ ଦଶ ଗୁଣ୍ଠ ଜମିର ଗୋଟିଏ ପାଖରେ ବଙ୍ଗଳା ଟାଇପ୍‌ର ଘର । ବାକି ସ୍ଥାନରେ ଆରମ୍ଭ ହୋଇଛି ବଗିଚା । କଲମିଗଛ ଧାଡ଼ି ଧାଡ଼ି । ନିଜେ ରହିନା ସେ ସବୁର ତଦ୍ୱ ନେଉଛନ୍ତି । ମଲସ୍ତ ଓ ଛଟେଲା ପଛରେ ଗୋଡ଼ାଉଛନ୍ତି । ଦୁଇଟି ମୂଲିଆ କାମ କରୁଛନ୍ତି ।

ପୁରୁଣା ମଟରଗାଡ଼ି କେବେଠାରୁ ବିକା ସରିଲାଣି । କିଣା ହୋଇଛି ନୂଆ ଗାଡ଼ି । ଅତନୁବାବୁ ଭଲ ଅଛନ୍ତି । ଠିକ-ଠିକ୍-ଓ୍ୱାଲା ସଙ୍ଗେ ମିଶି ବେପାର କରି ସେ ବେଶ ଆଗେଇ ଚାଲିଛନ୍ତି, ତଥାପି ସୁନନ୍ଦକୁ ଟଙ୍କା ଧାର ଦେବାକୁ ଅକ୍ଷମ ବୋଲି ଦୁଃଖ ପ୍ରକାଶ କଲେ । କହିଲେ, ସବୁ ଚାଲିଛି, ଧାରରେ ସୁନନ୍ଦବାବୁ, କେବଳ ଭେକ ରଖିବାକୁ, ଟେକ ରଖିବାକୁ ଏ ସବୁ ଦାଣ୍ଡଦେଖାଣ । ଡଙ୍ଗା ଯଦି କେବେ ବୁଡ଼େ ତ ଏକାଥରେ ଅତଳ ତଳେ ଲାଗିବ ।

ଲାଭ ହେଉ ନାହିଁ ?

ଯଥେଷ୍ଟ ହେଉଛି । ଲୋକେ ଜାଣିବାକୁ ସିନେମା ଘର ମୋର, କିନ୍ତୁ ଠିକ୍-ଠିକ୍ ଓ୍ୱାଲାଙ୍କ ସଙ୍ଗେ ଯେଉଁ ଏଗ୍ରିମେଣ୍ଟ ହୋଇଛି, ତା'ର ସର୍ତ୍ତ ପୂରଣ କରିବାକୁ ସବୁ

ଆସୁ କଅଣ । ଦେଖନ୍ତୁ, ମୁଁ ହୋଇଛି ଜଣେ ଦରମାଖିଆ କର୍ମଚାରୀ । ଆପଣ ମୋର ବନ୍ଧୁ ବୋଲି ସତ କଥାଟି ଆପଣଙ୍କୁ ଜାଣିବାକୁ ଦେଲି ।

ଏଗ୍ରିମେଣ୍ଟ କାଟି ଦେଉ ନାହାନ୍ତି ?

ପନ୍ଦର ହଜାର ଟଙ୍କା କ୍ଷତିପୂରଣ ଦେବାକୁ ପଡ଼ିବ ।

ବରଂ, ଦେବା ଭଲ ।

ରୁହିନା ସେହି କଥା କହୁଛନ୍ତି । ତାଙ୍କର ଆଉ କିଛି ଗହଣା ବିକି କ୍ଷତିପୂରଣ ଦେଇ, ମୁଁ ମୁକ୍ତି ଲାଭ କରିପାରନ୍ତି; କିନ୍ତୁ ତା'ପରେ ମୁଁ କରିବି କଅଣ, ସେଇକି ମୋର ଭାବନା ।

ଅନ୍ୟ ବ୍ୟବସାୟ ?

ଖାଲି ଏକ୍ସପେରିମେଣ୍ଟ କରି ଥରକୁ ଥର ଲସ୍ ଦେଉଥିବି ? ଅନ୍ତତଃ ପାଞ୍ଚଶହ ମୁଦ୍ରା ତ ମାସକୁ ମାସ ମିଳୁଛି, ବ୍ୟବସାୟ ଭଲ ଚାଲିଲେ ଆହୁରି ଅଧିକ ମିଳିପାରେ ।

ରୁହିନା ଆସିଲେ । ଡ୍ରଇଂ ରୁମରେ ସୁନନ୍ଦକୁ ଦେଖି ନମସ୍କାର ଜଣାଇ କହିଲେ, ଏତେଦିନକେ ଆମେ ମନେ ପଡ଼ିଲୁ ?

ସୁନନ୍ଦ ପ୍ରତିନମସ୍କାର କଲା । ହସହସ ହୋଇ ମଲୟ ଓ ଛବିଳାଙ୍କୁ ପାଖକୁ ଟାଣିଲା । ଦୁହିଁଙ୍କ ହାତରେ ଦୁଇ ପ୍ୟାକେଟ୍ ଲେମନ୍‌ଡ୍ରପ୍ସ ଧରାଇଦେଇ ରୁହିନାଙ୍କୁ କହିଲା, କ୍ଷମା କରିବେ, ଆସିବାକୁ ବେଳ ପାଇନାହିଁ ।

ଆୟା ଆସି ଛବିଳା ଓ ରୁହିନାଙ୍କୁ ଡାକିନେଇଗଲା । ଅଧା ବୟସିଆ ସ୍ତ୍ରୀଲୋକଟିଏ, ଅଳପ ଗୋରା, ବେଶ୍ ମୋଟାମୋଟି, ଗୋଲ ମୁହଁରେ ଲମ୍ବ ନାକ ଉପରେ ହୀରା ବସା ବାନ୍ଧିଛି ।

ଅଚ୍ୟୁତ ଉଠିଲେ । କହିଲେ, ମୋର ଯିବାର ସମୟ ହେଲା ସୁନନ୍ଦବାବୁ, ଆପଣ ରୁହିନାଙ୍କ ସଙ୍ଗେ ଗପ କରନ୍ତୁ ।

ମୁଁ ବି ଚାଲିଲି, ବିଶେଷ ଜରୁରୀ କାମ ଅଛି ।

ସୁନନ୍ଦ ଉଠିଲା । କାହିଁ, ରୁହିନା ଅଟକାଇଲେ ନାହିଁ ତ, ପଚାରିଲେ ନାହିଁ ଘରକଥା । ଖଲବ ଲଗାଇବାକୁ ଥଟ୍ଟା କରି ଛୁରୁଗୁଲେଇ କହିଲେ ନାହିଁ, ହୁମାଗି ଆପଣଙ୍କ କଥା ଲେଖିଛନ୍ତି ?

ଆଉ ସବୁ ଭଲ ତ ? ପୁଣି କେବେ ଆସିବେ ? ନନ୍ଦିକାଙ୍କୁ ଲେଖିଦେବେ, ମତେ ଭୁଲିବେ ନାହିଁ । ଲଳିତାଙ୍କୁ ଥରେ କଟକ ଆଣିବେ ।

ରୁହିନାଙ୍କର ଉପରଠାଉରିଆ ଆଚରଣର ଉତ୍ତର ସୁନନ୍ଦ ଦେଲା ଗୋଟିଏ ପଦରେ, ହୁଁ— ।

ଗେଟ୍ ବନ୍ଦ କରିବା ବାହାନାରେ ଘରଆଡ଼କୁ ଅନାଇ ସୁନନ୍ଦର ପ୍ରଶ୍ନିଳ ମନ ଓ ଆଗ୍ରହୀ ଆଖି ଯାହାଙ୍କୁ ପୁଣି ଖୋଜିଲା, ସେ ବାରଣ୍ଡାରେ ଠିଆ ହୋଇ ଗେଟ୍ ଆଡ଼କୁ ଚାହିଁ ନ ଥିଲେ । ଘରଭିତରକୁ ଚାଲିଯାଇଥିଲେ । ଚାକର ଟୋକାଟି ହାତରେ ଝାଡ଼ୁ ଧରି ଅନାଇଛି ।

ସୁନନ୍ଦ ରାସ୍ତାଆଡ଼କୁ ମୁହଁ ବୁଲାଇଲା । ଅତନୁଙ୍କର ନୂଆ ମଟରଗାଡ଼ି ରାସ୍ତା ମୋଡ଼ରେ ମୁହୂର୍ତ୍ତେ ଅଟକିଲା । ସୁନନ୍ଦ ସାଇକେଲ ଚଢ଼ି ସେଇ ଆଡ଼କୁ ଚାଲିଲା । ଅତନୁଙ୍କର ଗାଡ଼ି ରାସ୍ତାର ମୋଡ଼ ବୁଲିଲା ।

ସୁନନ୍ଦର ମନରେ ଅସୁମାର ପ୍ରଶ୍ନ । ସବୁ ପ୍ରଶ୍ନର ମନମତାଣିଆ ଉତ୍ତର ତା'ର ମନହିଁ ତାକୁ ଦେଲା, ତମେ ଆଉ ଆସିବ ନାହିଁ, ତମେ ଏ ଘରେ ଅଲୋଡ଼ା, ତମେ ପଳାଅ, ପଳାଅ—

କୁକୁରମାଛି ଲାଗିଲା ପରି ସୁନନ୍ଦ ପଳାଇଆସିଲା । ମନର ଅଶାନ୍ତ କ୍ରୋଧ ଓ ଅଭିମାନ ମନ ଭିତରେ ଚକ୍କର କଲା, ସେ ଗୋଟାଏ ସିନେମାଘର କରିବ, ନୂଆ ଜାଗା କିଣି ବଡ଼ ଘରଟିଏ ତୋଳିବ, ମଟରଗାଡ଼ି କିଣିବ । ରୁହନା ତାକୁ ଯେଉଁ ଅପମାନ ଦେଇଛନ୍ତି, ଅତନୁ ଯେଉଁ ଅନାସ୍ଥାଭାବ ଦେଖାଇଛନ୍ତି, ସେ ତାର ପ୍ରତିଶୋଧ ଅବଶ୍ୟ ନେବ ।

ରାଜୀବ ଧୀର ସ୍ଥିର ହୋଇ ସବୁ ଶୁଣିଲା । କହିଲା, କରିବା ଯେ ସବୁ, ତରତର ହେବା ଭଲ ନୁହେଁ । ବୁଝି ବିଚାରି ସ୍ୱତନ୍ତ୍ର ସ୍ଥିର କରିବା । ପରଙ୍କ ଉପରେ ଅଭିମାନ କରି ଅନ୍ଧାରରେ ବାଡ଼ି ବୁଲାଇଲେ ଯାହାର ଆମରି ମୁଣ୍ଡରେ ବାଜିପାରେ । ବର୍ତ୍ତମାନ ଟଙ୍କା ଯୋଗାଡ଼ ନ କଲେ ଅସୁବିଧା ହେବ । ଆଗ ସେ ବିଷୟ ବିଚାର କରିବାକୁ ହେବ ।

ସୁନନ୍ଦ କହିଲା, ତୁ ବି ମୋ ସଙ୍ଗରେ ଗାଆଁକୁ ଚାଲ, ଟଙ୍କା ନେଇଆସିବୁ ।

ଦରକାର ନାହିଁ । ସାତହଜାର ଟଙ୍କା ଅସୁଲ ହୋଇଯିବ । ମୁଁ ନୋଟିସ୍ ଦେଇଥିଲି । ଭାବୁଛି, ଅଭାବ ହେବ ନାହିଁ । ଆପଣ ଏକା ଗାଆଁକୁ ଯାଆନ୍ତୁ ।

ସବୁ ଆଗ୍ରହରେ ଏଇ ରାଜୀବଟା ବାଧା ଦିଏ ।

ଦିନଟିଏ କଟିଲେ ସିଦ୍ଧାନ୍ତ ଦୋହଲିଉଠେ । ସାତଦିନ ପରେ ଆଉ ପରେ ଦେଖାଯିବାର ସତର୍କତା ମନରେ ପଶେ । ମାସେ ବିତିଲେ, ନ କରି ଭଲ କରିଛି କରିଥିଲେ ମାରାତ୍ମକର ସାନ୍ତ୍ୱନା ଆସେ । ସୁନନ୍ଦ ନିଜକୁ ମଣେ ଅତି ବୁଦ୍ଧିମାନ୍ ।

ସବୁ ବୁଝି ତା'ର ହେଉଛି । ଜଟିଳ ପରିସ୍ଥିତି । ପରାମର୍ଶ ସେ ନେବ କାହାଠାରୁ ? ସମସ୍ତେ ତା'ର ଘରଆଡ଼କୁ ଚାହିଁ ରହିଛନ୍ତି । ମଜା ଦେଖିବେ, ମନଖୁସିରେ ଦୁଃଖ କରି କହିବେ, ସଂସାରରେ ଯାହା ସ୍ୱାଭାବିକ ତାହା ହିଁ ଘଟିଲା, ନୂଆ କିଛି ହୋଇନାହିଁ, କାହାରି ଦୋଷ ଦେଇ ହେବ ନାହିଁ ।

ହସଖୁସିର ସଂସାରରେ ଦୁଃଖ ଓ କାନ୍ଦର ବନ୍ୟା । ମାଆଙ୍କ ପାଖରେ ବସିଲେ ସେ କହୁଛନ୍ତି, ସାନବୋହୂ ଜବାବ ଦେଲା, ମୋର ରାଗ ବଢ଼ିଲା, ଗୁରୁକଥା କହିଲି । ସେ ଛାଡ଼ିଲା ନାହିଁରେ ପୁଅ, ପଦେ କହିଲେ ଓଲଟି ଦୁଇପଦ ଜବାବ୍ । ଗ୍ରେଟଘରର ଝିଅ, ରାହାବାଲୀଟା । ଏବେ ତାର ଗୁଣ ଜଣାପଡ଼ିଲା । ବଡ଼ବୋହୂର ପିଲା ହେବ ଜାଣି ଈର୍ଷାରେ ସେ ଜଳପୋଡ଼ି ହେଉଛି ।

ତୁମ ହି ବୋଉ !

ତୁମ ହେବ ତ ପଚାରିଲୁ କାହିଁକି ?

କଅଣ ତୁ ଚାହୁଁଛୁ ତେବେ ?

ମରଣ !

ଲଳିତା ତା' ବାପଘରକୁ ଚାଲିଯାଉ ।

ସେଇଆ ସେ ତତେ ଶିଖେଇଛି, ନା ? ଏ ଘରର ବୋହୂ ଯାଇ ସେଘରେ ପତର ଗୋଟେଇବ, ବାସନ ମାଜିବ, ଭଗାରିହୁଆ ହେବ ? ସେକଥା ହୋଇପାରିବ ନାହିଁ । ଆଗ ମୋର ମରଣ ହେଉ, ସେଇଠୁ ତମେ ଯାହା କରିବ ।

ସେବେଳେ ବୁଢ଼ୀ ମାଆଙ୍କ ସଙ୍ଗରେ ତର୍କ କରି ତାଙ୍କର ଭୁଲ ବତାଇଦେବା ଅତି ବଡ଼ମୂର୍ଖତା । ଅନୁତାପ ସେ କରିପାରେ; କିନ୍ତୁ ମରଣ ଯାହାକୁ ହାତ ଠାରିଲାଣି ତା'ର ମନରେ ଅନୁତାପ ଆଣିବା ଅନ୍ୟାୟ । ସବୁ ଭୁଲ ଲଳିତାର । ବୁଢ଼ୀ ମଣିଷର କଥାରେ ଓଲଟି ଉତ୍ତର ଦେବା ତା'ର ଉଚିତ ନ ଥିଲା ।

ସୁନନ୍ଦ ତା'ର ବୋଉର ଦୁଇ ଗୋଡ଼ରେ ମୁଣ୍ଡ ଲଗାଇଲା । କହିଲା, ମୋର ସବୁ ଦୋଷ ହୋଇଛି । ଆଉ ଗୋଟାଏ ବୋହୂ ଆଣିବାକୁ ନନ୍ଦିକା ଯେତେଥର ମତେ କହିଥିଲା, ମୁଁ ମନା କରିଥିଲି, ବିରକ୍ତ ହୋଇଥିଲି । ପିଲାଟିଏ କୋଳରେ ଧରିବାକୁ ଯେଉଁ ବ୍ୟାକୁଳତା, ଯେଉଁ ଅଭିମାନ ଓ କାନ୍ଦ ତା'ର ମୁଁ ଦେଖିଲି, ଇଚ୍ଛା ନ ଥିଲେ ବି ମୁଁ ବାଧ୍ୟ ହୋଇ ହଁ ଭରିଲି । ଗ୍ରେଟଘରର ଝିଅଟାକୁ ତମେ ଏ ଘରେ ଆଣି ଦେଖିଲ । ସେଥିପାଇଁ ମୁଁ ନନ୍ଦିକାର ବି ଦୋଷ ଦେଉଛି ।

ଅଭସ୍ଥା ଥରି ଥରି ଉଠି ବସିଲେ । କୋରଡ଼ିଆ ଆଖିରୁ ଲୋତକ ଝରିପଡ଼ୁଥାଏ । ଦି'ପହରର ଜଳିଲା ଖରା ଅଗଣାରେ ଦିଶୁଛି କୋହଲା । ତାଙ୍କର ଥରିଲା ସ୍ୱର କହିଉଠିଲା, ମୋ ନନ୍ଦିକାର ଦୋଷ କେହି କେବେ ଦେବ ନାହିଁ ରେ, ସେ ଶୁଦ୍ଧ ସୁବର୍ଣ୍ଣ । ମୁହିଁ ନଅଁ ଲାଗି ସହରୁଣୀ ଅଣାଇବାକୁ ତାକୁ ବାଧ କଲି । ନାତିଟିଏ

କୋଳରେ ନ ଧରି ଆଖି ବୁଜିଥିଲେ ପ୍ରାଣ ମୋର ଛଟପଟ ହୋଇଯାଆନ୍ତା, ସେଇଥିପାଇଁ ।

ଆଉ, ଲଳିତା ? ତା କଥା ପଦେ ତୁ କହୁନାହୁଁ, ବୋଉ ? ଏ ଘରକୁ ଆସିବାକୁ ସେ ତପସ୍ୟା କରୁ ନ ଥିଲା, ହମ ହମ ହେଉ ନ ଥିଲା । ଦୁଃଖୀ ହୋଉ, ଦରିଦ୍ର ହେଉ, ସେ ବି ସପନ-ଦେଖିଲା ଝିଅଟିଏ । ସପନ କେବେ ତାର ଗୃହଁ ନ ଥିବ ଯେ ଗୋଟାଏ ଦରବୁଢ଼ା ବର, ଗୋଟାଏ ଅନୁଦାର ସଉତୁଣୀ, ପୁଣି ଜଣେ ଅବୁଝା ନିର୍ଦ୍ଦୟା ଶାଶୁ ମେଳରେ ସେ ଘରସଂସାର କରିବ ।

ସୁନନ୍ଦର ମନ ଏ କଥା ତା ମନକୁ ସିନା କହିଲା, ତାର ତୁଣ୍ଡ ଖୋଲିଲା ନାହିଁ । ବୋଉ ଆଉ କଅଣ କହିଲେ, ସେ ଶୁଣିନାହିଁ । ଲଳିତାର ଦୁଃଖରେ ମାର ମନ ହା-ହାକାର କରିଉଠିଲା । ଧୀରେ ଧୀରେ ଉଠି ସେ ଅଭୟାଙ୍କ ପାଖରୁ ଚାଲିଆସିଲା ।

ଖରା ତେଜ ମଉଳି ଆସିଲାଣି । ନନ୍ଦିକା ପାଖରେ ଲଳିତା ବସିଛି । ଖୋଲା କେଶ ପିଠି ଉପରେ ଲୋଟୁଛି । ଶୁଖିଲା ଦିଶୁଛି ତାର ମୁହଁ, କାନ୍ଦ କାନ୍ଦ ଢଙ୍ଗ । ମୁହଁକୁ ଅନାଉ ନାହିଁ । ଦେହରେ ମୁଣ୍ଡରେ ଗହଣା ନାହିଁ । ନନ୍ଦିକାଟି ବି ସେମିତି ଶୁଖିଲା ଦିଶୁଛି ।

ନନ୍ଦିକା ଠିଆହେଲା । ଲଳିତା ବି ।

ସୁନନ୍ଦ ଆଗ କହିଲା, ବୋଉ ଅସନ୍ତୁଷ୍ଟ ହୋଇଛି । ଶ୍ରେଷ୍ଠ କଥାକୁ ମନ ଭିତରେ ବନ୍ଦ କରି ରଖିଛି । ମୁଁ ବୁଝେଇବାକୁ ଚେଷ୍ଟା କଲି । ମୋ ଉପରେ ସେ ଫାଇଁକରି ଉଠିଲା । ଏଥିପାଇଁ ମନରେ ଦୁଃଖ, ରାଗ କି ଅଭିମାନ କରିବା ଠିକ୍ ନୁହେଁ । ମଣିଷର ବୟସ ହେଲେ ପ୍ରକୃତି ଖିଟ୍‌ଖିଟ୍ ହୁଏ । ସେ ଏକାବାଗିଆ ହୁଏ ।

ନନ୍ଦିକା କହିଲା, 'କା' କୁ ମୁଁ ସେଇଆ କହିଲି । ସବୁ ଦୋଷ ମୋର ବୋଲି ମୁଁ ମାନିଲି । 'କା' ମତେ ପଲଙ୍କରୁ ତଳକୁ ଓହ୍ଲେଇଦିଏ ନାହିଁ । ମୋ ଦେହ ଭଲ ନାହିଁ ବୋଲି ନିଜେ ସେ ରାତି ଅଧଯାଏ ପାଖରେ ଜଗିବସେ । ଦିନରାତି କାମ କରି କରି ପିଲାଟା ଶୁଖିଗଲା । ମୋ ଧିଅ ସହିଲା ନାହିଁ । ରୋଷ ଘରକୁ ନ ଯିବାକୁ କହି ସେ କେତେ ରାଣ ନିୟମ ପକେଇଥିଲା । ରାତି ଅନିଦ୍ରା ହୋଇ ଟିକିଏ ଡେରି ହେଲା ତା'ର ଉଠିବାରେ । ଭାବିଲି, ଶୋଇଛି ତ ଶୋଇଥାଉ । ନିଜେ ଗଲି ସେପେଇ ଘରକୁ । ମୁଣ୍ଡ ବୁଲେଇଲା— ।

କା

ଲଳିତାର ଆଖିରେ ଲୁହ ଛଳଛଳ ହେଲା । ସେ ଆଉ ଘରକୁ ଚାଲିଯାଉଥିଲା, ସୁନନ୍ଦ ତା'ର ହାତ ଧରି ଅଟକାଇଲା । କହିଲା, ଶୁଣ ।

ନନ୍ଦକା କହିଲା ସବୁ ମୋର ଦୋଷ । 'କା' ର କଥା ମୁଁ ମାନିଲି ନାହିଁ । ଏହା ମୁଁ ବୋଉଙ୍କୁ କହିଲି । ସେ କହିଲେ କଥା ଚଳେଇନେବାକୁ ମୁଁ ବୁଆଡ଼େ ଏମିତି କହୁଛି । ବୁଢ଼ୀ ମଣିଷ, ଯାହା ବୁଝିଥିବେ, ସେଇଆ । କଥାକୁ ଛଳ କରିବା ଭଲ ନୁହେଁ ।

ଲଳିତାର ହାତ ଧରି ନନ୍ଦକା କହିଲା, ଆ ମୋର ସୁନାଭଉଣୀଟି, ମୋ ଦୋଷ ମୁଁ ମାଗି ନଉଚି ।

ଲଳିତାର ଆଖିରୁ ଏଥର ଲୁହ ଝରିଲା । ସେ କହିଲା, କାହାର ଦୋଷ ମୁଁ ଦେଉନାହିଁ । ସବୁ ମୋ ଭାଗ୍ୟର ଦୋଷ । ମୁଁ ଗରିବ ଘରର ଝିଅ, ବାପା ମା ଖାଇଛି ଶ୍ୱଉଜର ଗାଲମାଡ଼ ସହି ଚାକରାଣୀ କାମ କରିଛି, ପେଟକୁ ମୁଠିଏ ଦାନ ବାପଘରେ ଦରବୁଢ଼ୀ ହେଲି, ତାଙ୍କର ଟୋକାପୁଅର ହାତ ଧରି ନ ଥିଲେ ବାଡ଼ୁଅ ରହିଥାନ୍ତି, ତାଙ୍କରି ବୋହୂ ନନ୍ଦକା ଗରିବ ଘରର କଅାଁରୀ ଝିଅ ଦେଖି ଦୟାକରି ଅଣି ଏ ଘରେ ମଥେ ଠାବ ଦେଇଛନ୍ତି, ତଥାପି ମୁଁ ଈର୍ଷା କରି ତାଙ୍କ ବୋହୂକୁ ସେପେଇଘରକୁ ପଠେଇ ଦେଇଥିଲି —

ନନ୍ଦକା ଲଳିତାର ପାଟିରେ ହାତ ଦେଲା । ବିଚଳିତ ହୋଇ ମୁହଁ ଫଫେଣ କରି କହିଲା, ଏ କି କଥା କହୁଛୁ ଲୋ, ବାଇଆଣୀ ହେଲୁ କି ? ମଣିଷ କ'ଣ ସପନ ଦେଖେ ନାହିଁ ? ସପନ କଥାକୁ ମନରେ କିଏ ଧରି ବସିଥାଏ ମ ! ବୁଢ଼ୀ ଲୋକ ସେ, ତୁ ପଢେ କହିଲାରୁ ସେ ରାଗଯାଇ ତୁଣ୍ଡକୁ ଯାହା ଆସିଲା, ବକିଲେ । ସେଗୁଡ଼ା ତାଙ୍କ ମନର କଥା ନୁହେଁ ଲୋ 'କା', ରାଗ ଫଫେଣ ଓଠର କଥା ! ସେଗୁଡ଼ା ତୁ ମନରେ ଧର ନା ।

ନନ୍ଦକାର ହାତକୁ ପାଟିରୁ ଖସାଇ ଲଳିତା କହିଲା, କେତେ ଆଉ ସହନ୍ତି ? ମନକୁ କାଟିଲା ବୋଲି ପାଟିରୁ ମୋ'ର ଖସିଗଲା; ମୁଁ କଣ ବଳେ ବଳେ ଆଣିଚି କି ? ଏତିକରେ ଏତେ ବଡ଼ ଦୋଷ କରିପକେଇଲି ?

ଦୋଷ ହେଲା ବୋଲି କେହି କହୁନାହିଁ । ସବୁ ଦୋଷ ମୋ'ର ହୋଇଛି, ମୁଁ ମାଗିନେଇଛି ।

ମୋ ପାଟିରେ ହାତ ଦେଇ ମୋ ତୁଣ୍ଡର କଥା ସିନା ବନ୍ଦ କରୁଛୁ, ତାଙ୍କ ପାଟିରେ ହାତ ଦେଲୁ ନାହିଁ ତ ?

ଏତେ ସାହସ କେମିତି କରନ୍ତି ଲୋ, ସେ ଗୁରୁଜନ, ତାଙ୍କ ମୁହଁରେ ହାତ ଦେବା ଆମର ଧର୍ମ ନୁହେଁ, ତାଙ୍କ ଗୋଡ଼ରେ ହାତ ଦେବା ଆମର ଧର୍ମ । ସେ ସବୁ ପୁଣି କାହିଁକି ପଡ଼ୁଛି ? ଚର୍ଚ୍ଚା କରିବାକୁ ମୁଁ ତତେ ମନା କରିଥିଲି । କହିବା ଲୋକ ବଡ଼ ନୁହେଁ ଲୋ 'କା', ସହିବା ଲୋକ ସେ ବଡ଼ ।

କେତେ ତୁ ସହିଥିବୁ ମନ କଲେ ? ତୁ ଯଦି ସେଇଠି ମୁହଁ ଖୋଲି ସତକଥା କହିଥା'ନ୍ତୁ ସେ ମତେ ଏମିତି ଚିତ୍କାର କରି ଶୋଧୁଥା'ନ୍ତେ କାହିଁକି ? ତାଙ୍କର ଛି ଛୁକର ଗାଳି ଶୁଣିବାକୁ ତତେ ଖୁସି ଲାଗିଥିବ ମନ କଲେ ।

'ନା' !

ନନ୍ଦିକା କଟମଟ କରି ଲଳିତାର ହାତ ଧରିଲା । ଆଖିରେ ତାର ଅନଳ ଜଳୁଛି । ଲଳିତା ପରି ସ୍ଥିର ତୁଣ୍ଡରେ ଏ କଥା ' ମନରେ ଏତେ ମଇଳା ? ଆଗରେ ସ୍ୱାମୀ ନିର୍ବାକ୍ ହୋଇ ଠିଆ ହୋଇଛନ୍ତି । ସତେକି ଗୋଟିଏ ନିର୍ଜୀବ ଖୁଣ୍ଟ, କି ପଥର । ଏତେ ଦିନ ପରେ ସେ ବୁଝିବାକୁ ଚେଷ୍ଟା କରୁଛନ୍ତି, ଯେତେ ଯାହାକଲେ ସହରୁଣୀ କେବେ ଜା, ନଣନ୍ଦ, ଝିଅ, ଭଉଣୀ କି କନ୍ୟା ହୋଇପାରେ ନାହିଁ । ବନ୍ଧୁପଣକୁ ବି ସତେ ସେ ସହ ନୁହେଁ । ସେ କେବଳ ସହରୁଣୀ, ହିଂସାବାଦ, ଈର୍ଷାଦ୍ୱେଷ ଓ ରାଗରୋଷରେ ଭରପୂର ମୂର୍ତ୍ତି ।

ନନ୍ଦିକା ଲଳିତାର ହାତ ଛାଡ଼ିଲା ।

ଉତ୍ତର ନ ଦେଇ ଲଳିତା ଦମଦମ ହୋଇ ଚାଲିଗଲା ଆର ଘରକୁ ।

ସୁନନ୍ଦ କାଠ ହୋଇ ଠିଆ ହୋଇଛି । ଏକ ଦୃଷ୍ଟିରେ ଅନାଇଁ ରହିଛି ଘର ଉପରକୁ, ଦୋଷ ଦେଉଛି କି ନନ୍ଦିକାର ? ତାର ଅନୁତପ୍ତ ମନ କହୁଉଠୁଛି କି ନିଜ କର୍ମର ପରିଣତି ଦେଖିଲ ତ ନନ୍ଦିକା ?

ଚମକି ଉଠିଲାପରି ସୁନନ୍ଦ କହିଲା, ଲଳିତା ନିଶ୍ଚୟ କାହାର କୁଶିକ୍ଷାରେ ପଡ଼ିଛି । ତାର ମୁହଁ ବଢ଼ିଛି । ଶାସନ ଲୋଡ଼ା !

ଛି, ଛି, ଏ କି କଥା କହୁଛ ? ଲଳିତା ମୋର ସାନ ଭଉଣୀ । ପିଲା ଲୋକ ସେ, ଟାଣ କଥା ପଦେ କେବେ ଶୁଣି ନ ଥିଲା । ଟାଣ କଥା ସହିପାରିଲା ନାହିଁ । ଅବୁଝ ହୋଇଛି । ତମେ ତାକୁ କିଛି କହିପାରିବ ନାହିଁ । ଯଦି ଶାସନ ଲୋଡ଼ା ତ ମୁଁ ଶାସନ କରିବି ।

ତମେ ? ପାରିବ ?

ଅସମ୍ଭବ ମଧ୍ୟ ନାହିଁ । ତମର ସେ ସ୍ନେହ ଲୋଡ଼େ, ସହାନୁଭୂତି ଲୋଡ଼େ, ଶାସନ ଲୋଡ଼େ ନାହିଁ । ତମକୁ ମୁଁ ଅନୁରୋଧ କରୁଛି, ତାକୁ ତମେ ପଦଟିଏ ବି ଟାଣ କଥା କହିବ ନାହିଁ ।

ଉତ୍ତର ନ ଦେଇ ସୁନନ୍ଦ ପଦାକୁ ବାହାରିଗଲା ।

ଏବେ ବି ସନ୍ତୁ ଉନ୍ନୁର ଅଛି । କଟକରୁ ଧାଇଁଆସିଛନ୍ତି । ଜଳଖିଆ ଟିକିଏ ଖାଇନାହାନ୍ତି । କେବଳ ଅରୁଗୁପରୁଗୁ, ବଚନକାରେ ବେଳ ବିତିଲା । କେହି ଜିଣିଲା ନାହିଁ, ସମସ୍ତେ ହାରିଲେ ।

ନନ୍ଦିକା ପଦାକୁ ଆସିଲା । ଲଳିତା ଆଉ ଘରବାଟେ ବୁଲି ରୋଷଘରକୁ ଚାଲିଯାଇଛି । ନନ୍ଦ ରୋଷଘରୁ ବାହାରି ହାତରେ ଦକ୍ଷିଣା ଧରି ଠିଆ ହୋଇଛୁ ।

ନନ୍ଦିକା ପଚାରିଲା, ସେ କୁଆଡ଼େ ଗଲେ କି ନନ୍ଦ ?

ପଦାକୁ ଗଲେ ତ ।

କିଛି ଖାଇନାହାନ୍ତି ମ, କେଉଁଠି ବସି ଗପ କରିବେ ତ ରାତି ଅଧ ହେବ । ଡାକ ମ ତାଙ୍କୁ ।

ନନ୍ଦ ଦକ୍ଷିଣା ତଳେ ପକାଇ ପଦାକୁ ଗଲା ।

ଅଭସ୍ଥା ଥରେ ଥରେ ପଦାକୁ ବାହାରିଲେ । ପାଟି କରି ଉଠିଲେ, ପୁଅ ମୋର କିଛି ନ ଖାଇ ପଦାକୁ ଗଲା ? ଜଳଖିଆ କରି ଚଖିନ ?

କରିବାକୁ ଯାଉଛି ।

ଅଭସ୍ଥା ଆଣ୍ଠୁକୁ ଆଉଜାଇ ବାରଣ୍ଡାରେ ବସିଲେ । ଭାବିଲେ, ପୁଅ ଅଖିଆ ଯାଇଛୁ ମନରେ ତା'ର ଦୁଃଖ ହେଉଛି । କାହିଁକି ସେ ଏଣୁତେଣୁ ତା ଆଗରେ କହିଲେ ? ସାନବୋହୂ କି ଅପରାଧ ବା କରିପକାଇଲା ? ମଦକୁ କାଟିଲା ବୋଲି ସହି ନ ପାରି ସେ କଥା ଉପରେ ଜବାବ୍ ଦେଲା ।

ମନ ହେଲା, ଲଳିତାକୁ ପାଖକୁ ଡାକିଦେ, ନିଜର ଭୁଲ ସେ ମାନିବେ ।

ଧଇଁସଇଁ ହୋଇ ନନ୍ଦ ଫେସ୍ତା ଭିତରକୁ ଆସିଲା । କହିଲା, ନୂଆବୋହୂ, ଗାଡ଼ିଆ କହୁଛି, ସେଇ କଟକ ଫେରିଗଲେ ।

ପରଦିନ ସନ୍ଧ୍ୟାବେଳକୁ ନନ୍ଦେ ରାଧୁଆ ପଥର ଆସି କଟକରେ ପହଞ୍ଚିଲ । ସେ ଚିଠାଉ ଆଣିଛୁ ।

ନନ୍ଦିକାର ଚିଠାଉ, —ସମସ୍ତେ ନିଜ ନିଜର ଭୁଲ ବୁଝିପାରିଛନ୍ତି । ଶାସନ କଥନ ଏମିତି କରାଯାଏ ? ନ କହୁ ନ ବୋଲି, ପାଟିରେ ପାଣି ନ ମାରି ତମେ ରାଗିକରି

ଝୁଲିଗଲା । ସେଦିନଠାରୁ ବୋଉ ଶଯ୍ୟା ଧରିଛନ୍ତି । କାହାକୁ କିଛି ସେ କହୁନାହାନ୍ତି । କେବଳ କାନ୍ଦୁଛନ୍ତି । ଖିଆପିଆ ଛାଡ଼ିଲେଣି । କେତେ କଷ୍ଟ ତାଙ୍କୁ ହେଉଥିବ ବୁଝିପାରୁଛ ତ ? ଏ ଚିଠି ପାଇବା ମାତ୍ରେ ସଙ୍ଗେ ବସିଲାଠାଉଁ ଉଠି ଆସ । ତମକୁ ନ ଦେଖିବା ଯାଏ ସେ କେବେ ପାଟିରେ ପାଣି ଦେବେ ନାହିଁ ।

ସୁନନ୍ଦ ନିଜର ଧୈର୍ଯ୍ୟହୀନତାର କୁଫଳ ଏବେ ବୁଝିବାକୁ ଚେଷ୍ଟା କଲା । ସେ ଲଳିତାକୁ ଶାସନ କରିନାହିଁ, ନିଜର ଅବିବେକପଣ ପାଇଁ ମାଆଙ୍କ ମନରେ ସେ ଦୁଃଖ ଆଣିଛି । ତାଙ୍କର ପ୍ରାଣ ସେ କଲବଲ କରୁଛି । ନିଜେ ସେ କାହାର ଆଗରେ ମନର ଛଟପଟ ଦୁଃଖ ବଖାଣିପାରିବ ନାହିଁ । ଘରକୁ ଫେରିଯିବାକୁ ମନ ଡାକିଲେ ବି କପର ଲାଜ ମାଡ଼ୁଛି । ଗାଁଆକୁ ପଚାରିବାକୁ ମନ ହେଉଛି, —ନନ୍ଦିନୀ କେମିତି ଅଛି, ଲଳିତା ଅଛି କପର, କଥାଟା କେଉଁଣ ଗ୍ରାମରେ ଘୃଣ୍ୟ ହେଲାଣି ?

ଯାଇ ପାରିଲା ନାହିଁ । ଚିଠିର ଉତ୍ତର ଲେଖିଲା ।

ନଜାଣିଲା ପରି ଗାଁ ମାଇପେ ଭଲେଇ ହୋଇ ଆସୁଛନ୍ତି । ଏଠି ମାଉସୀ ସେଠି ଖୁଡ଼ୀ । ସୁଭଦ୍ରାଙ୍କୁ ବୁଝାଇ କହୁଛି କିଏ, ଉଠ ମ ଅପା, କାହା ଉପରେ ରାଗ ଅଭିମାନ କରୁଛ ? ନିଜର ଦେହକୁ ମନକୁ କଷ୍ଟ ଦେଇପଡ଼ିଛ ? ଏବକାଳକୁ ବୋହୂଗୁଡ଼ାକ ସବୁ ସେମିତି । ମାନିବେ ନାହିଁ, ମୁହଁରେ ଜବାବ ଦେବେ । ଭଲ ପିଲା ସେ ନନ୍ଦିଆ । କାହାକୁ ପଦେ କହିଲା ନାହିଁ, ଘରେ ଗୋଡ଼ ନ ଦେଇଣ ମନଦୁଃଖରେ ଫେରିଗଲା ।

ସୁଭଦ୍ରା ଉତ୍ତର ଦେଉଛନ୍ତି, ନନ୍ଦିଆ ଫେରିଗଲା ! ଏ ଜଞ୍ଜାଳରେ ମୁହିଁ ତାକୁ ପକାଇଛି । ନନ୍ଦିନୀ ଫଳନ୍ତ ଗଛ, କିଏ ଯଦି ଏହା ମତେ କହିଦେଇଥାନ୍ତା ଆଗରୁ । ଆଜି ଆଇଚ ଭଲେଇ ହେବାକୁ ? ବାଞ୍ଝ ବାଞ୍ଝ ବୋଲି ବୋହୂଟାକୁ ହୁରି ପକେଇଲ, କାହିଁକି ଆଇଚ ? କିଏ ତମକୁ ଡାକିଲା ?

ଲଳିତା ମୋର ଏମିତି ନ ଥିଲା । ତୁମମାନଙ୍କ କୁଶିକ୍ଷାରେ ପଡ଼ି ମନରେ ଈର୍ଷା ପୋଷିଛି, ମୁହଁ ଉପରେ କଥା କହୁଛି ।

ତମେ ସବୁ ଯିବକି ଏଠୁ, ମୋ ଘର କଥା ମୁଁ ବୁଝିବି ।

ବଡ଼ ମା ଏଣେ ଆସି ଭଲେଇ ହୋଇ କହୁଛନ୍ତି, ଈର୍ଷା, ଈର୍ଷା ମ ନନ୍ଦୀ ଦେଖିଲୁ, କିମିତି ଖେଳରୁ ମହାଭାରତ ଯୁଦ୍ଧ ଲଗେଇବାକୁ ବସିଛି ସେ ଟୋକୀଟା ! ନ ଥିଲା ଘରର ଅନାଥ ଝିଅ ବଡ଼ଘରକୁ ଆଇଲେ ଏମିତି ହୁଅନ୍ତି । କିଏ ତାକୁ କ'ଣ ଶିଖାଉଛି ମ, ନଇଲେ କିଛି କଥା ନାହିଁ, ଖୁଣ୍ଟ, ଅଭିମାନ ରୁଷା । କନିଆ ମାଇପ, ଗେରସ୍ତକୁ ହାତରେ ଧରି କଣ୍ଢେଇ ନାଚ କରିବାକୁ ମନ କରିଛି ।

ନନ୍ଦକା ହସ୍ତର ଦଶ ଲଳିତା। ମୋ'ର ସୁନାମୁଣ୍ଡା ମ ଅପା, ପିଲା ମଣିଷ, ଟିକିଏ ଟାଣ କଥା ସହି ପାରେ ନାହିଁ। ସେ ମନ ଦୁଃଖ କରୁଛି। ବଳେ ମନ ବୁଝିଯିବ ସେ। କାହାର କୁଶିକ୍ଷାରେ ପଡ଼ିବା ଝିଅ ସେ ନୁହେ। ଯାଏଁ, ବୋଉ ଡାକଲେଣି।

ନନ୍ଦକା ଉଠିଯାଏ। ଆଉ ଘରକୁ ଚାହେଁ, ଲଳିତା ପାଖରେ କିଏ ସବୁ ବସିଛନ୍ତି। ଦାସଙ୍କୁସିରେ ଗପ କରୁଛନ୍ତି। ମନ କହେ, 'କା' ମୋର ଅଭିମାନଆଟା ସିନା, ନିର୍ବୋଧ ଜଟ୍ଟକିଆ ନୁହଁ।

ଝଗେଲା ବେଳ ଦେଖି ଆଉ ସାହାର ଜାଆ ଲେଖା ହେବ ଆଲୁଷି, ତିନ ପିଲାର ମା, ଉତ୍କେଳ ହୋଇ ଲଳିତାକୁ କହିଲେ, ପିଲାଲୋକ ତମେ, କେଉଁ କଥାକୁ ଛଳ କରି ବସିଛ? ମଣିଆ ମାନ କଲ ନା, ନିଜ ମେକର ହାନି କଲ। ମାଈପୀ ଜୀବନ, ଫେଣସିବା କଥା ତ ନୁହେଁ, କାନ୍ଦିଲେ କୋବେଇଲେ, କି ଉପାସ ଭୋକ ରହି ଦେହ ଛୀଣ କଲେ ନିଜର କ୍ଷତି। କାହିଁକି ନା? ହାତ ଧରି ଯାହା ହୋଇ ଆସିଛ, ଠାକୁରେ କଲେ ସାତ ପିଲାର ମାଆ ହେବ। କେଉଁ ଦିନ ଆଉ ବୁଢ଼ୀ ବନ୍ଧୁରହିବେ? କେତେ ଦିନ ଯାଏ ପରଦ୍ୱାରକୁ ଅନେଇ ବସିଥିବ?

ଲଳିତା ବଳବଳ କରି ତାଙ୍କ ମୁହଁକୁ ଚାହିଁ ରହିଲା।

ଆଲୁଷିଙ୍କ ମୁହଁରେ ହସ। କହିଲେ, ହଁ ନନ୍ଦକା ଭଲ ମଣିଷ, ଛନ୍ଦ କପଟ ଜାଣେ ନାହିଁ? ବୁଢ଼ୀଙ୍କୁ କଅଣ ମନ୍ଦ ଥିବ ବୋଲି ସେ ବିନା କାରଣରେ ତମ ପରିକା ଝିଅକୁ ମଣିଷ ହସପରେ ଭୁଲାଇ ରଖିଲେ ନୋହିଲେ, ତାଙ୍କୁ କଅଣ ଏମିତି ଭୂତ ଲାଗିଥିଲା? ମିଳିକିଏ ଦେଦ ଜାଣିଲେ ସ୍ୱାର୍ଥ ଗୋଟି ଆସେ, ଲୋଭ ହୁଏ। ପିଲା ମଣିଷ ତମେ; କେଉଁ ପାଣି କେଉଁ ସୁଅରେ ଯାଉଛି କପରି ବୁଝିବ?

ନନ୍ଦକା ପାଖକୁ ଆସିଲା। ଆଲୁଷିର ଘରଭଙ୍ଗା ଝୋଇ ସେ ଜାଣେ। ଆଲୁଷି ଚାଷ ସଇତାନ୍। ବାହାରକୁ ଗୋଟାହୁଏଁ ତମର; କିନ୍ତୁ ସେ କାହାର ନୁହେ। ନନ୍ଦକା ଜାଣେ, ଆଲୁଷି ତାକୁ ଡରେ; ତା ପାଖରେ ପଶେ ନାହିଁ। ପଚାରିଲା, କଅଣ କି ଅପା?

ଆଲୁଷି କହିଲେ, ଲଳିତାକୁ ବୁଝାଉଥିଲି।

ମୁଁ କେତେକ ପାରିବ ସେ, ଝିଅ ଲୋ 'କା'! ଆମେ ଆମର କଜିଆ କଲୁ, କି ଉପାସ ଭୋକରେ ରହିଲୁ, କି ଯାହା କଲୁ ସେଥିକି ପର ଲୋକଙ୍କର ମୁଣ୍ଡ କାହିଁକି ବଥାଉଛ? ଆମେ ଆମ କଥା ବୁଝିବୁ! ଉ ଉଠିଆ—

ମୁଁ କଅଣ ପିଲାଛୁଆ ହୋଇଛି? ମଣିଷ ଜନ୍ମପାଇ ପଦେ କାହା ସଙ୍ଗେ କଥାଭାଷା ହେବାକୁ ମୋର ଅଧିକାର ନାହିଁ କି 'ମା'? ପରର ଶିକ୍ଷାରେ ମୁଁ ପଡ଼ିଯିବ ବୋଲି ତୋର ଡର କି?

ମୋ ପାଇଁ ଡର ନାହିଁ।

ମୋ ପାଇଁ ? ଏତେ ଅବିଶ୍ୱାସ ?

ତମେ ଏମିତି ଭାବୁଛ ଅପା !

ଯାଉଛି ଗୋ ପରଘର ଖୋଜିବା ଆମ ବେଉସା ନୁହେଁ । କାହା ଘରକୁ ଗଲେ କେହି ଏମିତି ତଡ଼ି ପକାଏ ନାହିଁ ।

ହଉ, ତମେ ଯାଅ ।

ଆଲୁଅ ଉଠିଲେ । ନିଃସହାୟ ଆଖିରେ ଲଳିତାର ମୁହଁକୁ ଚାହିଁଲେ । ଲଳିତା ସେହି ଚାହାଣୀରୁ ଜାଣିଲା ଚୁଗୁଲ ଚିତ୍କାର,—ଆଲୋ ତୋ ଜୀବନଟା ଏକୁଆ, କାହା ସଙ୍ଗେ ମନଖୁସିରେ ହସିକରି ପଦେ କଥାଭାଷା ହେବା ଅଧିକାର ତୋ'ର ନାହିଁ । ଯିଏ ତତେ ଏ ଘରକୁ ଜନ୍ମାଇକରି ଆଣିଛି ବୋଲି ମଣିଛୁ, ସବୁ କଥାରେ ତାଆରି ହାତ ତଳେ ରୁ ରହିବୁ ।

ଲଳିତା ଉଠି ଠିଆହେଲା । କଟମଟ କରି ଚାହିଁଲା ମୁହଁ ଟେକି ନନ୍ଦିକାର ମୁହଁକୁ । ମୁହଁ ବୁଲାଇ ଆଲୁଅର ହାତ ଧରିଲା । କହିଲା ଯିବ କାହିଁକି ? ବସୁନା ।

ନାଇଁ ଲୋ, ଆମେ ଗରିବ ମଣିଷ ।

କାହା ପାଖରେ ଯିନା, ମୋ ପାଖରେ ନୁହଁ ।

ଲଳିତା ଆଲୁଅଙ୍କର ହାତ ଟାଣି ନେଲା ପଲଙ୍କ ପାଖକୁ । ପଲଙ୍କ ଉପରେ ବସାଇ ନିଜେ ତାଙ୍କ ପାଖରେ ବସିଲା । ଦେହ ଥରଥର ହୋଇ କମ୍ପୁଛି । ମନ କହୁଛି, ଏଥର 'ମାଆ' ଜାଣିବ ଯେ, ଲଳିତାର ଭଲମନ୍ଦ ବାଛିବାର ଶକ୍ତି ଅଛି, ତା'ର ଗୋଟିଏ ଇଚ୍ଛା ଅଛି, ଅଧିକାର ଅଛି, ଆଉ ସେ ତା'ର ଇଚ୍ଛା ଓ ଅଧିକାରକୁ ବଜାୟ ରଖିବାକୁ ପରର ଅନୁମତି ଲୋଡ଼େ ନାହିଁ, କେବେ ଲୋଡ଼ିବ ନାହିଁ ।

ବୁଢ଼ୀଙ୍କୁ ଅବାକ୍ କରି ନନ୍ଦିକା ପାଟିକରି ହସିଉଠିଲା । ସେହି ହସ ମାଇସଞ୍ଜର ପାତଳା ଛାଇକୁ ହଟେଇକି ଅସ୍ତଗଲା । ତାର ହସ ଥମିଲା । ସେ କଅଁଳେଇ କହିଲା, ମନଇଚ୍ଛା ଗପ କର ଗୋ ଅପା, ଯେତେ ଯାହା ଗପିଲେ ବି ମୋ 'କା' କୁ ମୋ ଛାତି ପାଖରୁ ଅଲଗା କରିପାରିବ ନାହିଁ, ପାରିବ ନାହିଁ କହୁଛି ।

ସଞ୍ଜବତୀ ଦେବାବେଳ ପାଖେଇ ଆସିଲା । ନନ୍ଦିକା ସଞ୍ଜ ଦେବ । ଗଢ଼ୁଆ କାଲି କଟକ ଯାଇଛି । ମନ କହୁଛି, ସ୍ୱାମୀ ନିଶ୍ଚୟ ଆସି ପହଞ୍ଚିବେ । ସେ ଆଜି ନିଜେ ରୋଷେଇ କରିବ । ଦେଖିବ, କିଏ ଆଜି କେମିତି ଏ ଘରେ ଉପାସ ରହିବ, ଅଭିମାନ କରିବ ।

ଆର ଘଣ୍ଟାରେ ଜନ କହିଲା, ଖାଉଚ, ଗଧଆ ଫେରିଲଣି, ସେ ଆସୁଚ ।

ତମ ଖାଇ ?

ନାମ ଘଣ୍ଟାଏ ପଛରେ ଆସିବେ, ଚିଠି ନଥ ।

ଆଲୁଅ ମେଇବାକେ ପଦାକୁ ଗଲେ । ଅଭସ୍ଥା ବ ଗୃହି ରହିଥିଲେ । ପାଞ୍ଚି-ଫିଟାଇଲେ ନାହିଁ ।

ଚିଠିଖଣ୍ଡି ଲଳିତାକୁ ଦେଇ ନନ୍ଦକା କହିଲା, ପଢ଼ ସେ କ'ଣ ଲେଖିଛନ୍ତି । ଆସି ପହଞ୍ଚିବେ ତ ଚିଠିଟାଏ ପୁଣି ଦେଲେ କାହିଁକି ?

ଜନ ଆଲୁଅ ଟେକି ଧରିଲା । ଲଳିତା ମନେ ମନେ ପଢ଼ିଲା,—ଘରେ ଅଶାନ୍ତିର ନିଆଁ ଜଳୁଥିବାପାଇଁ ଦାଣ୍ଡଲୋକେ ଆସି ନିଆଁକୁ ଫୁଙ୍କି ଫୁଙ୍କି ଜଳାଇ ଆହୁରି ଅଶାନ୍ତି ମୋହ ଦେଉଥିବେ । ଘର ପଛେ ପୋଡ଼ି 'ଜଳି ଛାରଖାର ହେବ, ମୋ ଗୋଡ଼ ଆଉ ସେଠି ପଡ଼ିବ ନାହିଁ ।

ଅସ୍ଥିର ହାତରେ ଲଳିତା ପତ୍ରଟି ନନ୍ଦକାର ହାତକୁ ବଢାଇଦେଇ ଭୁଲିଯାଉଥିଲା, ନନ୍ଦକା ନେଥରେ ଅଖି ବୁଲାଇ କହିଲା, ସେ ତ ଏଇଖିଣି ଆସି ପହଞ୍ଚିବେ, ବୋଉ କିଛି ଖାଇ ନାହାନ୍ତି ଶୁଣିଲେ କେତେ କଳବଳ ହେବ ତାଙ୍କ ମନ ! ଯା ରୁ 'ଜା', ଆଗ ବୋଉଙ୍କୁ କ'ଅଣ ଖାଇବାକୁ ଦେ, ମୁଁ ଚୂଲି ଲଗଉଚି ।

ଚିଠିଟିକୁ ଅଣ୍ଟାରେ ଖୋସି ନନ୍ଦକା ପୁଣି କହିଲା, ଠିଆ ହୋଇ ରହିଲୁ କାହିଁକି ? ସରୁ ଚକୁଳି, ଖୀରି, ପାଚିଲା କଦଳୀ, —

ଅଳପ ଆଣ ଗୋ ସାନବୋହୂ, ନନ୍ଦଆ ମୋର ଧାଇଁ ଧାଇଁ ଆଉଥିବ ! ବୋହୂ ଦ'ଟା ଖାଇଛନ୍ତି କି ନାହିଁ ? ତେବେ ମରଣ ହେଉ ଲୋ ଜନ, ଜାହାର କଥା ରୁ ବୁଝିଲୁ ନାହିଁ । ସାନ ବୋହୂଟା କେମିତି ଅଭେକା ହେଇଚି ଦେଖିଲୁ, ବଡ଼ ବୋହୂଟା ଗାଲ ଫୁଲଉଚି । ତୁ ଗଣ୍ଡାଏ ଖାଇ ବସେଇଦେଉନୁ ? ଭଜା ତରକାରି ପଛେ ଲଳିତା କରିବ । ନନ୍ଦକା କରିବ ରାଇ, ଆସିଲି,—

'ସା'— !

ଯାହା କହିଲ, ମେଇଆ ରୁ କର, କଟକରୁ ସେ ଧାଇଁ ଧାଇଁ ଆସୁଥିବେ ।

ନନ୍ଦକା ବୋଷ ଘରେ ପଶିଲା ।

ସୁନନ୍ଦ ଜାଣେ, ତାର ଶ୍ଳେଷ ଚିଠିଖଣ୍ଡି ଘରର ସମସ୍ତଙ୍କୁ ବାଟକୁ ଆଣିବ । କାହାରିକୁ ସେ ଚିଠି ଲେଖିନାହିଁ । ମନର କଥା, ଭିତର ବିରକ୍ତିଭାବ, ଅଶାନ୍ତ ଛଟପଟ କଲବଲ ଆତ୍ମାର କ୍ରନ୍ଦନ ସେ ସମସ୍ତଙ୍କୁ ଜଣାଇଦେଇଛି । ସମସ୍ତେ ଅବଶ୍ୟ ପଢ଼ିବେ । ସମସ୍ତେ ବୁଝିବେ, ଯାହାର ଏ ସଂସାର, ଯାହାପାଇଁ ଏ ସଂସାର, ତା ମନରେ ଦାରୁଣ ଦୁଃଖ ହୋଇଛି, ସେ ଆସିବ ନାହିଁ ।

ଜନନୀଙ୍କର ସ୍ନେହଶୀଳ ମନ ତରଳିବ । ଲଳିତା ବୁଝିବ, ସୁନନ୍ଦ କେବଳ ରୂପ ଓ ଯୌବନର ଖେଳ ଚାହେଁ ନାହିଁ, ସେ ଘରେ ଶାନ୍ତି ଚାହେଁ, ପରସ୍ପର ପ୍ରତି ସହାନୁଭୂତି-ଶୀଳ ବ୍ୟବହାର ଆଶା କରେ । ସେ ଚାହେଁ, ସମସ୍ତେ ସମସ୍ତଙ୍କର କଥା ସହିବେ, ଲୋକହସା ହେବାର ଢଙ୍ଗ ଦେଖାଇବେ ନାହିଁ । ତା' ସଂସାରରେ ଦାଣ୍ଡର ଲୋକେ ମୁଣ୍ଡ ଗଳାଇବେ ନାହିଁ, ଆହା ଉହୁ କହି ଏପାଖେ ମାଉସୀ ସେପାଖେ ପିଉସୀ ହୋଇ ଘଣ୍ଟି ବଜାଇବେ ନାହିଁ ।

ସେ ଘରକୁ ଯିବ ନାହିଁ ।

ନନ୍ଦିକା ?

ସେ ନିର୍ଦ୍ଦୋଷ । ସମସ୍ତଙ୍କୁ ସୁଖଶାନ୍ତିରେ ରଖିବାକୁ ତାର ସର୍ବଦା ଉଦ୍ୟମ । ସୁନାର ମନ ନେଇ ତାର ଜନମ । ସହିପାରିବ ତ ସେ ଏତେ କଠୋର ପଥର ପ୍ରଭାବ ?

ଚିଠି ନେଇ ଗଣ୍ଡିଆ ଚାଲିଗଲାଣି ।

ସୁନନ୍ଦର ମନ କଲବଲ ହେଲା । ଫଳ ଯଦି ବିପରୀତ ହୁଏ ? ପରସ୍ପରର ଦୋଷ ଦେଇ ଯଦି ଘରେ ସେମାନେ ଆହୁରି ଅଶାନ୍ତି, ଆହୁରି ବିପ୍ଳବ ସୃଷ୍ଟି କରନ୍ତି ? ମା ଯଦି ଏଥିପାଇଁ ଲଳିତା ଉପରେ ଦୋଷର ବୋଝ ଲଦିଦିଅନ୍ତି ? ନନ୍ଦିକା ତାଙ୍କୁ କିଛି ନ କହି ଯଦି ଓଲଟି ଲଳିତାକୁ ଶାସନ କରେ ?

ଫଳ ହେବ ଓଲଟା । ଆହା, ଲଳିତାଟି ! ପିଲାଲୋକ । ଅତି ଭଲ । ସେବା କରି ସମସ୍ତଙ୍କର ମନ ନେବାକୁ ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ତା'ର ଜୀବନବ୍ୟାପୀ ଉଦ୍ୟମ । ବିନା ଦୋଷରେ ସେ ହେବ ଦୋଷୀ । ଅଭ୍ୟାସର ସହିବ, ଆଖିରୁ ଲୋତକ ଝରାଇବ । ସେ ଲୋତକର ମୂଲ୍ୟ କାହାରି ପାଖରେ ନାହିଁ !

ସୁନନ୍ଦ କେଶ ଟାଣିଲା । ବେଳ ଉଣା ହେଲାଣି ।

ସଞ୍ଜୀବ ଖବର ଦେଇଛନ୍ତି, ଆସ୍ଥକର ଅପିଲରେ ସେମାନେ ଜିତିଛନ୍ତି । ଦେବ୍ୟାସ କାରାଗାରରୁ ସେ ମୁକ୍ତ ହୋଇଛି । ନ୍ୟାୟତଃ ଏସବୁ ଚେତକ ଦେବାର କଥା, ସେତିକି ଦେବ । ଆନନ୍ଦର ସୀମା ନାହିଁ; କିନ୍ତୁ ଖୁସି ହେବାକୁ ମନ ପଛେଇଅଛି ।

ସୁସମ୍ବାଦଟି ଜଣାଇବାକୁ ଗଲାଆଉ ପଛେ ପଛେ ସାଇଁ ଘରେ ପହଞ୍ଚିଲେ କୈଫିୟତ୍ ଦେବାକୁ ସୁବିଧା ହେବ । କୈଫିୟତରେ ବାହାନା ହେବ—ହୁଁ, ଠିକ୍ ମନେ ପଡ଼ିଲା ।

ରାଜୀବ, ରାଜୀବ '

ଶ୍ରୀଧର ରାଜୀବକୁ ପାଖକୁ ଡାକିଲା ।

କେତେ ଟଙ୍କା କଟିଲା ଅପିଲ୍‌ରେ ?

ନଅ ହଜାର ସାତଶ ତେପନ ଟଙ୍କା ଏକ ଅଣା ।

ରକ୍ଷା ହେଲା, ନୋହିଲେ—

ବେପାରର ଅର୍ଦ୍ଧା ଭାଙ୍ଗିଥାନ୍ତା ।

ବେଶ୍ । ମହାପାତ୍ରବାବୁଙ୍କୁ ହିସାବ ବୁଝାଇଦେଇ ତୁ ଚାଲିଆ । ତୁ ବି ମୋ ସଙ୍ଗେ ଘରକୁ ଫିରୁ ।

ଆଜି ?

ଆଜି ନଅଣ ରେ, ସଞ୍ଜ ଆଗରୁ ଯାଇଁ ଘରେ ପହଞ୍ଚିବା ଦରକାର । ଖବରଟା ଆଜି ନନ୍ଦକାକୁ ଜଣାଇବାକୁ ହେବ । ଛଅ ହଜାର ଟଙ୍କା ତାଙ୍କଠାରୁ ତୁ ଆଣିଥିଲୁ ନା ?

ଦୁଇଥରରେ ଚାରିହଜାର ପାଞ୍ଚଶ ।

ତାଙ୍କୁ କହିଦେବାକୁ ହେବ ଯେ ତାଙ୍କ ଟଙ୍କା ସେ ଶୀଘ୍ର ଫେରପାଇବେ । ବଜାରରୁ କେତେ ଜିନିଷ କିଣିବାକୁ ପଡ଼ିବ । ଚାଲ୍ ମୋ ସାଙ୍ଗରେ । କେତେ ଟଙ୍କା ପାଖରେ ଅଛି ?

ହଜାରେ ଛଅଶ ବୟାଳିଶ ଟଙ୍କା ନଅ ଅଣା ।

ଅଣା, ପାହୁଲ, କଉଡ଼ା ଝାନ୍ତ କହିବା ଲୋଡ଼ା ନାହିଁ । ସେତକ ହେଲେ ଚଳିବ । ବାହାରିପଡ଼ ।

ସଉଦା କିଣା ଶେଷ ହେଲାବେଳକୁ ସଞ୍ଜ ପାଖେଇ ଆସିଥିଲା । ନନ୍ଦକା ଓ ନଳିତାଙ୍କ ପାଇଁ ଦାମିକା ଶାଢ଼ୀ ଓ ବ୍ଲାଉଜ । ଏକା ପରକା ନୂଆ ଡିଜାଇନ୍‌ର ପଥରବସା କାନଫୁଲ, ମାଆଙ୍କ ପାଇଁ ଶାଢ଼ୀ ଓ ନୂଆ ଆଲୁଆନ୍, କକା ପାଇଁ ଲୁଗା, ସୁମିତ୍ରା ପାଇଁ ସୁନ୍ଦର ଶାଢ଼ୀ, ପିଲାଙ୍କ ପାଇଁ ଲୁଗା, ଜାମା, ଦହି, ଫଳ ମିଠେଇ— ।

ତୋ ପାଇଁ କଣ ରାଜୀବ ?

ଖଣ୍ଡେ ସମ୍ବଲପୁରୀ ରଙ୍ଗ-ଗାମୁଛା ।

ବେଶ୍ । ମୋ ପାଇଁ ?

ଗ୍ରେଟ ଖଣ୍ଡେ ମଟର ଗାଡ଼ି ।

ନନ୍ଦକାର ପୁଅ ପାଇଁ ? ମୋ ପାଇଁ ହେଲେ ନୂଆ ଜୋତା, ବାଟା କମ୍ପାନୀର ହେଲେ ଚଳିବ । ବସ୍‌ରୁ ଓହ୍ଲାଇ ବାଟ ଗ୍ଭର ପାଞ୍ଚମାଇଲ ଗ୍ଭଲିଗଲେ ମନ୍ଦ ହେବ ନାହିଁ ।

ଅନ୍ଧାର ରାତି ଯେ !

ଦୁଇଟା ବଡ଼ ଟର୍ଚ୍ଚ କିଣାଯାଉ ।

ଦୁଇ ହାତରେ ଆପଣ ଧରିବେ । ବୋଝ ତ ଆଉ ଶୂନ୍ୟେ ଶୂନ୍ୟେ ଉଡ଼ିଯିବ ନାହିଁ ?

ତେବେ କାଲି ଯିବାକୁ କହୁଛୁ ? ସକାଳେ ?

ନାଇଁ, ଆଜି । ଦେହଟା କସ୍‌ମସ୍ ହେଉଛି ।

ମୋର ବି ।

ରାଜୀବର ମନରେ ଆଜି ଫୁର୍ତ୍ତି । ସେ କେସ୍ ଜିଣିନାହିଁ, ଲଙ୍କାଗଡ଼ ଜିଣିଛି । ମନ ଖୋଲି କଥା କହିବାକୁ ସେ ପରୁଆ ନାହିଁ । ମୁକ୍ତ ହସ୍ତରେ ଖରଚ କରିବାକୁ ବଙ୍କେଇ ବଙ୍କେଇ ବାଧା ଦେଉନାହିଁ — ମାଲଗୋଦାମରେ ଜିନଷ ପଡ଼ିଛି; ହାଜି ନସିମ୍‌ର ଛଅ ହଜାର ପାଞ୍ଚଶ ଅଣାଅଶୀ ଟଙ୍କା ଏଗାର ଅଣା ପାଞ୍ଚପାହି ବାକି । ସେଲ୍‌ଟିକସ ଅପିଲ୍‌ର ଫଳାଫଳ ଜଣା ଯାଇ ନାହିଁ —।

ରୁ ଧର ଏ ଟର୍ଚ୍ଚ ଆଲୁଅ, ବୋଝଟା ମୋ ଆଡ଼କୁ ଦେ ।

ବେଶି ଓଜନ ହୋଇନାହିଁ ।

ଗାଆଁ ପାଖେଇ ଆସିଲିଣି ।

ରାଜୀବ କହିଲା, ନୂଆ ଜୋତା ପିନ୍ଧିଛନ୍ତି, ଟିକିଏ ସାବଧାନ ହୋଇ ନ ଗ୍ଭଲିଲେ ଗୋଡ଼ ମକଚିଦେବ । ବେଳ କେତେ ?

ଆଠଟା ପଡ଼ିଗ୍ଭଲିଣି ।

ଉପାସ ରହିବାକୁ ପଡ଼ିବ ନାହିଁ ।

ସୁନନ୍ଦ ଉତ୍ତରଦେଲାନାହିଁ । ଗଣ୍ଡଆ ହାତରେ ଯେଉଁ ଚିଠି ସେ ପଠାଇଥିଲା ସେଇ କଥା ଭାବିଲାବେଳକୁ ଛାତି ଚମକିଉଠିଲା । ବୋଉ କିଛି ଖାଉନାହାନ୍ତି । ଚିଠି ଖଣ୍ଡି ପଢ଼ି ସେ କଅଣ କରୁଥିବେ ? ନନ୍ଦକୁ ଦୋଷ ଦେଉଥିବ ଲଳିତାର । ମୁହଁ ଲଦି ନିଜ କୋଠରୀରେ ଉପାସରେ ପଡ଼ି କାନ୍ଦୁଥିବ ପରା ! ଆଉ ଲଳିତା ? କେତେ ଅଭ୍ୟାଗତ ସହିବ ସେ ?

ଆତ୍ମହତ୍ୟା କରିବ ? ବିଷ ଖାଇବ ?

ଅତନୁଙ୍କର ସିନେମାର ଛବି ସପତ୍ନୀ ପରି ! ଚନ୍ଦ୍ରା ଓ ବିଚନ୍ଦ୍ରା ସତ୍ୟବାନର ଦୁଇ ପତ୍ନୀ। ଗୋଟିଏ ପିଲାର ଜନନୀ ଚନ୍ଦ୍ରା । ଗୋଟିଏ ପିଲାର ଜନକ ସତ୍ୟବାନ । କେଉଁ ଦୁର୍ବଳ ମୁହୂର୍ତ୍ତରେ ବିଚନ୍ଦ୍ରାର ପ୍ରେମରେ ସେ ପଡ଼ିଥିଲା । ତୀବ୍ର ପ୍ରତିବାଦ ସତ୍ତ୍ୱେ ବିଚନ୍ଦ୍ରା ଆସିଲା ସତ୍ୟବାନର ଘରକୁ । ସବୁ ଅତ୍ୟାଚାର ସେ ସହିଲା । ପଦଟିଏ ଭଲ କଥା କାହାଠାରୁ ସେ ଶୁଣିଲା ନାହିଁ ।

ସତ୍ୟବାନର ସବୁ ସ୍ନେହ ବ୍ୟର୍ଥ ହେଲା । ବିଚନ୍ଦ୍ରାକୁ ନେଇ ନୂଆ ସଂସାର ସେ କରିପାରିଲା ନାହିଁ । ତ୍ୟାଜ୍ୟପୁତ୍ର କରିବାର ଧମକ ଦେଇଥିଲେ ତାର ପିତା । ସେଥିକି ସେ ପ୍ରସ୍ତୁତ ଥିଲା; କିନ୍ତୁ ବିଚନ୍ଦ୍ରା ପ୍ରସ୍ତୁତ ହୋଇପାରିଲା ନାହିଁ ।

ସୁଖର ସଂସାରରୁ ଅଶାନ୍ତି ଦୂର କରିବାକୁ, ଦୁନିଆର ସମାଲୋଚନାର ବେଡ଼ି ଖୋଲିବାକୁ ସେ ବିଷପାତ୍ର ହାତରେ ଧରିଲା । ମୁହଁରେ ଲଗାଇଲା । ସତ୍ୟବାନ ସହସା ଉପସ୍ଥିତ ହେଲା; କିନ୍ତୁ ଦେଖିଲା, ହସିହସିକା ବିଚନ୍ଦ୍ରା ଟଳିପଡ଼ୁଛି ।

ଦର୍ଶକ ଅନେକ, ତଥାପି ଗୃହିଣୀ ତା ଆଡ଼କୁ କେଉଁଠି ଚାହିଁ, ଦୂରରୁ ହସିଥିଲେ । ସୁନନ୍ଦ ନିମନ୍ତ୍ରଣ ହୋଇ ଛବି ଦେଖିବାକୁ ଯାଇ ନ ଥିଲା । ଦାଣ୍ଡର ଦର୍ଶକମାନଙ୍କ ପରି ପଇସା ଦେଇ କିଣି ଯାଇଥିଲା ।

ଗତ ରାତିର କଥା ତ !

ସିନେମା ଘରୁ ପଦାକୁ ଗୋଡ଼ କାଢ଼ିଲେ ଛବିଖେଳର ଭାବନା ମନରୁ ଉଭେଇ ଯାଏ । ବାସ୍ତବ ଜୀବନର ଛବି ମନରେ ପଶେ, ଆଖି ଆଗରେ ଉଙ୍କିମାରେ । ସିନେମା ଚିତ୍ର ସପନରେ ବି ମନକୁ ପ୍ରଭାବିତ ଅସ୍ଥିର କରେ ନାହିଁ । ତା ହେଉଥିଲେ ଗହଣା ହାତରେ ଯେ ସେହି ଉତ୍ତେଜନା ଭରା ନିର୍ମମ ପତ୍ରଟି ପଠାଇ ପାରି ନ ଥାନ୍ତା ।

ଘର ପାଖେଇ ଆସିଲା ।

ସୁନନ୍ଦର ଅଧୀର ଭାବନା ତାର ମନ ଭିତରେ ଠିଆ କରାଇଲା ଗୋଟିଏ ଭୟଙ୍କର ଦୃଶ୍ୟ—ଲଳିତା ଅନ୍ଧାରରେ ଠିଆ ହୋଇଛି, ହାତରେ ବିଷପାତ୍ର, ମୁହଁ ପାଖକୁ ନେଉଛି । ଢୋକିଦେବ ପରା !

ସୁନନ୍ଦ ଅଧୀର ହେଲା । ବେଗେ ବେଗେ ପାହୁଣ୍ଡ ପକାଇଲା । ଭାବିଲା, ସେମାନଙ୍କର ନିଷ୍ଠୁର ବ୍ୟବହାର ଓ ବଡ଼ରହୀନ ଅତ୍ୟାଚାର ସହି ନ ପାରି ଲଳିତା ବିଷପାନ କରିବ, ଅବିକଳ ସିନେମା ଛବିର ନାୟିକା ବିଚନ୍ଦ୍ରା ପରି ଜୀବନଦୀପଟି ଲିଭାଇଦେବ ?

ହାତରେ ତା'ର ବିଷପାତ୍ର !

ନିଜେ ପିଉ ନାହିଁ, ବଢ଼ାଇ ଦେଉଛୁ ନନ୍ଦକାକୁ ।

ନନ୍ଦନା ପଲଙ୍କ ଉପରେ ବସିଛି । ତଳକୁ ଗୋଡ଼ ଲମ୍ବାଇଛି । ମୁହଁଟି ତା'ର ଉଜ୍ଜ୍ୱଳ ଆଲୁଅରେ ଦିଶୁଛି, ପାତଳ ଧବଳ ଖସିଲା ବାଦଲର ଅନ୍ତରାଳରେ ଛପିଲା ଜହ୍ନର ମଉଳା ହସିଲା ଲପନ ପରି । ଆଗରେ ଉଷ୍ମ ଲଳିତା । ମୁହଁରୁ ଫିକେ ଦିଶୁଛି । ମଥାରେ ବସନ ନାହିଁ । କାନର ଟପ୍ ଦୋହଲୁଛି । ଲମ୍ବିଲା ହାତର ଡାଇମଣ୍ଡକଟା ସୁନାକାଚ ଝଟକ ଉଠୁଛି ।

ପିଇଦେ 'ମା', ମିଛ କହି ତୁ ସଭିଙ୍କୁ ଖୋଇପେଇ ରହିଲୁ, ନିଜେ କାହିଁକି ଉପାସ ରହିବୁ ? ବୋଉ ଆଜି ଶାନ୍ତମୂର୍ତ୍ତି । ଗୋଡ଼ ଘଷିଦେଲି । ସେ ଦେହେ ଖୁସି ହେଲେ । ପିଠି ଆଉଁସି କେତେ ଭଲ କଥା କହିଲେ ମ !

ଏବେ ତାଙ୍କୁ ଚିହ୍ନିଲୁ 'ନା' ? ତାଙ୍କର ମନଟି ଅତି କୋମଳ ଲୋ, ସେ ସ୍ନେହ ସୋହାଗର ଝଣି !

ତାଙ୍କ ଗୋଡ଼ରେ ମୁଣ୍ଡ ରଖି ମୋ ଦୋଷ ମାଗିନେଲି । ପୁଅକୁ ତାଙ୍କର ଅପେକ୍ଷା କରି ସେ ଶୋଇଲେ । ତୁ ଜାଣୁ, ସେ ଆସିବେ ନାହିଁ । ଆମେ ଦୁହେଁ କାଲି ଚିଠି ଲେଖି ତାଙ୍କୁ ପଠାଇବା ଯେ ଅଶାନ୍ତିର ନିଆଁ ଲିଭିଲାଣି, ତମେ ସଙ୍ଗେ ସଙ୍ଗେ ଆସ ।

ସେତକ ଲେଖିଲେ ସେ ଆସିବେ ନାହିଁ ।

ତେବେ ?

ଲେଖିବାକୁ ହେବ, ଯେତେ ଯାହା ହେଲେ ବି ଦାଣ୍ଡର ଲୋକେ ଆମ ଘରେ ମୁହଁ ଗଳେଇବେ ନାହିଁ କି ଉପରେ ପଡ଼ି ଭଲେଇ ହୋଇ ତାଙ୍କର ଅଲୋଡ଼ା ଭଲମନ୍ଦ ଉପଦେଶ ଦେବେ ନାହିଁ ।

ହଁ, ଆମେ ସେଇଆ ଲେଖିବା । ହେଲା ତ ? ଏଥର ଏ କ୍ଷୀର ଗିଲାସକ ପିଇଦେ ମୋର ସୁନା ଭଉଣୀ, ତତେ ମୋ ରାଣ । ବୋଉ ମତେ ସଙ୍ଗରେ ବସାଇ ନ ଥିଲେ ମୁଁ କେବେ ଖାଇ ନ ଥାନ୍ତି । କଟକରୁ ସେ ଆସିବେ କହି ତୁ ସମସ୍ତଙ୍କୁ ଠକିଦେଲୁ ସିନା— ।

ସେ ଆସୁଥିବେ ଲୋ, ବେଳେବେଳେ ସେ ଅଧରାତିରେ ଆସି ପହଞ୍ଚନ୍ତି । ଏମିତିକା ନିର୍ଦ୍ଦୟ କଠୋର ଚିଠି ତାଙ୍କ କଲମରୁ ବାହାରିପଡ଼ିଲା ସିନା, ନିଜ ଚିଠିର ପ୍ରଭାବ ସେ କେବେ ସହିପାରିବେ ନାହିଁ । ସେ ନିଶ୍ଚୟ ଆସିବେ, ମୋ ମନ ମୋତେ କହିଦେଉଛି ।

ଆସିବେ ତ ଭଲ ହେବ । ରନ୍ଧାବଢ଼ା ହୋଇ ସବୁ ରହିଛି । ତୁ କାହିଁକି ଅନେଇ ବସିଥିବୁ । କ୍ଷୀର ଗିଲାସଟି ପିଇଦେ । କହୁଥିଲୁ ପରା, ମୋ ପିଲାକୁ ତୁ ପେଟରେ ଧରିଛୁ, ତାକୁ କାହିଁକି ଛଟପଟ କରୁଛୁ ?

ନନ୍ଦିକା ହସିଲା । କହିଲା, ଏଥର ମୁଁ ହାରିଲି । ଆଉ ନାହିଁ କରିବି ନାହିଁ । ଦେ—

ଲଳିତା ହାତରୁ କ୍ଷୀର ଗିଲାସଟି ନେଲା ।

ସୁନନ୍ଦ ଘର ଭିତରକୁ ପଶିଆସିଲା । ଦେହରୁ ଗମ୍‌ଗମ୍ ଝାଳ ଝରିପଡ଼ୁଛି, ମୁହଁ ଦିଶୁଛି କ୍ଲାନ୍ତ ।

ନନ୍ଦିକା ଉଲ୍ଲସିତ ହୋଇ ଠିଆହେଲା ।

ସେ କଅଣ ଧରିଛ ନନ୍ଦିକା ?

କ୍ଷୀର ।

ମୋତେ ଦିଅ, ଖରା ଶୋଷ ହେଉଛି ।

ରନ୍ଧାବଢ଼ା ହୋଇ ରଖାହୋଇଛି ସେ ।

ଲଳିତା କହିଲା, ଦେ 'ସା'ଙ୍କୁ ଆଗ ସେ ପିଅନ୍ତୁ । ମୁଁ ତୋ ପାଇଁ ଆଉ ଗିଲାସେ ଆଣିଦେବି । ଯାଏଁ, ଆଗ ବୋଉଙ୍କୁ ଉଠାଏ । ସେ ଅପେକ୍ଷା କରି ମନ ମାରି ଶୋଇ-ପଡ଼ିଛନ୍ତି ।

ରହ ଲଳିତା, ମୁଁ ଆସିବି ବୋଲି କେମିତି ଜାଣିଲ ତୁମେମାନେ ?

ମୋ 'ସା' କହିଲା, ତୁମେ ତ ଚିଠି ଲେଖି ସେଇଆ ଜଣାଇଥିଲ ।

କ୍ଷୀର ଗିଲାସଟି ନନ୍ଦିକାର ହାତରୁ ନେଇ ସୁନନ୍ଦ ଢକଢକ କରି ପିଇଲା । ଯେ ବୁଝିଲା, ଏ ସଂସାର ଚନ୍ଦା ଓ ବଚନ୍ଦାଙ୍କର ସଂସାର ନୁହେଁ । 'ସା' ଓ 'କା'ଙ୍କର । ସାମୟିକ ଅଶାନ୍ତିର ଭସାମେଘ ଭାସିଯାଇଛି, ଆକାଶ ପୁଣି ହେଉଛି ମେଘମୁକ୍ତ, ସୁନ୍ଦର । ଲୁଆଁ ରସୁନେଇ ସଞ୍ଜ ଆଗରେ ବୁଡ଼ିଲା ତପନ ଓ ଉଠିଲା ଜହ୍ନର ଅମଳିନ ଦିଓଟି ଆନନ ଦୁଇପାଖେ ହସିଉଠୁଛି । ମୁଗ୍ଧ ଚନ୍ଦ୍ରସ୍ଥ କଳ୍ପନାବିଳାସୀ କବିଟିଏ ପରି ସେ ଚାହୁଁଛି ଏ ମୁହଁରୁ ସେ ମୁହଁକୁ ।

ସେ ଗରଳ ପାନ କରି ନାହିଁ, କ୍ଷୀର ପାନ କରି ନାହିଁ, ପ୍ରାଣଭରି ଆକଣ୍ଠ ପାନ କରିଛି ଅମୃତ, 'ସା' ଓ 'କା'ଙ୍କର ନିର୍ମଳ ମନରୁ ଝରିଛି ଯେଉଁ ମଧୁର ରସ ।

କେମିତି ତୁମେ ଜାଣିଲ ନନ୍ଦିକା ?

ଚିଠି ଲେଖିଥିଲ ପରା !

ଲେଖିଥିଲି, ଆସିବି ନାହିଁ । ଗୋଟାଏ ଭଲ ଖବର ନେଇ ଆସିଛି । ଆସୁକରି ଆସିଲ୍‌ରେ ମୁଁ କହୁଛି । ନଅ ହଜାର—

ଟଙ୍କା କହୁଛି କଥା ସେତକ କହୁଥା । କେଡ଼େ ଭଲ ଖବର ମୁଁ ତମକୁ ଦେବି ଜାଣ ? ହସି ହସି ନନ୍ଦିନୀ କହିଲା ।

ଶୁଣେ ?

'ଜା' ମୋ'ର ଆହୁରି ବଡ଼ କେସ୍ ଜିଣିଛି । ସେ ବୋଉଙ୍କୁ ଆପଣାର କରିପାରିଛି । ତାଙ୍କର ତାତିଲା ମନକୁ ସେ ଶୀତଳ କରିଛି, ତାଙ୍କ ଆଖିରୁ ସେ ବୋହାଇ ପାରିଛି କରୁଣାର ଧାର ।

ସତେ, ଲଳିତା ?

ହଁ, ସେତକ ମୋ କରାମତି ନୁହେଁ, ମୋ 'ସା'ର ଉପଦେଶ ମୁଁ ପାଳିଥିଲି । 'ସା' ମିଛ କହିଲେ ସତ ଫଳିଯାଏ ।

ସେ ତୁମ ଓକିଲ ?

ନା, ସେ ମୋର ସ୍ୱାମୀ । ତା' କଥା ନ ମାନିଲେ ଏ ଘରେ ଅଶାନ୍ତି ସୃଷ୍ଟି ହେବ, ଦାଣ୍ଡର ଘରଭଙ୍ଗା ନାଦ୍ରୁଷ ଲୋକେ ଘରେ ପଶି ଚେଁଇବେ । 'ସା' ମୋର ଗୁରୁଦେବ, ତମର ବି ।

ନନ୍ଦିନୀ ହସହସ ହୋଇ ଲଳିତାର କଅଁଳ ଗାଲରେ ସରୁ ଚୁପଡ଼ା ମାରିଲା । କହିଲା, ଚଗଲି, ଖାଲି ଏମ୍ପିତେଣୁ କଥା କହି ପେଟ ପୂରାଇବୁ କି, ତାଙ୍କୁ ଖାଇବାକୁ ଦେବୁ ନାହିଁ ? ଧାଇଁ ଧାଇଁ ସେ ଆସିଛନ୍ତି ।

ସୁନନ୍ଦ କହିଲା, ମୋର ଭୋକ ମଲାଣି, ଖାଇବି ନାହିଁ ।

'ସା'ର ଅବାଧ୍ୟ ହେବ ?

କେବେ ହେଇ ନାହିଁ, ଲଳିତା ।

କେବେ ହେବ ନାହିଁ କି ?

ସେକଥା ନନ୍ଦିନୀ ଜାଣନ୍ତି ।

ହସି ହସି ନନ୍ଦିନୀ କହିଲା, ତେବେ ତମେ ମୋର କଥାଟି ମାନ, ଆଗ ମୋର 'ଜା'କୁ ଫେଲ କରିବାଟି ।

ଆରେ, ଏଁ —

ହେଲା, ଯା ଏଥର, ଭାତ ବାଢ଼ିବୁ ।

ଦୁଇ ଜଣଙ୍କ ପାଇଁ ବାଢ଼ । ରାଜୀବ ତା'ର ଦୁଇ ଭାଉଜଙ୍କୁ ଭେଟି ଦେବାକୁ ପର୍ବତ ପରି ବୋଝ ବୋହି ମୋ ପଛେ ପଛେ ଧାଇଁଆସିଛି । ଦାଣ୍ଡରେ ବସି ଦମ୍ ନେଉଛି । ମକଦ୍ଦମା ସେ ଜିତିଛି । ମନରେ ତା'ର ଅପାର ଆନନ୍ଦ ।

ଆଲୋ ଭଉଣୀ, ମୋ ନନ୍ଦ ଆଉ ପାଣି ଶୁଭୁଛି !

ବୋଉ ଉଠିଲେଣି ଲୋ 'କା' !

ସୁନନ୍ଦ ପାଟିକରି ଉଠିଲା, ବୋଉ, ବୋଉ — '

ମାଆଙ୍କର ଗୋଡ଼ଧୂଳି ମୁଣ୍ଡରେ ମାରିବାକୁ ସୁନନ୍ଦ ଘରଭିତରୁ ବାହାରିଆସିଲା । ଆଜି ସେ ଚେତଣା ମାଆର ଗୋଡ଼ ଧରି ତଳେ ମୁଣ୍ଡ ଲଗାଇବ । ଏ ସଂସାର ସେ ଗଢ଼ିଛି । ସେ ସ୍ୱର୍ଗରୁ ବଳି ବଡ଼ । ଦୟାମୟୀ । କ୍ଷମାର ଅବତାର । ଆଜି ମାଆ ପାଖରେ ସେ ଭିକ କରିବ ଗୋଟିଏ ଚୁମ୍ବନ ପାଇଁ । ଅମୂଲ ମୂଲ ଚୁମ୍ବନର ମନହୃଦା ଦ୍ୟୁନଆଦ୍ୟୁନ ସିହରଣ ତା'ର କର୍ମବହୁଳ ଜଟିଳ ଜୀବନରେ ଆଣିଦେବ ନୂତନ ସ୍ପନ୍ଦନ, ନବ ଜାଗରଣ ଓ ନୂଆ ପ୍ରେରଣା ।

ଆକାଶ ଭୁଇଁରେ ମାଡ଼ିଆସୁଥିବା କଳାଘୂମର ମେଘମାଳ ଦେଖି ଯେଉଁମାନେ ଗୃହକ ପଣ ଗୁହିଁ ରହିଥିଲେ, ଆଶା କରିଥିଲେ, ଝଡ଼ତୋଫାନ ଆସିବ, ବିଜୁଳି ଚମକିବ, ଘଡ଼ଘଡ଼ିର କାନ ଅତଡ଼ା ପକା ନାଦରେ ମେଦିନୀ ଥରିବ, ସେମାନେ ହତାଶ ହେଲେ । କିଛି ହେଲା ନାହିଁ । ଭେକପଲର ମକ ମକ ରାବ ଆପେ ଆପେ ଥମିଲା । କିଟି କିଟି ଅନ୍ଧାର ସନ୍ଧରେ ଲୁଚିବା ସାର ହେଲା । ମିଟିମିଟି କରି ଅନାଇଁବାକୁ ବି ସାହସ ହେଲା ନାହିଁ ।

ନନ୍ଦକା କନିଆ ଜାଣେ ଗୋ, ବାପଚ୍ଛୁଆଙ୍କୁ ଗନ୍ଧ ଶୁଙ୍ଘେଇ ଗାଡ଼ କରେ । ଶାଶୁ କି ସ୍ୱାମୀ ତ ନିଆଁ, କନିଆ ମାଇପ ଲଳିତା ନନ୍ଦକା କଥାରୁ ବାହାର ହେବ ନା ? ଉଠ୍ କହିଲେ ଉଠୁଛି, ବସ୍ କହିଲେ ବସୁଛି । ଯାହା କହନ୍ତି, ନ ପଚାରିଲେ ସେ ପାଣି ଢୋକିବ ନାହିଁ ।

କି କଥା କହୁଛ ମ, ଏବକାଳର ଝିଅଟି ସେ ଲଳିତା, କିଛି ମୂର୍ଖ ନୁହେଁ କି ଓଲମୀ ନୁହେଁ, ମନର କଥା ସେ କାହିଁକି କାହା ଆଗରେ ଝାଡ଼ିବ କି ବଉଳ ? କେଡ଼େ ହୁସିଆର ସେ ! କ'ଣ ତା'ର ଅଭାବ ଅଛି, କହିଲ ? ଗୁବ ମୂଠାକ ଅଣ୍ଟାରେ ଖୋସି ସେ ବୁଲୁଛି । ଗେରସ୍ତ ତ ହାତମୁଠାରେ । ଶାଶୁ ଚଣ୍ଡଚଡ଼ ହେଉଥିଲା, ସେ ଏବେ ହେଲାଣି ସୁଧାର ଗାଈ । ସବୁ ଆଗ ହାତକୁ ନେଇ, ଯେତେବେଳେ ସେ ନିଜ ମୂର୍ତ୍ତି ଧରି ଠିଆ ହେବ, ବଲେ ଦେଖିବ, କି ଧାଲ ଲଗିବ, ରହ ।

ରବିବୋଉ ଯାହା କହିଲେ, ମୋ ମନକୁ ପେଜିଲା ଗୋ ଦେଢେଈ, ଧନ କେବେ ଗତ ହେବ ନାହିଁ, ଗତ କେବେ ଧନ ହେବ ନାହିଁ । ଲଳିତା ଅନେଇଁ

ବସିଛୁ, ଶାଶୂ ବୁଢ଼ୀ କେବେ ଆଖି ବୁଜିବ, ସେଇଠୁ ସେ ଫଣା ଟେକିବ । ବୁଢ଼ୀ ଯେମିତି ଦଳୁଦଳ କ୍ଷୀଣ ହେଉଛି, କେତେବେଳେ ମେ ଝଳପଡ଼ିବ କିଏ ଜାଣେ ?

ଏତେ ଜେରଯାଏ କଥା ଯିବ ନାହିଁ ମ ଅଶୋକା, ନନ୍ଦନାର ପିଲାପିଲି ହେଉ, ସେଇଠୁ ଦେଖିବ । ସଉରୁଣୀ, କଥା ରହିଛି କାଳକାଳରୁ, ଯମକୁ ଯାତପୁଅ ଦେବ, ସଉରୁଣୀକୁ ପୁଏ ଦେବ ନାହିଁ । ପୁଣି, କହନ୍ତୁ ନା ନାହିଁ କି, ଯଇତା ପଛେ ମରୁ, ସଉରୁଣୀ ରଣ୍ଡ ହେଉ ?

ସବୁ ଶୁଣି ଶୁଣି ଓଲମୀ ଉପାଧି ଲଭିଥିବା ଦଉବୁଢ଼ୀ ଭାନୁମତୀ କହିଲା, ଏ ସବୁ କି କଥା କହୁଛ ମ ଆମ୍ଭକସି, ଆମର କାହିଁକି ପରଘର ଭାଳେଣି ? ପାହି କଟା ସରିଲା, ସାର ଆସି ରଖା ହେଲା, ଲଉଡ଼ି ମୁଠାଏ ଧରି ମୁଁ ଆଉ କେତେବେଳଯାଏ ଝିମଝିମ କରିବ ? ଆଠ-ପଚିଶ ଖେଳ, ବେଗେ ଆରମ୍ଭ ନ କଲେ ଖେଳ ସବୁ ସବୁ ସଞ୍ଜ ବୁଡ଼ିବ ।

ଆଉ ଜଣେ କିଏ ଆସିଲେ ଯିନା ହେବ, ପାଞ୍ଚ ଜଣରେ ଖେଳ ହେବ କପରି ?

ମୁଁ 'କା' ନେବ ।

ସମସ୍ତେ ଠୋଠୋ ହୋଇ ହସିଉଠିଲେ । ଅଶୋକା କହିଲେ, ନିଜକୁ 'କା' କହିଛି ମ ସେ ଫୁଲେଇ ଅଲଜୁକୀ ଲଳିତା ।

ରୁମୀ ହ, ଥର ଥର ଆମ୍ଭକସି କହିଲା ଆଖି ଠାରି, ସୁମିତ୍ରା ଆଉଚ; କାଖରେ ପିଲା, ହାତରେ ପିଲା, ପଛରେ ପିଲା, ଧନ୍ୟ ଲୋ ସେ ।

ରବବୋଉ ମୁରୁକି ହସି କହିଲେ, ପେଟ କଣ ଖାଲି କି ?

ଭାନୁମତୀ କହିଲା, ସତେ, କେଡ଼େ ଭାଗ୍ୟ ଲୋ !

ବହୁଲ ଭଣିଲା, ଦେଢ଼ଶୁର ଶ'ହ' କଣ ଧନ ଦେଲେ, ମଣିଷ ଭୋଗଭାଗ୍ୟରେ ରହିଲେ, ଏମିତି ଭାଗ୍ୟ ସଭିଙ୍କର ହୁଏ । ଅଭାବ ତ ନାହିଁ । ତଗଲା ଘାଳିବ ଏମିତି ମାମଲତକାର ହେବ, ଘଉ କରିବ, ଏହା କିଏ ଜାଣିଥିଲା ? ତା' ପୁଅଗୁଡ଼ା କୁଆଁତେ ପାଠ ପିଇଯାଉଛନ୍ତି ।

ସୁମିତ୍ରା ଆସିଲା ।

ତମକୁ ଖୋଜା ପଡ଼ୁଥିଲା ।

କାହିଁକି ମ, ଏଡ଼େ ଶରଧା ।

ଜଣେ ଅଭାବ ପଡ଼ୁଛି ।

ତମର ଯିଏ ନାହାନ୍ତି କି ଅଶୋକା ?

ତାଙ୍କୁ କାହିଁକି ଖୋଜା ?

କା

ଅଭାବ ମେଣ୍ଟାଇଦେବେ ।

ବସୁନ ।

ଯାଉଛି ଗୋ ଦେଢ଼ଶୁର ଘରକୁ; ସାନ ଅପା ଜଣକ ଯିବେ ଯେ –

ଅଶୋକା ପଚାରିଲା, କାହିଁକି; କଅଣ ଫେର୍ ଲାଗିଲା କି ? ମୁଁ ଜାଣେ ପରା !

କିଛି ନାହିଁ । ଦଶରା ହେବ ଯେ, ଦେବୀ ଦେଖିବାକୁ ବଡ଼ ଅପା ତାଙ୍କୁ ଡାକରା ପଠାଉଛନ୍ତି । ଦଶରା ବାସି ଫେରିବେ ।

ସେ କି ଯିବେ ?

ନାହିଁ । ବୁଢ଼ୀ ଯିବାକୁ ଅମଙ୍ଗ । ଦେହ ଭଲ ନାହିଁ । ବଡ଼ ଅପା ତାଙ୍କୁ ଏକା ଛାଡ଼ିଯିବେ ନାହିଁ । ଯାଉଛି ଗୋ, ପଛରେ ଗାଳି ଦେବ ନାହିଁ ।

ସୁମିତ୍ରା ଚାଲିଗଲା ।

ବଉଳ କହିଲା, ଶୁଣିଲ ? ଟୋକୀ ଘର ଜଣେ । ବୁଢ଼ୀ ବୁଢ଼ୀ ପାଣି ପିଏ । ଶେରସ୍ତକୁ ମନେଇ ନେଇଛି । ଏଣେ ଉପର ମୁହଁରେ ନାହିଁ କରୁଥିବ ମନେ ମନେ । ଜଣକରୁ ଥରାଏ ସେ ବୁଲିଆସୁ, ଦେଖିବ ଯେ ନନ୍ଦବାର ଭଲପଣ ସବୁସହଣୀ ଗୁଣ କେମିତି ରହିବ ? ଚୂଡ଼ି ଧରାଧରି ନ ହୋଇଛନ୍ତି ଯଦି ମୋ ନାଁ ଧରିବ ନାହିଁ ।

ଦଶରା ସରିଲା, କୁଆଁର ପୁନେଇଁ ଆସିଲା, ଲଳିତା ଫେରିଲା ନାହିଁ ।

ଦେବୀ ଗଜବାହନରେ ବିଜେ କରିଥିଲେ । ଅଷ୍ଟମୀ ରାତିରୁ ଆରମ୍ଭ ହେଲା ବରଷା । ବରଷା ପବନ ଲାଗିରହିଲା ଦେବୀ ବିସର୍ଜନ ଯାଏ । ଆକାଶ ପରିଷ୍କାର ହେଲାଣି । ମେଘ ଫଉଜ କେଣେ ଲୁଚିଗଲେଣି । କାଁ ଭାଁ ହୋଇ କେବେ ଖଣ୍ଡେ ଅଧେ ବାଦଲ ମୁହଁ କାଢ଼ିଲେ, ପୁଣି ପଳାଇଯାଇ ଲୁଚିବାକୁ ବାଟ୍ ପାଉନାହିଁ । ଲଳିତା, ଜଲ୍‌ଦି ଫେରିବ ।

କେଡ଼େ ଖରାପ ଲାଗୁଛି ଏ ଘରଟା ! ସବୁ ଯେମିତି ଅଛି, ଏକା ଲଳିତା ନାହିଁ । ଦୁପହରଟା ଖେଙ୍କି ଉଠୁଛି । ଝରକା ସେପାଖରେ ଗଛଲତା ଜାଠଜାଠକା ଫୁଲ, ସମସ୍ତେ ବିରସ ହୋଇ ଚୁପ୍ ରହିଛନ୍ତି । ପଚାରି ଉଠୁଛନ୍ତି,

ତୁମର 'ନା' ନାହିଁ ? କାନରେ ବାଜିଯାଉଛି ଲଳିତାର ଗେହ୍ଲାଳିଆ ଡାକ, ଆଲୋ, 'ମା' !

କଟକ ଯିବାକୁ ସେ ମଙ୍ଗୁ ନ ଥିଲା । ସ୍ୱାମୀଙ୍କର ଆଗ୍ରହ ଯେ ସମସ୍ତେ ଯିବେ, ଦେଖା ପାଣିରେ ପଡ଼ିଲେ ସଙ୍ଗେ ସଙ୍ଗେ ଫେରିଆସିବେ ।

ବୋଉ ମଙ୍ଗିଲେ ନାହିଁ । କହିଲେ, ଆରେ ପୁଅ, ନନ୍ଦକା ବୁଢ଼ ନାଳ ଡେଇଁ ଯିବ ନାହିଁ । ବଳଦଗାଡ଼ି କ ସବାରୀ ଚଳିବ ନାହିଁ । ନନ୍ଦକା ଜାଣେ, ସ୍ୱାମୀ ପ୍ରତିବାଦ ନ କଲେ ମଧ୍ୟ ତାଙ୍କ ମନର ସପ୍ତଗ ଷ୍ଣଙ୍ଗିଲା ।

'ନା' ଯିବ, ଦଶରା ଦେଖି ଫେରିଆସିବ ।

ତୁ ନ ଗଲେ ମୁଁ ଏକା ଯିବି ନାହିଁ 'ମା' !

କେହି ତେବେ ନ ଯାଅ, ଅଭିମାନ କରି ସୁନନ୍ଦ କହିଲା ।

'ନା' ଯିବ, ନନ୍ଦକା ଦୃଢ଼ ସ୍ୱରରେ ତା'ର ନିଷ୍ପତ୍ତି ଜଣାଇଲା ।

ବାଧ୍ୟ ହୋଇ ସୁନନ୍ଦ ସଙ୍ଗରେ ସେ ଏକା କଟକ ଯାଇଥିଲା ।

ଲଳିତା ଚିଠି ଲେଖିଥିଲା, ତୁ ଆସିଥିଲେ କେଡ଼େ ମଜା ହୋଇଥାନ୍ତା 'ମା' ! ଏ ବର୍ଷ କୁଆଡ଼େ କଟକର ଦେବୀମେଢ଼ସବୁ ଖୁବ ଭଲ ହୋଇଛି । କେଉଁ ବଜାର ମୋର ନାମ ମନେ ପଡ଼ୁନି, ସେଠି ଯେଉଁ କୁମ୍ଭକର୍ଣ୍ଣ ମୂର୍ତ୍ତି ହୋଇଚ, ଆଖି ମିଟିମିଟି କରୁଛି, ଦେଖିଲେ ହସି ହସି ଗଡ଼ିଯିବୁ । ଚଉଧୁରୀ ବଜାରର ଦେବୀମୂର୍ତ୍ତି ଦେଖିଲେ ଆଖି ଲାଖିରହିବ । ସେ ମୂର୍ତ୍ତି ଦର୍ଶନ କଲାବେଳେ ତୋ ମୁହଁଟି ମୋ ମନେ ପଡ଼ିଲା ମ ! ବୋଉଙ୍କୁ ମୋର ପ୍ରଣାମ କହିବୁ । ତୁ ମୋର ସ୍ନେହ ନେବୁ । ଚିଠି ଦେବୁ ନାହିଁ କି ?

ନନ୍ଦକା ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲା ।

ଲଳିତାର ଚିଠିକୁ ସେ ଅମୂଲ୍ୟ ଧନ ପରି ପାଖରେ ରଖିଛି । କେତେଥର ନିଜେ ପଢ଼ିଲାଣି, ପଢ଼ି ଶୁଣେଇଲାଣି କନକୁ, ବୋଉଙ୍କୁ, ପୁଣି ସୁମିତ୍ରାକୁ । ମୋ 'ନା' ଚିଠି ଲେଖିଛି ! ପିଲା ମନ, ଦେଖୁ, ଖୁସି ହେଉ, ଟିକିଏ ଆନନ୍ଦ କରୁ । ଆସିବ ତ, ତା ପାଇଁ କେଉଁ କାମ ବନ୍ଦ ହୋଇଯାଉଛି କି ?

କୁଆଁର ପୁନେଇଁ ।

ଲଳିତା ନିଜେ ନ ଆସି ଚିଠି ଲେଖିଛି, ମୋ ଭାଇଭାଉଜ ଖବର ପାଇ ପିଲାପିଲି ନେଇ ଆସିଛନ୍ତି । ଦଶହରାଦିନ ପହଞ୍ଚିଲେ । ପୁନେଇଁ ବାସି ସେମାନେ ଫେରିଯିବେ । ମୁଁ କହି ଲଗେଇଛି ଯେ ମୋ 'ମା' ଗାଁରେ ଏକା ଅଛି, ମୁଁ ଆଉ ବେଶି ଦିନ ଏଠାରେ ରହିବ

ନାହିଁ, ପୁନେଇଁ ଗଲେ ମୁଁ ଫେରିବି । ତାଙ୍କର କୁଆଡ଼େ ବଡ଼େ କାମ । ନୂଆ ଜମି କିଣି, ନୂଆ ଘର କରୁଛନ୍ତି ଯେ, କହୁଛନ୍ତି, ତାଙ୍କର ଏବେ ବେଳ ନାହିଁ । କାମ ଲଗେଇଲାକୁ ସେ ମଙ୍ଗିଛନ୍ତି । କହିଲେ, ତମେ ଯାଅ, ପୁଣି ମୋର ଆଉକାର ଅବସ୍ଥା ହେବ । ପୁଝାରୀର ହାତତେଲାରେ ରହିବ । ଅଧେ ଦିନ ଖିଆ ତ ଅଧେ ଦିନ ଉପାସ । କହିଲି, ଆଜିଯାଏ ଯେମିତି ଚଳୁଥିଲ ସେମିତି ଚଳିବ, 'ଯା' ଏକା ଅଛୁ, ତା'ର ଅସୁବିଧା ହେଉଥିବ । ସେ କହିଲେ, ହଉ ।

'ଯା' ମ, କାଳିଚଳରେ ସେଉଁ ଲକ୍ଷ୍ମୀମୂର୍ତ୍ତି, ଆଖି ଲାଖିରହିଲା । ହଉକ ହେତେ ଟାଣୁଥାନ୍ତି ମୋ ହାତ ଧରି, ଆସିବାକୁ ମନ ହଉ ନ ଥାଏ । ଅନେଇ ରହୁଥାଏଁ । ଏତେ ସୁନ୍ଦର ! ମୋ 'ଯା'ର ସେମିତିକା ସୁନ୍ଦର ଝିଅଟିଏ ହେବ । ଅଗ ମୁଁ ତାକୁ କୋଳକୁ ନେବି । ମୋର କାଠଫଳ ପୁଅ ଲୋଡ଼ା ନାହିଁ, କହୁଛି ।

ଚିଠିଖଣ୍ଡି ନିଜେ ପଢ଼ି ନିଧିକା ଖୁସି ହେଲି ସିନା, ଶାଶୁଙ୍କ ଆଗରେ ସବୁ ସେ ପଢ଼ିପାରିଲି ନାହିଁ । ଭଲ ଚିଠିର ଖରାପ ଅର୍ଥ ସେ କାଢ଼ିବେ । କହିବେ, ଭଲ ଶୁଭ ଲଳିତା ମନାସିଛି, ପୁଅ ନ ହୋଇ ଝିଅ ହେବ ? ସ୍ୱାମୀ । ଯେ ଯଉରୁଣୀ ବାଦ ।

କାହିଁ, ଲଳିତା ଆସିଲା ନାହିଁ ତ !

ପୁନେଇଁ ଯିବାର ସାତ ଦିନ କଟିଲା । ଏଥର ଦଶହରା ଛୁଟିରେ ଆସିବ । ଚିଠି ଖଣ୍ଡେ ବି ଦେଇ ନାହିଁ । ଦେହ ଭଲ ଅଛି ତ ? ଜାଣିବାକୁ ମନ ଛଟପଟ ହେଉଛି । ତା ଗାଉଁଲି ଘରକୁ ତାଙ୍କର ଫେରିଲେ କି ନାହିଁ ? 'କା' ଫେରିଆସିଲେ ସ୍ୱାମୀ ପୁଣି ଅଧେ ଦିନ ଉପାସ, ଅଧେ ଦିନ ଅଧପେଟରେ ରହିବେ ? 'କା' ସେଠାରେ ଦିନାକେତେ ରହୁ । ଫେରିଆସିବାକୁ ସେ ଉଛୁନ୍ନ ହେଉଛି କାହିଁକି ?

ପୁଣି ଲଳିତା ଚିଠି ଲେଖିଛି, ଯେତେ ଜିଦ୍ କଲେ ବି ସେ ମୋ କଥା ଶୁଣୁନାହାନ୍ତି । କହୁଛନ୍ତି, ମୋତେ ନେଇ ଘରେ ଛାଡ଼ି ଆସିବାକୁ ତାଙ୍କର ବେଳ ନାହିଁ । ତୁଳସୀପୁରରେ ନୂଆ ଜମି କିଣିଛନ୍ତି ଯେ କୋଠା ତୋଳିବେ ବୋଲି ହମହମ । ଟଙ୍କା ଖୋଜି ବୁଲୁଛନ୍ତି । ତୁ, କି ବୋଉ ତାଙ୍କୁ ଚିଠି ଲେଖିଲେ ସେ ମତେ ଛାଡ଼ିଦେଇ ଆସିବେ, ନୋହିଲେ ମୋ କଥା ସେ ମାନିବେ ନାହିଁ । କହୁଛନ୍ତି, ଉପାସ ରହିବ କି ?

ଏଠି ମୋତେ କେତେ ସାଙ୍ଗ ମିଳିଗଲେଣି । ସେମାନେ ମଣିଛନ୍ତି ଯେ ମୁଁ ନିଧିକା । ମୁଁ କାହିଁକି ନାହିଁ କରିବି ? ତୁ ଯେଉଁ ଅତନୁବାବୁଙ୍କ କଥା କହୁଥିଲୁ, ତାଙ୍କର ସ୍ତ୍ରୀ ରୁନ୍ଧନା ବେଳେ ବେଳେ ଆସି ମୋର ସାଙ୍ଗ ହେଲେଣି । କେତେଥର ମତେ ନେଇ ତାଙ୍କର ସିନେମା ଛବି ଦେଖେଇଲେଣି । ତାଙ୍କର ପୁଅ ମଳୟ ଓ ଝିଅ ଛବିଲା କି ସୁନ୍ଦର

ହୋଇଛନ୍ତି ମା ! ମୋ 'ଭା'ଙ୍କ ସେମିତିକା ପୁଅଟିଏ, ଝିଅଟିଏ ହେଲେ ମୁଁ କେଡ଼େ ଖୁସି ହୁଅନ୍ତି !

ଭାଇ ଫେରିଗଲେଣି । ଭାଉଜ ଓ ତାଙ୍କର ପିଲାମାନେ ଅଛନ୍ତି । କଟକରେ ଯାଆଣି ଦେଖି ସେମାନେ ଫେରିଯିବେ । ଭାଉଜ ତତେ ବହୁତ କହୁଛନ୍ତି । ବୋଉଙ୍କୁ ସେ ପ୍ରମାଣ କରାଇଛନ୍ତି ।

ବୁଢ଼ୀ ଚଡିଖଣ୍ଡି ଶୁଣିଲେ । ଭବଚନ୍ଦ୍ର କହିଲେ, ଆସିବାକୁ ତ ଲେଖିଲେ ବି ସେ ଆସିବ ନାହିଁ ନେ ମା, ପୁଅ ଉପରକୁ ଦୋଷ ଟାଳିଦେଇ ସେ ଭଲେଇ ହେଉଚ । ହଉ, ଥାଉନା ।

ନାହିଁ ବୋଉ !

ଘରର ଅନ୍ଧାରକୁ ଦୋହଲାଇ ବୁଢ଼ୀ ହସିଉଠିଲେ ।

ମାଗୁଣା କାନ୍ଦି ଉଠିଲେ । ଆଖିରୁ ଲୁହତକ ପୋଛି କହିଲେ, କାହାର ଦୋଷ ମୁଁ ଦେବ ? ତମ ଭାଇ କଥା ମାନିଲେ ନାହିଁ । ତମେ କେମିତି ଜାଣିବ ? ଦିନରାତି ଯେଉଁ ଭଗବାନ୍ କରୁଛନ୍ତି, ସେଇ ଏକା ଜାଣନ୍ତି । ମୁଁ କାନ୍ଦିଲି, ବୁଝିଲି, ତମ ଭାଇଙ୍କର ଗୋଡ଼ ଧରି କହିଲି, ମୋ ଲଳିତା କାହାର ସଉତୁଣୀ ହେବ ନାହିଁ । ମୂଳିଆ ମୂରୁଖ ପିଲାଟିଏ ହେଉ ପଛେ, ଭଲ ପିଲା, ନଜନ୍ତାଳୀ ପିଲାଟାକୁ ବାହା କରେଇବା । ଶୋଷାଙ୍କ କଥା ଶୁଣି ତମ ଭାଇ ଭୁଲିଗଲେ ।

ଲଳିତା ଭାବିବାକୁ ଲାଗିଲା । ଭାଉଜ ଯାହା କହିଲେ ଅକ୍ଷରେ ଅକ୍ଷରେ ସତ । କି ଦୁର୍ଭାଗ୍ୟରେ ସେ ଥିଲା ସେ ଘରେ ? ଯାହାର ସ୍ୱାଧୀନତା ନାହିଁ, ସେ କି ମଣିଷ ? ତା'ର କଣ୍ଢେଇଜଣା ଜୀବନରେ କି ସୁଆଦ ?

ଶାଶୁଙ୍କ ଡର, ସଉତୁଣୀକୁ ଭୟ, ଗାଁ, ମାଇପେ ଗଲାଆଇଲାଙ୍କୁ ଦବ । ଗୃହର ଗୃହିଣୀଙ୍କ ପାଖରେ ବି କ୍ଷମା ମାଗିଲାପରି ଚଳନ । ଏଇ ତ ତାର ଜୀବନ । ହାତ ଧରି ଯିଏ ଘରକୁ ଆଣିଛନ୍ତି, ତାଙ୍କ ପାଖରେ ତ ଜାଣି ସେ ନଉନ । ମନଖୋଲା ସ୍ୱାଧୀନ ବଚନ ପ୍ରକାଶ କରିବାକୁ ସାହସ ନାହିଁ ।

ଦୂରରେ ଥାଇ ଶାଶୁଙ୍କର ଭଲଗୁଣ ମନେ ପକାଇଲେ ଲୁହରେ କୋହ ଉଠେ । ସେ ମଣିଛନ୍ତି ଯେ ଦୟାକରି ସେ ଲଳିତାକୁ ତାଙ୍କ ଘରେ ସ୍ଥାନ ଦେଇଛନ୍ତି । ଗରିବ ଘରର ଅନାଥ ଝିଅ ବୋଲି ବକଲ ପାଇ ସେ କଅଁଳେଇ କହୁଛନ୍ତି । ପୋଷା ବିଲେଇ, ପୋଷାକୁକୁରକୁ ସ୍ନେହ କଲାପରି ଶାଶୁ ତାକୁ ସ୍ନେହ କରୁଛନ୍ତି ।

ସ୍ୱାମୀ, ତାଙ୍କର ସବୁ ସ୍ନେହ ଓ ଆଦର ପଡ଼ିଆଛେ ଆଉ ଜଣକର ଜନ୍ମା ଶାସନର ଭଙ୍ଗିତ। ଗେଲ କରୁକରୁ ସେ ପୁଣି ଗେହ୍ଲେଇ କହନ୍ତି କାନରେ, ନନ୍ଦନା କେତେ ଭଲ ପାଆନ୍ତି ତମକୁ, କେବେ ତାଙ୍କର ଅବାଧ ହେବ ନାହିଁ। ଦେଖିବ ତ, ଝିଅକେ ଯେ ତମକୁ ସଜେଇ ସାଜେଇ ସହରରେ ପଶ୍ଚା କରି, ହାତ ଧରି ଆଣି ଛାଡ଼ିଦେଇଗଲେ! ସୁନାର ମନ ଭଗବାନ ତାଙ୍କୁ ଦେଇଛନ୍ତି, ଲଳିତା'

ନନ୍ଦନା ତାକୁ କଣ୍ଢେଇ ସଜେଇଲା ପରି ସଜାଏ। ସେ ନନ୍ଦନାର ଖେଳଣା! ଘର ନନ୍ଦନାର, ଧନଦରବ ସବୁସବୁର ସେ ଅଧିକାରିଣୀ। ସେ ତେ ଝିଅ'ର ଖେଳଣା, ଉଠାଇଲେ ଉଠିବ, ବସାଇଲେ ବସିବ।

ନନ୍ଦନା ଜନନୀ ହେବ। ତା' ଆଗରୁ ଶାଶୁଙ୍କର ଯନ୍ତ୍ରଣା ସେ ସହିପାରି ନାହିଁ। ପିଲାଟିଏ ହେଲେ ଅତ୍ୟାଚାରର ମାତ୍ରା ବଢ଼ିବ।

ମାଗୁଣା ଅନେଇଁ ରହିଛନ୍ତି!

ସଞ୍ଜ କେତେବେଳୁ ହେଲାଣି। ସୁନନ୍ଦ ଫେରି ନାହିଁ। କେତେବେଳୁ ଖୁଆଡ଼େ ଯାଇଛନ୍ତି। ସିନେମା ଛବି ଦେଖେଇ ନେବାକୁ କହିଥିଲେ। ଆଇଲେ ନାହିଁ।

କେତେ କାମ ତାଙ୍କର ସତେ! ଏତେ ପରିଶ୍ରମ ପରେ, ପୁଷ୍ଟାଶ୍ରି ହାତଟେକାରେ ଭୋଜନ? ଲଳିତା ନିଜକରେ ରନ୍ଧିଲେ ଭଲ ହେବ। ସୁନନ୍ଦ ମୁଠିଏ ଭଲକରି ଖାଇପିଇ ସୁସ୍ଥରେ ଶୋଇବେ। ନନ୍ଦନା କ'ଣ ରନ୍ଧେଇଦେବ? ସନ୍ଦେହରେ ସେ ବୁଝୁଥିବ ମନେ ମନେ।

ମାଗୁଣା ଏସବୁ ବିଷୟ ଆଖି ଛଳଛଳ କରି ଲଳିତାକୁ ବୁଝାଇଲେ, ପୁଣି କହିଲେ, କେତେ ବାଟରେ ନନ୍ଦନା ଚିଠିଗୁଡ଼ାଏ ଲେଖେ ମ, ତମେ ନ ଦେଖି ମୁଁ ଲୁଆଖାଇ ବଳେଇପଡ଼ୁ ହେଉଛି ଲେ 'ମା', ସୁଆଡ଼େ ଗୁହିଁଲେ ତୋ କୁଲୁକୁଲିଆ ମୁହଁ ମତେ ଦିଶୁଛି, କାନରେ ବାଜିଯାଉଛି ତୋର ଗୁଲୁଗୁଲିଆ କଥା! କୋଉଠି ମୋର ମନ ଲାଗୁନାହିଁ। ତମେ ଆଣି ସଙ୍ଗେ ସଙ୍ଗେ ମୋ ପାଖରେ ଛାଡ଼ିଦେଇ ଯିବାକୁ ମୁଁ ଲେଖନ୍ତି ଯେ, ପୁଣି ମନ ହେଉଛି, କାହିଁକି ଏତେ ସ୍ୱାର୍ଥପର ମୁଁ ହେବି? କଟକ ଯାଇଛୁ, ଟିକିଏ ଆନନ୍ଦ କର, ଫୂର୍ତ୍ତି କର। ମୋ ପାଖକୁ ଆଇଲେ କଣ ସବୁ ନୂଆକଥା ଶୁଣିବୁ ଗପିବୁ, ମନେ ରଖିଥା। ମଧୁର ସପନଟିଏ ମୁଁ ତିନି ଥର ଦେଖିଲିଣି, ତୁ ହସିହସିକା ମୋ ସପନ ଭିତରେ ମୁଣ୍ଡ ହଲେଇଦେଉ। ଝିଅ ଗୁହଁକରି ଭାଙ୍ଗିଯାଏ, ମୋ ମନ ଟଗ୍ରପ ହୁଏ ଲୋ 'ମା'!

ନନ୍ଦନା ପୁଣି ଲେଖିଛି, ଦଆନ୍ତି ଆଉଟି, ବୋଉ କହିଲେ, ଲଳିତାକୁ ଲେଖିଦେଅ ଉଆଁସ ଆଗରୁ ସେ ଚାଲିଆସୁ। ମୁଁ କହିଲି, ରହୁ ସେ କଟକରେ ଦିନାକେତେ, ତମ ପୁଅ ମୁଠିଏ ଭଲରେ ଖାଇବେ ତ! ସେ ରାଜି ହେଲେ, ପୁଣି କହିଲେ, ରହୁ, ହେଲେ ମୋର

ଗୋଟାଏ ଆଖି ଫୁଟିଗଲା ପରି ଲାଗୁଛି । ସତେ ଯେ 'ମା' କେଡ଼େ ଭଲ ଡକେ ସେ ପାଆନ୍ତି ।

ମା'ଗୁଣା କହିବାକୁ ଲାଗିଲେ, ଦେଖିଲୁ ଲଳିତା, ସେ ଆ ବୋଲି କହିପାରୁ ନାହିଁ କାହିଁକି ନା, ପରେ ସେ ପଚେରିବ । ସେ ଆଆ ବୋଲି ବି କହିପାରୁ ନାହିଁ କାହିଁକି ନା, ସପନ ଦେଖୁଛି ପରା, କାଲେ ସପନ ସତ ହୋଇଯିବ । ଷଠୀ ତମ କୋଳରେ ପୁଅ ଦକଟେ ଦେବେ ! ସେ ଆଉ ଏକାଙ୍ଗଚକ୍ରବର୍ତ୍ତୀ ହୋଇପାରିବ ନାହିଁ । ମୁହଁ ଟାଣ କରି ଗୁଡ଼ ଫୁଲେଇ କହିପାରିବ ନାହିଁ ଅପାଳକ ଘରକରେ ମୁଁ ଏକା ବଜ୍ରାଳି ହୁଁଟକ, ମୋର ପୁଅ ହୋଇନି ! ଶାଶୂ ଯେମିତି ତୁମକୁ ଦେଖିପାରନ୍ତି ତ, ତାହା ସଭିଙ୍କୁ ଜଣା ।

ଲଳିତାର ମୁହଁ ଶୁଖିଗଲା । ଶ୍ୱଶୁର, ଶାଶୁ ଯାହା କହୁଛନ୍ତି, ସତ । କଅଣ ସେ କରିବ ? ଏଣୁ ମାରିଲେ ବ୍ରହ୍ମହତ୍ୟା, ତେଣୁ ମାରିଲେ ଗୋହତ୍ୟା ।

ସ୍ୱାମୀଙ୍କୁ ସେ ଅଦ୍ୟାବଧି ଚିହ୍ନିପାରି ନାହିଁ । ଘରର ହାନିଲାଭ ଦୁଃଖସୁଖ ସେ ତାକୁ କହନ୍ତି ନାହିଁ । ଯେବେ ସେ ପାଖକୁ ଆସନ୍ତି, ତାଙ୍କର ଖାଲି ଦେହ ଓ ସାଜ ଉପରେ ଦୃଷ୍ଟି । ତାଙ୍କର ଆଖି, ଓଠ, ହାତ ଖାଲି କଥା କହେ । ଗା' ଦେହଟାକୁ ସେ ସ୍ନେହ କରନ୍ତି । କେମିତି ସେ ଦେହ ବିଭିନ୍ନ ଢଙ୍ଗରେ ସଜାହେବ, ସବଳ ପୁଷ୍ଟ ରହିବ ସେଇଥିରେ ତାଙ୍କର ମୁଖ୍ୟ ନଜର । ଦେହଟା ପାଖରେ ସେ ହୁଅନ୍ତି ଗୁଣୁଗୁଣିଆ ଭଅଁର ।

ମନକଥା ସେ ବୁଝନ୍ତି ନାହିଁ ।

ମୁହଁ ଶୁଖେଇ ବସିଛୁ କାହିଁକି ? ସୁନନ୍ଦ ତୁମକୁ ଅତି ସ୍ନେହ କରେ । କୋଉ ଦିଅର ତା ଭାଉଜକୁ ଏମିତି ଭଲପାଇବା ମୁଁ ଦେଖିନାହିଁ । ହାତରେ ପଇସିମାନ ଯତେଇ ସାଇତି, ବଳେଇ ବଳେଇ ଔଷଧ ପାଣି ଖୋଇବା କିଏ କରେ ?

ଲଳିତାର ମୁହଁ ନାଲି ହେଲା ।

ବେଳ ହେଣ୍ଡି ଦାଗ ଦେଖି ଧୀରେ ଧୀରେ ତମେ ସୁନନ୍ଦକୁ ଯାହା କହିବ ସେଇଆ ହେବ । ବୁଢ଼ା ହେଲେ ବି ତୁମ ଶ୍ୱଶୁର କ'ଣ ମୋ କଥାରୁ ବାହାର ହୁଅନ୍ତି ? ବେଳ ଜାଣି କହିପାରିଲେ ହେଲା । ଟିକିଏ ଅଭିମାନ ଧରି ଦେଇ ଧରି ନ ଦେବାର ଢଙ୍ଗ ଲୋଡ଼ା, ବୁଝିଲୁ ? ନାତିନାତୁଣୀ ଖେଳଉଛନ୍ତି ଯେଉଁ ବୁଢ଼ୀ ଘରଣୀମାନେ, ପଚାରୁନା ଯାଇ ତାଙ୍କୁ ? ଏଗୁଡ଼ା କ'ଣ ନୂଆକରେ ତମକୁ ମୁଁ ଶିଖାଇଥାନ୍ତି ?

ଲଳିତା ହସିଉଠିଲା ।

ନିସୁନ୍ଦ କଣ ? କିଏ କହୁଛି କି ତମେ ନାହାର ଉଣ୍ଣି କାଟିବାକୁ ସୁନନ୍ଦକୁ ଉପଦେଶ ଦିଅ, କି ପ୍ରବର୍ତ୍ତାଅ ? ଭବିଷ୍ୟତକୁ ଦୃଷ୍ଟି ଦେଇ ନିଜର ସ୍ୱାର୍ଥକୁ ନିଜେ ତ ଜଗିବହିବ ! ସଉରୁଣୀ ଧନ ସମ୍ପାର କରିବ ଏତକ ଭୁଲିଯାଅନା । ଆଜି ଭଲ ତ କାଲି ମନ୍ଦ । କେହି ତମକୁ କହୁନାହିଁ, ସଉରୁଣୀ ବୋଲି କିଛି ନ ବୁଝି ନ ବିଚାରି, ଚୂଣ୍ଟି ମାରିଧରି ହୋଇ ଦାଣ୍ଡକୁ ଆସ, ଲୋକହସା ହୁଅ । ମୁଁ ତମର ମଙ୍ଗଳ ପାଇଁ କହୁଛି; ସୁନନ୍ଦକୁ ଆପଣାର କରିପାରିଲେ ତମର ସବୁ ଭଲ । ତାକୁ ତମେ ହାତମୁଠାରେ ରଖ ।

ମୋ 'ସା' ଭଲ ମଣିଷ ତ ।

ମୁଁ ମନା କରୁ ନାହିଁ । ତମ ଭାଇ ତାଙ୍କୁ ଯେତେ ପ୍ରଶଂସା କରି କହୁଥିଲେ ମୁଁ ଶୁଣି କାବା ହେଲି । ଦେଖ ତ, ନିଜେ କେମିତି ଲଫାପା ଭିତରେ ମୁରେଇ ହଜାରେ ଟଙ୍କା ପଠେଇଦେଇଥିଲେ । ସେତକ ମିଳିବାରୁ ଆଜି ଆମର ଚୋପା ଚଳୁଛି କହ, ନୋହିଲେ ଆଜି ପିଲାଛୁଆଏ ଛତରଦେ ପଶିଥାଆନ୍ତେ । ସେମାନଙ୍କର ଜୀବନ—

ଭଉଜ !

ମାଗୁଣାଙ୍କର କଥା ଅଧା ରହିଲା ।

ନଳିନୀର ଅଖିକୁ ଲୁହ ଗଡ଼ିଲା । ସେ କହିଲା, ମୋତେ ଅଉ ଲାଜ ଦିଅ ନା ଭଉଜ ! ତମର ଗତି ପାଇ ମୁଁ ଦଣ୍ଡବତ ନାଉଛି । ଅଣ୍ଟାରେ ଖୋସି ଚୁଆଖାଇ ବଳେଇ ପଣ ଏପାଏ ମେଘାଖ ହୋଇଛି । କିଛି ମୁଁ କରିପାରନାହିଁ । 'ସା' ଉପରେ, ପୁଣି ମନ ନକୋଚଲେ, ସ୍ୱାଙ୍କ ଆଗରେ କିଛି କହିପାରନାହିଁ । 'ସା' ପାଖରେ ତୁଣ୍ଡ ଖୋଲିବା ଠାରୁ ବରଂ ମରଣ ଭଲ ! ଲୁହା ବାକ୍ସର ଚାବିର କୋଛ ମୁଁ ବୋହୁଛି, ଲୁହା ବାକ୍ସରେ ଥିବା ଥାକ ଥାକ ନୋଟକୁ ମୁଁ ଚାହିଁଛି, ଖରଚ କରିବାକୁ ମୋର ମନ ଡାକନାହିଁ । ଚାବିଖେଣ୍ଡି ମୋ ଅଣ୍ଟାରୁ ଖସିପଡ଼ିଥିଲା । 'ସା' ତାକୁ ପାଇ, ପଚାରି, ମତେ ନ କହି ଟଙ୍କା ପଠେଇଥିଲା ।

ମାଗୁଣା କହିଲେ, ମୁଁ ଟଙ୍କା ପଠେଇବାକୁ ଲେଖି ନ ଥିଲି । ତୁମ ପୁଅଝିଅ-ମାନଙ୍କର ଭଲମନ୍ଦ ଖବର ଜାଣିବାକୁ ତମେ ଚାହିଁଲରୁ ମୁଁ ସତ କଥା ଲେଖିଥିଲି । ଟଙ୍କା ଫେରିଗଲା ଦେଇଥିଲେ ନନ୍ଦନାର ମନରେ ଦୁଃଖହୋଇଥାନ୍ତା । ଆମର ତ ନଅଣ୍ଟିଆ ସଂସାର ! ଏତକ ମୁଁ ଜାଣିପାରିଲି ଯେ ତମର କାହିଁରେ ଅଧିକାର ନାହିଁ । ସଉରୁଣୀ ଯେତେ ଭଲ, ଯେତେ ସ୍ନେହୀ ହେଲେ ବି ତମେ ତାର ହାତଟେକାରେ ଅଛ । ସେତିକ ବୁଝି ମୋ ମନରେ ଦୁଃଖ ହେଲା । ତେବେ ସବୁଦିନେ ସବୁ କଥା ନ ଥାଏ ।

ସତେ, ନୋ ଭଉଜ !

ସେଥିପାଇଁ କହୁଛି, ଲଳିତା, ସୁନନ୍ଦକୁ ନଜର କର, ହାତରେ ନଜର କରି ପାଞ୍ଚ ପଚାଶ ରଖ, ତମେ ସୁଖରେ ସଂସାର କରିବ । ଠାକୁରେ ତମ କୋଳରେ ପିଲାଟିଏ ଦେଲେ ସବୁ ଦୁଃଖ ଯିବ । କେଉଁ କଥା ଅଚଳ ହେଉଛି ବୋଲି ଗାଆଁର ସୁନାପିଞ୍ଜୁରା ଭିତରେ ଯାଇଁ ପଶିବ ଗୋ ? ତମର ହର୍ତ୍ତା କର୍ତ୍ତା ବିଧାତା ଯେ ଏଇଠି ! ତମେ ଯିବ, ସୁନନ୍ଦ ଭୁଲ୍ ଫଙ୍କାର ଘର ବୁଲି ବୁଲି ରାତି ଅଧରେ ଆସି କଞ୍ଚା, ଦରସିଝା ଭାତରେ ଦେଇ ଶୋଇବ ? କାହିଁକି ସେ ଏତେ ପରିଶ୍ରମ କରୁଛି, ଟଙ୍କା ଅର୍ଜୁଛି ?

ଲଳିତାର ମନରେ ଶ୍ୱଶୁରଙ୍କର ସଦୁପଦେଶ ଭେଦିଲା ।

ଦିଆଲି ବାସି ମାଗୁଣି ଆଖିରୁ ଲୁହ ଗଡ଼ାଇ, ବଦାବଦ ହୋଇ, ଶମ୍ଭୁଧରଙ୍କ ସଙ୍ଗରେ ଗାଆଁକୁ ଗଲେ । ଲଳିତା ପାଖରେ ଛାଡ଼ିଦେଇଗଲେ ତାଙ୍କର ଏଗାର ବର୍ଷର ପୁଅ ରବିକୁ । ନଣନ୍ଦ କଟକ ସହରରେ ଏକା ରହିବ, ଏହା ତାଙ୍କର ଦେହ ସହିଲା ନାହିଁ ।

ପିଲାଟି ଧନ୍ୟ ଲଳିତା ରବିକୁ ସ୍ନେହ କରେ ।

ମାଗୁଣି ଯେଉଁ ସଦୁପଦେଶ ଦେଇଥିଲେ ତାର ମୂଲ୍ୟ କିଏ ନିରୂପଣ କରିବ ? ଲଳିତା ଶ୍ୱଶୁରଙ୍କର ବାକ୍ସ ଭିତରେ ଯେଉଁ କାଗଜ ପୁଡ଼ାଟି ରଖିଦେଇଥିଲା, ସେତକ ଖୋଲି ମାଗୁଣି ବୁଝିପାରିଲେ ଯେ ତାଙ୍କର ପ୍ରତି ପଦ କଥାର ଯଥେଷ୍ଟ ମୂଲ୍ୟ ଅଛି । ନବୀନା ସହରୁଣୀ, ପରକୁ ପର, ସେ ଯେବେ ହଜାରେ ଦେଲା, ଆପଣାର ହୋଇ ଲଳିତା ନିଜକୁ ଶ୍ରେଷ୍ଠ କଲା ନାହିଁ; କିନ୍ତୁ ଅଧିକା କହିବାକୁ ବି ତାର ଅଧିକାର ଏବଯାଏ ହୋଇନାହିଁ ।

ହଉ, ମୂର୍ଖକେ ଆଉ ଲଳିତାଟି, ମାଗୁଣି ମନେ ମନେ ଆଶୀର୍ବାଦ କଲେ ।

ସେତେ କହିଲେ ସେ କାନକୁ ନେଉନାହାନ୍ତି ମୋ 'ମା', କହୁଛନ୍ତି, ଗାଆଁରେ ନେଇ ଛାଡ଼ିଦେଇ ଆସିବାକୁ ବେଳ ନାହିଁ । ନୂଆ ଘରର କହିପଡୁଛି ଯେ, ସବୁବେଳେ ଯାଇ ସେଇଠି । ଟଙ୍କା ଗୁଡ଼ାଏ ଭୁଆଡ଼େ କରେଇ କଲେଣି । ତୁ ଜିଗର କରି ଲେଖିଲେ ସେ ମୋତେ ନେଇ ତୋ ପାଖରେ ଛାଡ଼ିଦେଇ ଆସିବେ ।

କଟକରେ ଦିଆଲି ଯାତ୍ରା କେଡ଼େ ଆଡ଼ମ୍ବରରେ ହୁଏ ଲୋ, କି ସୁନ୍ଦର ଆଲୁଅରେ ସଜାସଜି ! କେତେ କାଠିଆ ବାଣ ' ଧୁଆଁ ଧୁଆଁ ଘଡ଼ିକେ କଳାଧୂମର ଅନ୍ଧାର ଭୁଆଡ଼େ ଲୁଚି ପଳେଇଲା ପରି ଲାଗେ । ଆକାଶ ହୁଏ ହାଲୋଳମୟ । କେତେ ଜାଗାରେ

କାଳୀଠାକୁରାଣୀଙ୍କର ପ୍ରତିମା । ନୂଆ କରି ଗଢ଼ିଦେଲେ ସେସବୁ ଭୟଙ୍କର ଦୃଶ୍ୟ ଦେଖି ଛାତି ଚମକିଉଠେ । ଆଖିସହା ହେଲେ ଦେଖିବାକୁ କୌତୁକ ଲାଗେ ।

ରୁ ଆସିଥିଲେ ଭଲ ହୋଇଥାନ୍ତା ମ । ମତେ ସେ ହଇରାଣ କରୁଛନ୍ତି । ନାଚନାଚନା ନୁହଁ ବୋଲୁ, ନାଚନାଚନ! ଫେସନ ହୋଇ ଏଠି ସେମାନେ ଆତନାତ ହୁଅନ୍ତି, ଏଇ ସବୁ ଯାତରେ । ମତେ ସେମିତି ସେ ଫେସନ ହେବାକୁ ବାଧ୍ୟକରୁଛନ୍ତି । ନାହିଁକଲେ ଅଭିମାନ କରୁଛନ୍ତି । ଫେସନ ହେଲେ କ'ଣ ରକ୍ଷା ? ଫଟୋ ଉଠାଇବାକୁ ତାଙ୍କର କେଉଁ ସାଙ୍ଗକୁ ଡାକଯାଉଛନ୍ତି । ମନା କରିପାରୁନାହିଁ । ସେ ଏତିକ ବେହିଆ ଲେ ! ଏମିତି ବେହିଆ ହେବାକୁ ରୁ ତାଙ୍କୁ ମନାକରି ଲେଖିବୁ । ମତେ କହିବାକୁ କ ବାଧା ଦେବାକୁ ଡର ମାଡ଼ୁଛି । ସେ ମନକଷ୍ଟ କରିବେ ।

କହୁଛନ୍ତି, ନଡ଼ିଓଷା ଆସୁଛି । ଧବଳେଶ୍ୱରରେ ଯାତ ଦେଖିବ, ସେଇଠୁ ଦେଖିବ ମହାନଦୀକୂଳର ବାଲିଯାତ୍ରା । ଏମିତି କେଉଁଠି ଲାଗିଥିବ ? ଭଲେ ଓ ବୋହୂଙ୍କୁ ଦେଖିବାକୁ ମୋ ମନ ବ୍ୟାକୁଳ ହେଉଛି । ନଇଲେ, ରୁ ଗାଡ଼ି ସଜାଡ଼ି କରି ପଠା । ତାଙ୍କ କଥା ମାନିବ ନାହିଁ । ମୁଁ ଗୁଲିଯିବି । ମତେ ଏଠି ଏକା ରହିବାକୁ ଭଲ ଲାଗୁନାହିଁ ।

ଯେତେ ଥର ନନ୍ଦନା ସେ ଚିଠିଖଣ୍ଡି ପଢ଼ୁଛି, ସେତେ ଥର ତା ଆଖିକୁ ଲୋତକ ଆସୁଛି, ତାର ଛାତି ଧଡ଼ପଡ଼ ହେଉଛି । ତାର 'ମା' ଅତି ସରଳ, ନିଷ୍ପାପ, ନିଷ୍କପଟ । ତାଙ୍କୁ କଟକରୁ ଆଣି ପାଖରେ ଛାଡ଼ିଦେଇ ଯିବାକୁ କେମିତି ସୁନନ୍ଦକୁ ସେ ଲେଖିବ ? ନାହିଁକି ତାଙ୍କର ଆନନ୍ଦରେ ସେ ବାଧାଦେବ ? ସେ ମଣିବେ, ନନ୍ଦନା ସ୍ୱାର୍ଥପର । ଭାଲେ ପୁଣି ଭାବିବେ, ଲଳିତାର ସୁଖ-ଆନନ୍ଦ ସ୍ୱାଧୀନତା ନନ୍ଦନା ସହିପାରୁ ନାହିଁ । ଲଳିତା ପାଇଁ ଘରେ କଅଣ ଏମିତି ଅଚଳ ହୋଇପଡ଼ୁଛି କି ?

ନନ୍ଦନା ପାଖରୁ ତାଙ୍କର ମନ ଦୂରେଇଯାଇଛି, ପାଖେଇଯାଇଛି ଲଳିତା ପାଖକୁ । ସେଇ ହେଉଛି ତାଙ୍କ ସ୍ନେହର ପିତୁଳା, ସବୁ ସୁଆଗ ସରାଗର ଖେଳନା । ମନେ ପଡ଼ୁନାହିଁ ନନ୍ଦନା, ଯିଏ ପେଟରେ ତାଙ୍କର ସନ୍ତାନ ଧରିଛି, ଯିଏ କେବଳ ଗୋଟିଏ ସନ୍ତାନ ପାଇଁ ଲଳିତାକୁ ଆଣି ପାଖରେ ଛାଡ଼ିଛି । ଦେଖିବାକୁ ଧାଇଁଆସିବା ଦୂରର କଥା, ଦୁଇଖଣ୍ଡି ପତ୍ର ଦେଲେ ବି ଉତ୍ତର ନାହିଁ ।

ରାତି ଅଧିକ ହେଲାଣି । ଆଖି ବୁଜି ଶୋଇଲେ ମନରେ ପଶୁଛି ବାରବାଙ୍କୁଲିଆ ଭାବନା । ଆଖି ଖୋଲିଲେ ଝରକାବାଟେ ଦିଶୁଛି ନେଳିଆ ଆକାଶରୁ ଚେନାଏ । ଗଣି ହେଉନାହିଁ ମିଟିମିଟି ତାରକା, ଖସି ହୋଇ ପଡ଼ୁଥିବା ଚଢ଼ନଆଁ ଜଣିକା ପରିକା ।

ଫେଣାଇବ ନାହିଁକି, ନନା ?

ଉଟମ ଶୋଇନା !

ନା, ମାଡ଼ୁ ନାହିଁ । ସେ ମନେ ପଡ଼ୁଛନ୍ତି । ଲଳିତା କଟକରୁ ଆସିବାକୁ ଚଳେ ହୋଇ, ଘଣ ଜନ୍ମ ପକାଇ ଚିଠି ଲେଖିଛି । ତାକୁ ଆଣି ଛାଡ଼ିଦେଇ ଯିବାକୁ ତମ ଭାଇଙ୍କର ବେଳ ନାହିଁ । ଚିଠି ଖଣ୍ଡେ ଲେଖିବାକୁ ବି ତାଙ୍କ ତର ହେଉ ନାହିଁ କି !

ସୁମିତ୍ରା କଣ କହୁଥିଲେ, ଶୁଣିଛ ?

ମୁଁ ଶୁଣେ ନାହିଁ ।

କହୁଥିଲେ, ଭାଇ କୁଆଡ଼େ ଆଉ ବେପାର ବଣିଜରେ ମନ ଦେଉନାହାନ୍ତି । ସବୁବେଳେ ଘରେ ପଶିଛନ୍ତି । ପଡ଼ାକୁ ବାହାରିଲେ ଖାଲି ଟଙ୍କା ବରବାଦ । ଜାତି ଜାତିକା ଦାମିକା ଶାଢ଼ୀ ଓ ଗହଣା କିଣା ଚାଲିଛି । ସଞ୍ଜ ହେଲେ ଥିଏଟର ସିନେମା ଦେଖିବାକୁ ଯାଉଛନ୍ତି । ଫେରୁଫେରୁ ରାତି ଅଧ ହେଉଛି । କୁଆଡ଼େ ଗଲେ ସାନ ଭାଉଜଙ୍କୁ ସଙ୍ଗରେ ନେଇଯାଉଛନ୍ତି ।

ରାଜୀବ କହୁଥିଲେ ?

ହଁ, ବେପାର ଟଙ୍କାରୁ ରାଜୀବଙ୍କ ପାଖରୁ ଭାଇ ହଜାର ହଜାର ମାଗି ନେଉଛନ୍ତି । କାରବାର ବନ୍ଦ ହେବାକୁ ବସିଛି । କଅଣ ଏତେ ଟଙ୍କା ହେଉଛି କେଜାଣି ।

ଘରତୋଲା ହେଉଛି ।

ନହିଁ ଖୋଲା ହୋଇଛି ।

ରାଜୀବଙ୍କ ହାତରେ ଚିଠି ଦେଇ ଦୁଇହଜାର ଟଙ୍କା ତମ ଭାଇ ମୋ ପାଖରୁ ଘରତୋଲା ପାଇଁ ମଗେଇ ନେଲେ ପରା !

ସାନ ଭାଉଜଙ୍କ ଫେସନ ପାଇଁ କି, ହାତପାଣି ପାଇଁ ନେଇଥିବେ ।

କି କଥା କହୁଛ, ନନା ?

ଉତ୍ତେଜିତ ହୋଇ ଉଠି ବସିଲା ନନ୍ଦିକା ! ପର ସ୍ତ୍ରୀ ନାମରେ ନିନ୍ଦା ରଟାଇବାକୁ ଲୋକଙ୍କୁ କେତେ ଭଲଲାଗେ ସତେ ! ଲଳିତା ନିଜର ହାତପାଣି କରିବ କି ବ୍ୟାକୁଳ ? ସବୁ ତ ତା ହାତରେ ସେ ସମର୍ପି ଦେଇଥିଲ । ନନ୍ଦିକା ଉପରେ ତାର ଅବିଶ୍ୱାସ ହେବ କାହିଁକି ?

ଭାଇ ସୁମିତ୍ରାକୁ ଡାକିବ ନନା !

ତମକୁ କହିବାକୁ ସେ ମନା କରିଥିଲେ ।

କାହିଁକି ?

ଆଉ କାହାକୁ ନ ଛାଡ଼ିବାକୁ ରାଜାଦ ତାଙ୍କୁ ବାରଣ କରିଥିଲେ । ଶୁଣିଲଣି, ଯାନ ଷଉଳ କୁଆଡ଼େ ଆଉ କାହାରିକୁ ଆଉ ଉଡ଼ୁଆଲ ହେଉନାହାନ୍ତି ।

ତୁମ ହ, ଶୋଇବ ଯା ।

ନାୟିକା ନକେ ଶୋଇ କଡ଼ ବୁଲାଇଲା । ମନ କହିଲା, ତାର ସ୍ୱାମୀ ଦୂରେଇ ଯାଉଛନ୍ତି !

ବୁଢ଼ଆର ମଦଗୁଡ଼ା ଏଇଆ କି, କେବଳ ଯୌବନ ଓ ରୂପକୁ ଗୋଳିଗାଳି ପିଇଦେବାକୁ ଉଚ୍ଛନ୍ନ ହୋଇପଡ଼ନ୍ତି, ସଦାବେଳେ, ଆଖିକାନରେ, ମନ, ଜୀବନ ଓ ସପନରେ ? ସ୍ୱାମିହା ବେହିଆପଣ କରି ଏଇଆ ଗପେ । ଛଅ ପିଲାର ସେ ମା ହୋଇ-ଯାଇଲଣି । ସେ କଙ୍କଡ଼ା ଖୋଳ ହେଲଣି, ତେବେ ବି କୁଆଡ଼େ ରାଜାବଙ୍କର ଶୋକାଳିଆ ଖୋଇ ଯାଇ ନାହିଁ । ବାପ ହେବାକୁ ତାଙ୍କ ମନ ଆହୁରି କନକନ ।

ନାୟିକା ବଡ଼ ପାଟି କରି ହସି ଉଠିଲା ।

ଟଳେ ସପ ପାରି କନ୍ଧ ଶୋଇଥିଲା । ପଚାରିଲା, କ'ଣ ଭାଉଜ ?

ତମ କଥା ଶୁଣି ହସ ମାଡ଼ିଲା । ମୋ 'କା' କୁଆଡ଼େ ବେହିଆ ହୋଇଛୁ, ନିର୍ଲଜ୍ଜ ହୋଇଛୁ । ଯଦି ହେଇଥିବ, କାହା ପାଇଁ ତମ ଭାଇ ତାକୁ ଯେମିତି ନଚଉଥିବେ ସେ ସେମିତି ନାଚୁଥିବ । ସେ ମନା କରିପାରିବ ନାହିଁ । ତା'ର କି ଦୋଷ ? ତମ ଭାଇଙ୍କ ଖୋଇ ମରେ ନା । ନଳନାର ଗୋଡ଼ ଖୋଳ ଡାଣରେ ହାଟରେ ଦୁର୍ନାମ ରଟାଉଛନ୍ତି ବୋଲି ସ୍ୱାମିହାକୁ କଏ କହୁଥାଏ ? ମୋ ପାଖକୁ କାଲି ତାକୁ ଡାକିଦେବ, ମୁଁ ତାକୁ ପଚାରିବି, ସେ କେମିତିକା ମାଇପି, ଆଉ ତା ବର ରାଜାବ କେମିତିକା ମିଣିପ !

କମା ରୂନ ହୋଇ ଶୋଇଲା । ଭାଉଜ କେବେ ରାଗନ୍ତି ନାହିଁ । ଆଜି କେମିତି ରାଗିଲେ ? ନୂଆ ଭାଇନାଙ୍କର ଢଙ୍ଗ ସହିପାରୁନାହାନ୍ତି ? ଘରଜୁଆଁ କାନ ଗୋଡ଼ାଇ ଲୁଚେଇ ରଖିବାକୁ ଚାହାନ୍ତି ?

ମନ ବୁଝିବାକୁ ଲଳିତା କହିଲା, କଅଣ ଯେମାନେ ପଛରେ କହୁଥିବେ କହିଲ ? ଦଶରା ଦେଖାଇବାକୁ ମନେ ତମେ କଟକ ଆଣିଲ, ଦେଖୁ ଦେଖୁ ମାସ ପୂରିଲା । ସବୁ ଦୋଷ ମୋର ହେବ । ତମର ବୋଉ ରଜ୍ଜୁବଉଳ ହେବଉଥିବେ । 'ସା' ମୁହଁରେ କିଛି ନ କହିଲେ ବି ମନରେ ଭାବୁଥିବ । ତମ ଗାଆଁରେ ସବୁ କହିବଣି ।

ଲଳିତା ମୁହଁ ଶୁଖାଇ ଠିଆ ହେଲା ।

ସୁନନ୍ଦ ହସହସ ହୋଇ ଅନାଇଁରହିଲା ତାଅରି ଆଡ଼କୁ । ରାତି ଦଶଟା ହେଲାଣି । ଘର ଭିତରେ ନେଳିଆ ବିଜୁଳି ଆଲୁଅ । ଛାତ ଉପରୁ ଓହ୍ଲାଇ ଆସିଥିବା ବିଜୁଳି ପଙ୍ଖା ଧୀରେ ଧୀରେ ଯୋଡ଼ିପଲଙ୍କର ମଥା ଉପରେ ବୁଲୁଛି । ରେଡ଼ିଓରୁ ଉଠୁଛି କେବଳ ହସର ଖେଳ, ମହାପାତ୍ର ଗୋଦାବରୀଶଙ୍କର ହସେଇଲା ଡ୍ରାମା "ଚାମଗି ଜାଇ ।"

ବାହାରେ ଝରକା ଯେପାଖେ, ମିରିଜିଆ ଜହ୍ନ । ଅଳୁଅର ଜୁଆର । ବାସନା ଫୁଲର ଗଛ ନାହିଁ । ଘର ଭିତରେ ମଶାରି ବାଡ଼ରୁ ଝୁଲୁ ନାହିଁ କେଣ୍ଡି କେଣ୍ଡିକା ଫୁଲର ମାଳ, ତଥାପି ଘର ମହକ ଉଠୁଛି । କ'ଣ ସେ ମହକ କହ ହେବ ନାହିଁ । ମିଠା, ମନଭୁଲା, ରକତରେ ଝଟିକାଛୁଟା ଫଗୁଣୀ ମହକ ' ଲଳିତାର ଝିଲମିଲ ବାଦଲିଆ ବସନରୁ ତ ଛୁଟିଆସୁଛି !

ଏଇ ତାର ସ୍ନେହର ପିତୁଳା ଲଳିତା, ଆଗରେ ଠିଆ । ଆଜି ତା'ର ଲଙ୍ଗୁଳିଆ ବେଶ । କାମନାକୁ କାଙ୍ଗାଳିଆ କରୁଛି, ମନ ଓଟାରୁଛି । ରୂପ ତାର ଥାଉ କି ନ ଥାଉ, ଏଇ ବେଶ ସୁନନ୍ଦର ମନକୁ ବନସୀରେ ଟାଣେ, ଖାଲେଇରେ ରଖେ ।

ବାଘ ପିଲା ରକ୍ତ ଶୁଙ୍ଘି ଗନ୍ଧ ପାଲଟେ ।

ଲଳିତାକୁ ସେ ସବୁ ପ୍ରକାରେ ବେଶ କରିଛି । ସେ କେବେ ବାଧା ଦେଇ ନାହିଁ, କଥା ମାନିଛି । ଫଟୋବେଳେ ବନ୍ଧୁଙ୍କ ଆଗରେ ନିଃସଙ୍କୋଚରେ ଠିଆ ହୋଇଛି ।

ଆନନ୍ଦରେ, ଫୁର୍ତ୍ତିରେ ଲଳିତା କଟକରେ ଅଛି । ମାସଟିଏ ପୁରିଗଲାଣି, ଘଡ଼ିଟିଏ ପରି ଲାଗୁନାହିଁ । ସୁନନ୍ଦର ଏକୁଟିଆ କର୍ମବହୁଳ ଜୀବନର ସେ ଆନନ୍ଦ ଓ ପ୍ରେରଣା ।

ସେ ଫେରିଯିବ ଗାଆଁକୁ ?

ପୁଣି, ତାର ଜୀବନରେ ଘୋଟିଆସିବ ଅନ୍ଧାର ! ଏଠାକାର ସୁଖ ଆନନ୍ଦ ଓ ଗହଳଚହଳ ସଂସାର ଶୂନ୍ୟ ହେବ ? ମରୁଭୂମିର ଝଞ୍ଜା ଛୁଟିବ ? କାହିଁକି ଜାଣିଜାଣି ସେ ଏହା କରିବ ? ନଦଳା ପତ୍ର ଲେଖିଛି, ବୋଉ ଖୋଜୁଛନ୍ତି, ଘର ଦୁଆର କରି କଟକରେ କେତେଦିନ ଆଉ ରହିବ ?

ସବୁଦିନେ ଲଳିତା ସେ ଘରେ ନ ଥିଲା । ଆଜି ଏତେ ଖୋଜା ପଡ଼ୁଛି କାହିଁକି ?

ତୁମ୍ଭେ ହେଇ କଅଣ ଏମିତି ଦେଖୁଛ ମ ?

ଗାଆଁକୁ ଫେରିଯିବାକୁ ତମର ମନ ହେଲାଣି ?

ମୋର ଗୋଟାଏ ମନ କଅଣ ? ତମେ ଯାହା ସ୍ଥିର କରିବ, ସେଇଆ ହେବ ।

ମୁଁ ସ୍ଥିର କରିଛି, ତମେ କଟକରେ ରହିବ ।

ସେମାନେ ମୋର ଦୋଷ ଦେବେ ।

କିଏ ଦୋଷ ଦେବ, କି ଗୁଣ ବାହାରିବ, ଏଥିପାଇଁ ଆମର ସୁବିଧା ଅସୁବିଧା ଆମେ ବୁଝିବା ନାହିଁ ? ବୋଉ କଟକ ଆସିବାକୁ ରାଜି ନୁହନ୍ତି । ତାଙ୍କୁ ଗାଆଁରେ ଏକା ଛାଡ଼ି ନନ୍ଦିକା ଆସି କଟକରେ ରହିପାରିବ ନାହିଁ । ତମେ ଏଠି ଦିନାକେତେ ରହିଲେ ସେମାନେ ଯଦି ଆପତ୍ତି କରିବେ, ମୁଁ ଏକା କଟକରେ ରହି ସବୁ ଅସୁବିଧା ମୁଣ୍ଡେଇବ କାହିଁକି ? ଯଦି ଆସିବେ ସମସ୍ତେ କଟକ ଚାଲିଆସନ୍ତୁ; ନୋହିଲେ ତମେ ଏଠି ରହିବ । ନନ୍ଦିକା ଅାସିଲେ ତମେ ବୋଉ ପାଖକୁ ଚାଲିଯିବ । ନନ୍ଦିକାକୁ ତମେ ଏଇଆ ଲେଖିଦିଅ ।

ମୁଁ ଲେଖିପାରିବ ନାହିଁ ।

ମୁଁ ଲେଖିଦେବି ।

ତମେ ନିଜେ ଯାଇ ତମ ବୋଉଙ୍କୁ ବୁଝାଇ କହ । ବିନା ଦୋଷରେ ନୋହିଲେ ସେ ମୋ'ର ଦୋଷ ଦେବେ, ସପ୍ତପୁରୁଷ ଉଦ୍ଧାରିବେ । ଦାଣ୍ଡଲୋକେ ଟାହିଟ ପରି କରିବେ । ମୁଁ ଆଉ ସହିପାରିବ ନାହିଁ, କହୁଛି ।

ଲଳିତାର ଆଖିରୁ ଲୁହଧାର ଝରିଆସିଲା ।

ସୁନନ୍ଦ ପଲଙ୍କଉପରୁ ଉଠି ବସିଲା ଆଖିରେ ଲଳିତାର ହାତ ଧରିଲା । କହିଲା, କେହି ତମର ଦୋଷ ଦେବେ ନାହିଁ । ସ୍ୱାମୀ ପାଖରେ ସ୍ତ୍ରୀ ରହିବ, ସେଥିରେ ଦୋଷଗୁଣ, କି ଅଭାବ ଅଭିଯୋଗର ପ୍ରଶ୍ନ ଉଠିବ ନାହିଁ । ବୋଉ ମୋର ଅବୁଝ ନୁହେଁ ।

ଲଳିତା ହସିଉଠିଲା । ମନ କହିଲା, ନାତିଟିଏ କୋଳରେ ଝୁଲାଇବାର ସ୍ୱପ୍ନ ସେ କେତେ ଦେଖୁଛନ୍ତି । ସେଇଥିପାଇଁ ନନ୍ଦିକା ହୋଇଛନ୍ତି ତାଙ୍କର ଘରର ଦୁଲୁଦୁଲ । ଲଳିତା ତାଙ୍କ ଦେହର କୋଟାଏ ଅନାବଶ୍ୟକ ଆବୁ ପରି; ଟାଣିଓଟାରି ଛିଣ୍ଡାଇ ଫୋପାଡ଼ିଦେବାର ଉପାୟ ନାହିଁ । ସହି ହେଉ ନାହିଁ, ଅଡୁଆ ଲାଗିଲେ ବି ଦେହରେ ରହିବ ।

ନନ୍ଦିକାର ଗୁରୁ କର୍ମ ହିଁ ଉଠିଲା ।

ସ୍ୱାମୀ କ'ଣ ପାଗଳ ହେଲେ ? କିଏ ଏ ବୁଦ୍ଧି ତାଙ୍କୁ ଦେଲା ? ବୁଢ଼ୀ ମାଆର ମନରେ ଦୁଃଖ ଦେଇ କଥା କହିବାକୁ କପଣ ତାଙ୍କର ସାହସ ହେଲା ?

ଶାଶୁଙ୍କର ମଳିନ ମୁହଁରେ ମଉଳା ହସ ଝଟକିଲା ।

କେଶ କେଶ ହୋଇ ମଥାର ପାଚିଲା କେଶ କପାଳ ଉପରେ ଓ କାନ ପାଖରେ ଓହଳିପଡ଼ିଛି । ହାଡ଼ୁଆ ମୁହଁ ଖଣ୍ଡହୋଇଛି । କୋରଡ଼ିଆ ପେଞ୍ଚୁଆ ଆଖିର ଦୃଷ୍ଟି ଅନେଇ ରହିଛି ଦୁନିଆର ଆର ପାରିକି । ଭୁଲିଗଲା ପରି ଘଟିଲା ଘଟଣାର ଘଟକୁ କଟମଟ କରି ଚାହିଁ ରହିଛି ସେ ସ୍ଥିର ଦୃଷ୍ଟି । ଶୁଖିଲା ଓଠରେ ହସ ।

ହସ ବିଦ୍ରୂପ କରୁଛି ଦୁନିଆର ସଭିଙ୍କୁ, ହୁଏତ ନିଜର ଜୀବନ ଓ କର୍ମକୁ । କହୁଛି ଯେପରି କି, ଏଇ ଲମ୍ବିଲା ଅତୀତରେ ଜୀବନରେ ଯେବେ ଯାହା ସେ କରିଛନ୍ତି, ସେ ସବୁ ଭୁଲ୍ ହୋଇଯାଇଛି । ଆଗକୁ ଅଛି ଅଳପ ବାଟ । ଭାବିଥିଲେ, ଦିନର ଆଲୁଅରେ ତାଙ୍କର ଗତି । ସନ୍ଧ୍ୟା ପାଖେଇ ଆସୁଛି । ଆକାଶରେ ତପନ ନାହିଁ । ଫିକା ଆଲୁଅ । ଗୋଧୂଳି । ସନ୍ଧ୍ୟା ହେବ । ରାତିର ଅନ୍ଧାର ମାଡ଼ିଆସିବ । ନିଦୁଆ ରାତି । ବସ୍ତ୍ରର ଆବେଷ୍ଟନରେ ଅବଶ ଅଙ୍ଗ ଘୁମାଇପଡ଼ିବ ଚିରଦିନ ପାଇଁ ।

କିନ୍ତୁ ଦିନର ଧାରଣା ଗୋଟାଏ ଭ୍ରମ ! ରାତିରେ ସେ ବାଟ ଚାଲିଛନ୍ତି, ଅନ୍ଧାରରେ ଅଣ୍ଡାଳି ହୋଇ । ଝୁଣ୍ଟି, ପଡ଼ି, ଉଠି ଆଗେଇଛନ୍ତି । ଯାହା ଘଟିଛି, ତାର ଅର୍ଥ ସେ ଓଲଟା ବୁଝିଛନ୍ତି । ଯାହା ପାଇଛନ୍ତି, ଯାହାକୁ ସେ ସାଇତି ରଖିଛନ୍ତି ରାତିର ଅନ୍ଧାରରେ, ସବୁ ସେ ମଣିଛନ୍ତି ହୀରା ନୀଳା ମୋତି ମାଣିକ୍ୟ !

ରାତି ସରିଆସିଲାଣି । ଗୋଧୂଳିର ଆଲୁଅ ଭ୍ରମ ଭାଙ୍ଗିଛି । ଆସୁଛି ପାହାନ୍ତି ଆଲୁଅ । ସାଇତା ଚିଜର ରୂପ ବଦଳିଛି । ଧନ ରତ୍ନ ନୁହେଁ, ମାଟିଗୋଡ଼ି ସେ ସାଇତି ରଖିଥିଲେ । ରାତି ପାହିବ । ଦେହର ବନ୍ଧନ ଫୋପାଡ଼ି ସକାଳର ନିଜ ସତେଜ ଆଲୁଅରେ ତାଙ୍କର ମୁକ୍ତ ଆତ୍ମା ପଥ ଧରିବ ।

ଆଉ କାହିଁକି ?

ଅଭୟା ହସିଲା ମୁହଁରେ କହିଲେ, ସତ କହିଲୁ ରେ ବାପ, ଲଳିତାକୁ ଶାସନ କରିବା ମୋର ଭୁଲ ହୋଇଛି । ତୋ'ର ଦୋଷ ନାହିଁ, ନନ୍ଦିକାର ବି ଦୋଷ ନାହିଁ । ନନ୍ଦିକାର ପେଟରେ ମୋର ଯେଉଁ ନାତିଟି ବଢ଼ୁଛି, ତାକୁ କୋଳରେ ଧରିବାର ଆଶା ମୋତେ ପାଗଳ କରିଥିଲା । ଦୋଷ ମୋ'ର ଆଉ କାହାର ନୁହେ । ଲଳିତା ଅଭିମାନ କରିଛି, ମୋ ପାଖକୁ ସେ ଆସିବ ନାହିଁ । ନ ଆସୁ, ମୋର ଦୁର୍ଭାଗ୍ୟ ।

ବିଚଳିତ ହୋଇ ସୁନନ୍ଦ କହିଲା, ନାଇଁ ବୋଉ, ସେ ଆସିବ ନାହିଁ ବୋଲି ତ କେବେ କହି ନାହିଁ, ବରଂ ସେ ଆସିବାକୁ ଉଛୁନ୍ନ । ନୂଆ କୋଠାର କାମ ଆଗେଇ ଚାଲିଛି । ମୋତେ ବେଳ ମିଳୁନାହିଁ । ଲଳିତା ଆସିଲେ ମୋର ଖିଆପିଆରେ ଅସୁବିଧା ହେବ ! ନନ୍ଦିକା ଯଦି କଟକ ଯାଆନ୍ତେ, ଲଳିତା ତୋ ପାଖରେ ରହନ୍ତା ।

ମୋ ପାଖରେ କାହାର ରହିବା ଦରକାର ନାହିଁ ରେ ବାପ, କିଛି ଗଣ୍ଡାଏ ଫୁଟାଇଦେଲେ ଚଳିବ । ସବୁଦିନେ ତ ଏକା ଥିଲି । ନନ୍ଦିକା ଏବେ ଆସିଲା, ଅଖି

ପିଅଡ଼ା ପରି ଲାଗୁଛି, ଆଠ ନଅଟା ବର୍ଷ । ତୁ ତାକୁ ସଙ୍ଗରେ ନେଇ ଯା । ଯଦ୍ଦେଁ ସେଠି ତୋ ପାଖରେ ଜନାକେତେ ରହନ୍ତୁ । ତାର ଘରୁ ନେବାକୁ ଏଠି କେହୁ ନାହିଁ ।

ଯଦ୍ଦେ ତମେ କଟକ ଗଲ, ବୋଉ !

ମୁଁ ଯିବ ନାହିଁରେ ବାପ, ବେଳ ହୋଇଆସିଲା । ଆଖି ବୁଜିବା ଯାଏ ତୋର ଏ ଘର ସମ୍ପତ୍ତି ଜଗିରହିବ । ଅନେଇ ରହିଥିବ ସେଇ ବରଗଛ ତଳ ମଶାଣି ଆଡ଼କୁ, ଯେଉଁଠି ତୋର ବାପର ଦେହକୁ ସେମାନେ ପୋଡ଼ି ପାଉଁଶ କରିଥିଲେ । ନନ୍ଦକାକୁ ତୁ କଟକ ନେଇ ଯା । ଲଳିତାକୁ ସେ ଝୁରୁଛି, ସପନ ଦେଖୁଛି ।

ନନ୍ଦକା—

ଶାଶୁଙ୍କର ଡାକ କାନରେ ବାଜିଲା । ସବୁ ସେ ଶୁଣିଛି । ଦୁଇ ପ୍ରହର । ଦିନର ଉଜ୍ଜ୍ୱଳ ଆଲୁଅ ପରି ସବୁ ତାର ସ୍ୱନନା ଆଗରେ ଜଳଜଳ ହୋଇ ଦିଶିଯାଉଛି । ଲଳିତା ହୋଇଛି ତାଙ୍କର ଆପଣାର, ଅନ୍ୟ ସମସ୍ତେ ପର ।

ବୁଦ୍ଧି ବଦେଳ ହୋଇଛି ତାଙ୍କର ? ଘରେ ଗୋଡ଼ ଦେବା ସଙ୍ଗେ ସଙ୍ଗେ ଲଳିତାର କଥା ନେଇ ମାଆଙ୍କୁ ଶାସନ କରିବାକୁ ସେ ସାହସ କଲେ ? ମାଆଙ୍କ ମନର ଦାରୁଣ ଦୁଃଖ ତାଙ୍କର ଅଭିମାନିଆ କଥାରୁ ହିଁ ପ୍ରକାଶ ପାଉଛି ।

ନନ୍ଦକା—

ଘର ଭିତରକୁ ପଶିବାକୁ ତାର ସାହସ ହେଲା ନାହିଁ । ମାଆ ପୁଅଙ୍କର ମାନ ଅଭିମାନ ମଝିରେ ସେ ଠିଆ ହେବାକୁ ଚାହେଁ ନାହିଁ । ଶାଶୁଙ୍କର ଅବାଧ୍ୟ ସେ କେବେ ହୋଇ ନ ଥିଲା, ଆଜି ସେ ଅବାଧ୍ୟ ହେବ । ତାର ଅବାଧ୍ୟତା ହିଁ ସେମାନଙ୍କ ପ୍ରଶ୍ନର ଉତ୍ତର ଦେବ,—ବୃଦ୍ଧୀ, ଅପାରଗ, ରୋଗଣା, ହତାଶ ଓ ଅଭିମାନିନୀ ଶାଶୁଙ୍କୁ ଛାଡ଼ି ସେ ଘରୁ ଗୋଡ଼ କାଢ଼ି ଅନ୍ୟ କୁଆଡ଼େ ଯିବ ନାହିଁ ।

ଝରଣା ଆଖିରେ ନନ୍ଦକା ନିଜ କୋଠରୀକୁ ଚାଲିଆସିଲା । କଇଁ କଇଁ ହୋଇ କାନ୍ଦିଉଠିଲା । ଆହା, ନିଜ କର୍ମର ପରଭବ ଶାଶୁ ପାଇଛନ୍ତି । ଅନୁତାପ ତୀବ୍ର ହୋଇଛି । ତାଙ୍କ ଆଖିକି ସଂସାର ଶୂନ୍ୟ ଦିଶୁଛି । ପେଟରୁ ଜନମିଛି ଯେଉଁ ପୁଅ, ସେ ବି ତାଙ୍କର ନୁହନ୍ତି । ଦୂରେଇ ଯାଉଛନ୍ତି ।

ସମସ୍ତେ ଦୂରେଇଗଲେ ବି ନନ୍ଦକା ତାଙ୍କୁ ଛାଡ଼ି ଯିବନାହିଁ ।

ଦିନେ ସେ ଭାବିଥିଲା, ଲଳିତାକୁ ଆଣି ସ୍ୱାମୀଙ୍କ ପାଖରେ ସମର୍ପି ଦେଇଛି । ଅବୋଧ ନନ୍ଦକା ଆଜି ଅନୁଭବ କଲା ତାର ଧାରଣା ଭୁଲ । ପ୍ରକୃତରେ ତା'ର ସ୍ୱାମୀଙ୍କୁ ସେ ଲଳିତା ପାଖରେ ହିଁ ସମର୍ପି ଦେଇଛି !

ପେଟ ଭିତରେ ପିଲା ଲେଉଟିଲା ।

ନନ୍ଦିକା ଆଖିରୁ ଲୁହ ପୋଛିଲା ।

ହେଉଛି, ସେ ଆସୁଛନ୍ତି । ମୁହଁରେ ବିଷାଦର ଛାୟା । ନା, ସେ ଆଉ ଦୁଃଖ କରିବ ନାହିଁ, କାନ୍ଦିବ ନାହିଁ, ହସିବ, କେବଳ ହସିବ, ସମସ୍ତଙ୍କୁ ହସାଇବ । ଅନୁତାପ, ଅବିଶ୍ୱାସ, ସନ୍ଦେହ ଓ ଅଶାନ୍ତିର ମେଘ ଫାଳକୁ ହସ ଓ ଆନନ୍ଦର ତୋଫାନରେ ସେ ଉଡ଼ାଇଦେବ ।

ନନ୍ଦିକା ସୁନନ୍ଦର ଶୁଖିଲା ମୁହଁକୁ ଚାହିଁଲା । ପଚାରିଲା ଆଗ୍ରହରେ, 'କା' ମୋର ଚିଠି ଦେଇନାହିଁ ? ଭଲ ଅଛି ତ ?

ସୁନନ୍ଦ କହିଲା, ସେ ଭଲ ଅଛି । ତମେ ଚିଠି ଲେଖିନ ବୋଲି ଅଭିମାନ କରିଛି, ସେଇଥିପାଇଁ ହେ ଚିଠି ଦେଇନାହିଁ ।

ସୁନନ୍ଦର କାମିଜ ବୋତାମ ଖୋଲୁ ଖୋଲୁ ନନ୍ଦିକା କହିଲା, ଅଭିମାନ କରିଛି ? କଟକ ଯାଇ ସେ ବାଦ ଶିଖିଲାଣି । ତାକୁ ଆଣି ମୋ ପାଖରେ ଛାଡ଼ି ଦେଇଯାଅ ।

ସୁନନ୍ଦ ଚୁପ୍ ରହିଲା ।

ସୁନନ୍ଦର ବର୍ଷେ ବନ ଘରେ କଟିଗଲାଣି ।

ସ୍ୱାମୀଙ୍କର ପ୍ରକୃତିରେ ପରିବର୍ତ୍ତନ ସେ ଉପଲବ୍ଧ କରିପାରୁଛି । ସଦାବେଳେ ହସହସ ପ୍ରଫୁଲ୍ଲ ଯେଉଁ ଲୋକଟି, କଥା କଥାକରେ ଯାହାର ଓଠରେ ହସ ଓ ଭାଷାରେ ସରସ ରସିକତାର ଆଭାସ ସେ ପାଏ, ସେ ଅନ୍ୟମନସ୍କ ଓ ଗମ୍ଭୀର ହୋଇଛନ୍ତି । ଘରେ ମୁହୂର୍ତ୍ତେ ବସି ରହିବାକୁ ସେ ଭଲ ପାଆନ୍ତି ନାହିଁ, ବନକୁ ଚାରିଥର ସେ ଗାଆଁକୁ ବୁଲି ବାହାରନ୍ତି, ସେ କେବଳ ବସି ରହୁଛନ୍ତି । କଦବା କପରି ବଗିଚାକୁ ଯାଇ ଏ ଗଛ ମୂଳ, ସେ ଗଛ ମୂଳ ହୋଇ ସତେ ବା ପଥ ଗଣୁଛନ୍ତି । ବେଶି କଥାବାର୍ତ୍ତା କରିବାକୁ ଆଗ୍ରହ ଦେଖାଉ ନାହାନ୍ତି ।

ଦୂରେଇଗଲେ ଝିଏ ପାଖେଇ ଆସନ୍ତି, ସଚେତଭରା ଆଖିରେ ହାତ ବର୍ଷେ ଲମ୍ବାଇ ଗେଲ କରିବାକୁ ଅରକୁଅର ହୁଏ ଉଛନ୍ନ ଯାହାଙ୍କର ଓଠ ଦ'ଫାଳ ପାଟକୁ ଯାଇ ଟେନ୍ଥେଇ ହେଲେ ବି ନନ୍ଦିକା ତାଙ୍କ ମନରେ ସଚେତ ଜଗାଇପାରୁ ନାହିଁ । ହସିବାକୁ ହେବ ବୋଲି ସେ ହସୁଛନ୍ତି । ଗେଲ ନ କଲେ କାଳେ ନନ୍ଦିକା କ'ଣ ମନେକରିବ, ସେଥିପାଇଁ ଗୋଟିଏ ବୋକ । ସେଥିରେ ଉଷ୍ଣତା ନାହିଁ, ସେଥିରେ ଜୀବନ ନାହିଁ ।

କଏ ବଦଳିଛି ?

ଦର୍ପଣରେ ନିଜକୁ ସେ ନିରେଖିଲା । ନିଜ ତା'ର କାର୍ଯ୍ୟ ନିଠେଇ ନିଠେଇ କରୁଛି । କେଉଁଠି ତ୍ରୁଟି ରଖିନାହିଁ । କେଶବିନ୍ୟାସ, ମଥାର ସିନ୍ଦୂର, ଆଖିର କଜଳ, ପାଦର ଅଳତା, କେଶର କୁସୁମ, ସବୁଥିରେ ସେ ପୁଞ୍ଜି କରି ରଖିଛି ତାର ମନ, ମମତା ଓ କାମନା । ମହମହ ମହକ ଉଠୁଛି ସୁବାସ । ବାଛି ବାଛି ନିଜେ ସେ ଦେହର ଅଳଙ୍କାର ମଣ୍ଡିଛି,—ସୁନନ୍ଦ ନିଜେ ଯାହା ଭଲପାଏ । ମୂଲ୍ୟବାନ୍ ବ୍ଲାଉଜ ଓ ଶାଢ଼ୀ ଭଲ ଭଳିକା; ତଥାପି—

ଲଳିତା ସଙ୍ଗେ ସେ ସମସର ହୋଇପାରିବ ନାହିଁ ?

ଅନାୟାସ ସ୍ୱର ନାହିଁ ନାହିଁ କହି ଉଠିଲା । ନନ୍ଦିକାଠାରୁ ସେ ସାତ ଆଠ ବର୍ଷ ସାନ । ଛନଛନ ମନଟା ତା'ର ନବ ସଉଦନ । ମିଶିପେ କଅଣ ଏଇଥିରେ ବନ୍ଧା ପଡ଼ନ୍ତି । ପେଟର ପିଲା ପେଟ ପାଣ୍ଡେ ନାହିଁ ?

ସେ କେବେ ଲଳିତାଠାରୁ ଶ୍ରେଷ୍ଠ ହୋଇପାରିବ ନାହିଁ । ଲଳିତା ପରି ବେହିଆ ବି ହୋଇପାରିବ ନାହିଁ । ଇସ୍, ସେ ଯେଉଁ ଫଟୋଗୁଡ଼ାକ ' କପଶ ମେ ଫଟୋଗ୍ରାଫର ଆଗରେ ଲାଜ ସରମ ଛାଡ଼ି ଠିଆ ହେଲା ? ଅଧଉଲଗ୍ନୀ ବେଶ । କେମିତି ସେ ମଙ୍ଗିଲେ ? ଆଗ୍ରହରେ ପୁଣି ସେଗୁଡ଼ିକ ନନ୍ଦିକାକୁ ଦେବାକୁ ଆଣିଛନ୍ତି, ନିର୍ଲଜ !

ନନ୍ଦିକା ଦେଖିଲା, ହସିଲା । ଲୁଚେଇ ରଖିଲା ତା'ର 'କା' ର ଫଟୋ ' ଆଉ ଥରେ ଖୋଲି ଦେବାକୁ ନିଜକୁ ଲାଜ ମାଡ଼ିଲା । ପତ୍ନୀର ରୂପ ଓ ଯୌବନର ଶୋଭା ସମ୍ଭାର ତା'ର ପତି ପାଇଁ ସିନା, ଦୁନିଆର ଆଖି ଟାଣିବାପାଇଁ ନୁହେଁ, ଦୁନିଆ ଲୋକଙ୍କର ମନରେ କାମନା ଜଗାଇବାପାଇଁ ନୁହେଁ ତ !

କହିପକାଇଲା ନନ୍ଦିକା, କେମିତି ଏପରି ବେଶରେ ପର ପୁରୁଷଟା ଆଗରେ ସେ ଠିଆ ହେଲା ?

ଆରେ, ସେ ପୁରୁଷ ନୁହେଁ, ସତର ଅଠର ବର୍ଷର ପିଲାଟିଏ, ଫଟୋ ଉଠାଏ ।

ପିଲାଟିଏ ? ଆମର ଧ୍ୟାନ ଯାଇ ପରି ତେବେ ?

ସୁନନ୍ଦ ହସି ହସି ମୁଣ୍ଡ ହଲାଇ ସ୍ୱୀକୃତି ଜଣାଇଲା ।

ଏତିକ କଥାରେ ମନ ତାଙ୍କର ଦୁଃଖ ହୋଇଛି ? ଭଲ କଥା ପଦେ ସେ କହିଲା, ସେଥିପାଇଁ ଅଭିମାନ କି ରାଗ କରିଛନ୍ତି ?

ନନ୍ଦିକାର ଆଖିରୁ ଲୋତକ ଗଡ଼ିଲା ।

କନ ଘରେ ପଶିଲା । ନନ୍ଦିକାକୁ ଦେଖି ସେ ଚମକିଉଠିଲା ।

ପଗୁଳୀ, କାନ୍ଦୁଛ ?

ଆଖିରୁ ଲୁହ ପୋଛି ନନ୍ଦିକା କହିଲା, ଖାଲି ହସିବ ବୋଲି ପଣ ଜଣିଥିଲି କନ, ଟାଣପଣ ମୋର ଭାଙ୍ଗିଲା । ଫୁଁଇ ଫୁଁଇ ଆଖିରୁ ଅବାଧ ଲୁହ ଗଡ଼ିପଡ଼ିଲା । ଯାଉ, ଘରଯାଉ । ତମ ଭାଇ ଗଲେ କୁଆଡ଼େ ? ଦିନ ଗୋଟାଏ ହେଲା, କେତେବେଳେ ଆଉ ଖାଇବେ ?

ପଦନା ପଲେଇ ମହାଜନ ସଙ୍ଗେ ଦାଣ୍ଡଘରେ କଥାଭାଷା ହେଉଛନ୍ତି । କଟକର ନୂଆ କୋଠା ତୋଳିବାପାଇଁ ଟଙ୍କା ଦରକାର । ଶୁଣ ନୂଆବୋଉ, ଗଡ଼ର ମଝି ସୁନାଥାଳି ଜମିରୁ ପାଞ୍ଚ ମାଣ ବନ୍ଧକ କରି ପଦନା ପଲେଇଠୁଁ ଦଶ ହଜାର ଟଙ୍କା ସେ ନେବେ ।

ଏଁ—'?

ହଁ, ଗୋ ।

ଚୁପ୍ ହ । ବୋଉଙ୍କ କାନରେ ପଡ଼ିଲେ ତାଙ୍କ ପ୍ରାଣ ଛାଡ଼ିଯିବ । ସୁନାଥାଳି ଜମି ସେ ବନ୍ଧକିବେ ?

ଭାଇଙ୍କ ଦୋଷ ମୁଁ ଦେଉ ନାହିଁ । ଏ ସବୁ ଯାନ ଭାଉଜଙ୍କ ବୁଦ୍ଧି । ତାଙ୍କର ନଜର ବୁଦ୍ଧି କୁଆଡ଼େ ଗଲାଣି । ତମେ କଟକ ଯାଅ ଭାଉଜ, ମୁଁ ସବାସି ଗଉଡ଼ ସଜାଳି କରିଦେଉଛି । ତମ ଶାଶୁଙ୍କ ପାଇଁ ଚନ୍ତା କର ନାହିଁ । ମୁଁ ତାଙ୍କର ଯନ୍ତ୍ର ନେବି, ସେବା କରିବି । ମୋ ସାନକୁହା ମାନ, ନୋହିଲେ ନେଡ଼ିଗୁଡ଼ି କହୁଣୀକି ବୋହିଯିବ ।

ନନ୍ଦିକା ଖଟ ଉପରେ ବସିଲା । କନର କଥା ଶୁଣି ଅଧା ବାଉଳି ପରି ହସି ହସି ଲୋଟିପଡ଼ିଲା ପଲଙ୍କ ଉପରେ ।

କନ ବାବା ହୋଇ ଗୁହିଁରହିଲା । କାହିଁକି ଏ ହସ ? କି ଦୁଃଖ, କି ହତାଶ ତୋଫାନ ଉଠାଇଛି ତାଙ୍କ ମନରେ ?

ହସ ଥମିଲା । ନନ୍ଦିକା ଗମ୍ଭୀର ହୋଇ ଉଠିଲା । କହିଲା, କନ, ନେଡ଼ିଗୁଡ଼ି କହୁଣୀକୁ ବୋହିସାରିଛି । ମୋର ବୟସରୁ ଦଶବର୍ଷ କମାଇପାରିବ ? ଦଶବର୍ଷ ତଳର ଛଳଛଳ ରୂପଯୌବନ ଗୋଳି ମୋ ଦେହରେ ବୋଳିପାରିବ ?

ଏ କି କଥା କହୁଛ ?

କଟକ ଗଲେ ବି ତମ ଭାଇଙ୍କର ପ୍ରେମର କଣିକାଟିଏ ଆଉ ମୁଁ ପାଇବି ନାହିଁ । ସେଥିପାଇଁ ତାଙ୍କର ଦୋଷ ମୁଁ ଦେଉ ନାହିଁ । ଲଲିତାର ଦୋଷ ବି ନାହିଁ ।

ଦୋଷ ସେଇ ବୁଢ଼ୀଟାର ' ତାଙ୍କୁ ମରଣ ହେଉ ନାହିଁ— ।

କି କଥା ତୁଣ୍ଡରେ ଧରୁଛ କନ ?

ନନ୍ଦକାର ଆଖିରୁ ପୁଣି ଲୁହ ଝରିଲା । କହିଲା, ବନ୍ଧୁଆଉଣୁ ସେ, ଯେଉଁଥିପାଇଁ ଆମର ଏ ସରଳ ସୁଖର ସଂସାର, ଜଟିଳ ଓ ମୁଖର ହୋଇଛି, ତାଙ୍କର କଲ୍ୟାଣରୁ ଯେତକ ସଫଳ ହେଉ, କନ, ତାଙ୍କର ମନକାମନା ପୂରଣ ହେଉ । ତମ ଭାଇଙ୍କର ସୁଆଗ ଆଉ ମୋର ଲୋଡ଼ା ନାହିଁ । ତାଙ୍କର ସବୁ ପ୍ରେମ ସେ ସଞ୍ଚି ରଖିଛନ୍ତି ମୋ'ର ଭିତରେ । ବୁଢ଼ୀଙ୍କର କଲ୍ୟାଣରୁ ତାଙ୍କ ପୁଅର ସବୁ ପ୍ରେମ, ଆଦର, ଅଭିଳାଷ ରୂପ ପାଇ ଦୁନିଆକୁ ଆସୁ । ଆଶାସ୍ୱୀ ଶାଶୁ ମୋର ଆଖି ପୂରାଇ ଥରେ ଦେଖନ୍ତୁ, ସେଇଠୁ ପଛେ ଆଖି ବୁଜନ୍ତୁ । କନ, ଶାଶୁ ବୁଢ଼ୀ ମୋ'ର ବଞ୍ଚି ରହନ୍ତୁ ଲୋ, ଯେତେ ଦେବ ଦେବୀ ଯେଉଁଠି ଅଛନ୍ତି, ସଭିଙ୍କ ପାଖରେ ସେଇ ଗୁହାରି ତମେ କର । ତମର ବିକଳ ଗୁହାରି ସେମାନେ ଶୁଣିଛନ୍ତି, ତମ ଭାଇଙ୍କୁ ପଠାଇଛନ୍ତି ମୋ'ର ଭିତରେ । ପୁଣି ସେମାନେ ତମ ଗୁହାରି ଶୁଣିବେ । ତମ ତପସ୍ୟାର ଫଳ ଜୀବନ ଧରି ପଦାକୁ ଆସିବ । ଟିକି ସୁନନ୍ଦକୁ କୋଳରେ ଧରି ବଡ଼ ସୁନନ୍ଦର କଷ୍ଟକଥା ସେ ପାସୋରିବେ । ସେଇଠୁ ପଛେ, ହସି ହସି ଆଖି ବୁଜିବେ ।

ତମ କଥା ମାନିବ ଭାଉଜ । ତାଙ୍କ ପାଇଁ ଗୁହାରି କରିବ, ମନପ୍ରାଣ ଦେଇ ଗୁହାରି କରିବ । ତାଙ୍କର ସେବା କରିବି, ଯତ୍ନ ନେବି, କିନ୍ତୁ ତମେ ମୋ'ର କଥା ମାନ, କଟକ ଯାଅ ।

ସବୁ ଗୁହାରି, ସବୁ ସେବା ତମର ବ୍ୟର୍ଥ ହେବ କନ, ଶାଶୁ ତ କଟକ ଯିବେ ନାହିଁ, ମୋର ଅନୁପସ୍ଥିତି ସେ ସହିପାରିବେ ନାହିଁ । ମୋର ଭିତରେ ସେ ତାଙ୍କର ପୌତ୍ରଜୀବନର କାମନାର ସପନ ଦେଖୁଛନ୍ତି । ମୁଁ ଚାଲିଗଲେ ତାଙ୍କର ସପନ ଭାଙ୍ଗିବ, ମନ ବି ଭାଙ୍ଗିବ । ସେ ବଞ୍ଚିପାରିବେ ନାହିଁ । ମୋ କଥା ଟିକିଏ ବୁଝ । ତାଙ୍କର ଆନନ୍ଦ ପାଇଁ ହସିହସିକା, ମନରେ କଳନା ନ ରଖି, ମୁଁ ମୋର ସର୍ବସ୍ୱ ଲଳିତା ହାତରେ ସମର୍ପିଦେଇଛି । ଆଉ କାହିଁକି କଟକ ଯିବ ?

ନନ୍ଦକାର ଆଖିରୁ ଦୁଇ ଧାର ଅଶ୍ରୁ ଗଡ଼ିଆସିଲା । କନ ଆସି ପାଖରେ ଠିଆହେଲା । ତା'ର ଦୁଇ ଆଖି ଛଳଛଳ ହେଲା । କହିଲା, ତମର ଏଇ କନ ବନ୍ଧୁଆଉଣୁ ଆଖିରୁ ଲୁହ ଝରାଅ ନା ଭାଉଜ, ମୋ'ର ଏତିକ ମାଗୁଣି ରଖ ।

ନନ୍ଦକା ବେକରୁ ହାର ଖୋଲିଲା ।

ଏ କଅଣ କରୁଛ ?

ଏ ସବୁ ଲୋଡ଼ା ନାହିଁ କନ, କାହିଁକି ପିନ୍ଧିବାକୁ କହିଲ ? କାହିଁକି ଗଭାରେ ଖୋସିଲ ଫୁଲ, ପାଦରେ ରଞ୍ଜିଲ ଅଳତା ? ବୟସ ଗଡ଼ିଗଲାଣି । ସାତ ବର୍ଷ, ନା ଦଶ ବର୍ଷ ତମେ କମାଇପାରିବ ନାହିଁ ।

ଅଭିମାନ କରିଛ ଭାଇଙ୍କ ଉପରେ ? ଲଳିତାକୁ ଧରି ସେ ତମକୁ ଗେଲ କଲେ ନାହିଁ, ଆଦର କଲେ ନାହିଁ ? ଏଇଥିପାଇଁ ? ଭାଉଜ ଗୋ, ତମକୁ ମୁଁ କଅଣ

ସଜାଇଦିଏ କେବଳ ତାଙ୍କରି ପାଇଁ ? ନାହିଁ, ନାହିଁ ଗୋ, ତମକୁ ମୁଁ ଏଇ ରୂପରେ ଦେଖିଲେ ମୋ ଆଖି ପବିତ୍ର ହୁଏ । ଦୁନିଆରେ ଯିଏ ଦେଖେ ସେ ପ୍ରଶଂସା କରେ । ମୋ କାନରେ ପଡ଼ିଲେ କାନ ପବିତ୍ର ହୁଏ । ମୋ ଜୀବନର ସବୁ ଦୁଃଖ ପାଣି ଫାଟିଯାଏ ଗୋ ଭଉଜ ' ବାପଘରେ ଖେଳୁଥିଲି ନର୍ଜ୍ଜାଳୀ ମାନ ଝିଅ ସଣ ମୁଁ ନିଜକୁ ମଣେ । ଧାଇଁଯାଏ କେଉଁ ଦେବତା ପାଖରେ ଗୁହାରି କରିବାକୁ ।

ଜନର ଆଖିରୁ ଲୁହ ଝରିଲା । କହି କହି ହୋଇ ମାଗୁଣି କଲା, ମୋ ହାର ଉଜାଗରନା, ମୋ ଆଖି ଫୁଟାଇ ଦିଅନା ଭଉଜ !

ଜନକୁ ନନ୍ଦକା ଲୁହିଁରହିଲା । ସେ ଜୀବନରେ କେବେ କିଛୁ ମାଗିନାହିଁ । ଏଇ ଅନୁରୋଧଟି ତା'ର ସେ ଅବଶ୍ୟ ରଖିବ । ସେ ଖୁସି ହେଉ ।

ନନ୍ଦକା ପୁଣି ବେକରେ ହାର ଝୁଲାଇଲା ।

ଜନ ଜାନ ପଣତରେ ନନ୍ଦକାର ମୁହଁରୁ ଲୁହ ପୋଛିଲା । କହିଲା, ତମର ଆଖିର ଲୁହ ମୋ ମନରେ ତରଳ ସେକ ତାଳେ ଗୋ ଭଉଜ ! କାହିଁକି ଏ କାନ୍ଦ ? ଭାଇ ମୋର ଆଦର କଲେ ନାହିଁ, ଗେଲ କଲେ ନାହିଁ ? ରହ । ସବୁ ଦେବାଦେବୀଙ୍କର ଆଗରେ ମୁଁ ଗୁହାରି କରିବି । ଏଥର ଆଉ ମାନସିକ କରିବି ନାହିଁ, ଏଥର ମୁଁ ରାଗିବି । ତମେ ଟିକିଏ ହସିବଟି ।

ନନ୍ଦକା ହସିଲା । କହିଲା, ମାଗିବି ଗୋଟିଏ ଚିଜ, ଦେବ ?

ଗୁର ଜୀବନଟା ତ ?

ନାହିଁ ମ, ଗେଲଟିଏ ।

ସତେ ଭଉଜ ? ଜରମାଖୀ ଜନଠୁ ମାଗୁଛ ଏଡ଼େ ବଡ଼ ଦରବ ? ଭଉଜ ମ, ମୋର ମନେଅଛି, ହେଉ ପାଇଲି ଦିନୁ ଭୁଲରେ ହେଲେ କାଳୀ କୋଡରି ଅବରଜିଆ ଅସନା ଜନକୁ କେହି ଗେଲ କରିନାହିଁ । ଜନ ବି କାହାରିକୁ କେବେ ଗେଲ କରିବାକୁ ସାହସ କରି ନାହିଁ । ଗେଲ କରିବା ଆଗ୍ରହର ଶିହରଗୁଡ଼ାକୁ ଲୁଚେଇ ଛପେଇ ରଖିଛି ମୋର ପାକୁଆ ପାଟିର ଓଠ ଭିତରେ । ଜୀବନରୁ ବଳି ଅମୂଲ୍ୟ ଦରବ ମୋର ସେଇଟିକ । ଯାହା ପାଇଁ ସଞ୍ଚ ରଖିଛି, ଯାହାକୁ ଆଗ ଦେବ ବୋଲି ମାନସିକ କରିଛି, ତାକୁ ଆଗ ନ ଦେଲେ ମୋର ସେ ଭଣ୍ଡାର ଝଣ୍ଡିଆ ହେବ ଗୋ ଭଉଜ, ଏଇ ଚିଜଟି ଛଡ଼ା ଆଉ ଯାହା ମୋର ଅଛି, ମାଗିଲେ ମୁଁ ମନା କରିବି ନାହିଁ ।

କାହା ପାଇଁ ସାଇତି ରଖିଛ ?

ନନ୍ଦିକାର ଚିବୁକ ଧରି, ମୁହଁ ଟେକି, ମୁଣ୍ଡକୁ ଅଳ୍ପ ଦୋହଲାଇ, ହସି ହସି କହି କହିଲା, ପଚାରୁଛ ସତେ ନ ବୁଝିଲା ପରି ? ତାଆରି ପାଇଁ ଗୋ, ଯାହାକୁ ତମେ ପେଟରେ ଧରିଛ ।

ନନ୍ଦିକା ଟହଟହ ହସିଉଠିଲା ।

ସୁନନ୍ଦ ଆଖି ପୂରାଇ, ମନ ପୂରାଇ ଦେଖିଲା ନନ୍ଦିକାର ଆଗ୍ରହ-ଉଚ୍ଛଳ ହସିଲା ରୂପ, ନିଖୁଣ ରୂପ, ପବିତ୍ର ନିର୍ମଳ ବେଶ । ସତେ କି ତାର ବୟସ ପଛେଇ ଯାଇଛି । କଥା କଥାରେ ସ୍ମିତ, ପିଲାଳିଆ ଗେହ୍ଲାଳିଆ ଭଙ୍ଗୀ ।

ସୁନନ୍ଦ ମୁଗ୍ଧ ହେଲା ।

ଉଜ୍ଜ୍ୱଳ ଆଲୁଅ ଘର ଭିତରେ ହସର ଲହରୀ ଛୁଟାଇଛି । ପ୍ରଥମ ପ୍ରହର ରାତ୍ରିର ଶୀତଳ ଆହ୍ୱାନ ମନର କାମନାକୁ ଲୁଟାଇଦେଇଛି ନନ୍ଦିକାର ଅପଘନରେ । ମେଘ ନ ଥିବା ନୀଳର ତାରକିତ ଆକାଶର ପୁଲକିତ ଶୋଭା ମନଲୋଭା ଝରି ଆସୁଛି ଝିରି ଝିରି ହୋଇ, ଠୂଳ ହେଉଛି ପ୍ରେମର ପ୍ରତିମା ନନ୍ଦିକାର ନନ୍ଦିତ ବଦନରେ ।

ତା'ରି ନନ୍ଦିକା, ସର୍ବସ୍ୱ ସେ ଦାନ କରିଛି ସ୍ୱାମୀର ପାଦରେ,—ଦେହ, ମନ, ଜୀବନ ଓ ଏଇ ଉନୋଇଶି ବର୍ଷ । ଟେବୁଲ ଉପରେ ବିଡ଼ା ବିଡ଼ା ରଖାହୋଇଛି ନୋଟ୍ । ଦଶହଜାର ଟଙ୍କା । କାନରେ ବାଜୁଯାଉଛି ନନ୍ଦିକାର ଆକଟିଲା ଅନୁରୋଧ,—ଛି, ଜମି ବିକନା, ନନା ହେବ । ବୋଉଙ୍କ ମନରେ କଷ୍ଟ ହେବ, ସେ ବଞ୍ଚିପାରିବେ ନାହିଁ । ସୁନାଆଳି ଜମିକୁ ଝୁରି ଝୁରି ଟଳିପଡ଼ିବେ । ଆଉ କେତେ ଦିନ ସଂସାରରେ ବା ସେ ରହିବେ ? ହସଖୁସିରେ ଆଖି ବୁଜନ୍ତୁ । ସୁନାଟି ପରା, ଜମି ବିକିବାର ନାମ ଧର ନାହିଁ ।

କୋଠା ତୋଳା ଅଧା ରହିବ ? ବ୍ୟବସାୟରୁ ଅଧିକ ଟଙ୍କା ଉଠାଇ କୋଠାରେ ଲଗାଇଲେ ବ୍ୟବସାୟ ଅଚଳ ହେବ ।

ମୁଁ ଦଶ ହଜାର ଟଙ୍କା ଦେବି । ତମର ଟଙ୍କା ତମେ ନେବ । ବାକ୍ସ ଭିତରେ ସାଇତା ଧନ କେଉଁ କାମକୁ ଆସେ ନାହିଁ । ଆଉ ଜମିବିକା ନାମ ଧର ନାହିଁ । ଭଗବାନ ଦେଲେ ପୁଣି ଟଙ୍କା ମିଳିବ, କିନ୍ତୁ ଜମି ମିଳିବ ନାହିଁ ।

ତମରି କଥା ମାନିବି ।

ନନ୍ଦିକା ଟେବୁଲ ଉପରେ ସେଇ ଟଙ୍କା ଗଣି ରଖିଛି । ରାତି ପାହିଲେ ସକାଳୁ ସେ କଟକ ଚାଲିଯିବ । ସେଇଥିପାଇଁ ନନ୍ଦିକା 'ଗ୍ରେଟ ଚମଡ଼ା ସୁଟ୍କେସରେ କେତେ ପଦାର୍ଥ ସଜାଇଛି । ଲଳିତା ପାଇଁ ଭଲ ଭଲ ଦାମିକା ଶାଢୀ, ବ୍ଲାଉଜ, ଗହଣା ।

ସୁନନ୍ଦର ଦୃଷ୍ଟି ଟଙ୍କା ଉପରୁ ଫେରିଆସିଲା ନନ୍ଦିକାର ସଦ୍ୟଫୁଟା ଚମ୍ପାଫୁଲପରି ନିର୍ମଳ ଧବଳ କୋମଳ ଉଜ୍ଜ୍ୱଳ ଆନନ ଉପରକୁ ।

ପଲଙ୍କ ଉପରେ ସୁନନ୍ଦ ବସିଛି । କହିଲା, ଶୁଣ ନନ୍ଦିକା ।

ନନ୍ଦିକା ହସିହସିକା ପାଖକୁ ଗଲା । ସୁନନ୍ଦ ତାର ହାତ ଧରି ପାଖରେ ବସାଇଲା ।

ମୃଦୁହସି ରହିଲା । ମୁହଁରୁ ଖୁସି ହଜିଯାଇଛି । ଅନ୍ୟମନସ୍କ କଥା କହୁଛି, ତମେ ହିଁ ତ ବଡ଼, ଏ ସଂସାରରେ ସବୁ ତମରି ଖେଳ । ତମର ଉଦାରତା ପାଖରେ ସମସ୍ତେ ମନ ନୋଇଁବେ । ତମେ ଯେତେ ବଡ଼ ହୁଅ ପଛେ, ମୋର ପତ୍ନୀ, ସବୁ ଦିନେ ମୋ ପାଖରେ ମାନ । ତମର ସ୍ଥାନ ତ ସେଠି ନୁହେଁ ?

ମୁଗ୍ଧ ସୁନନ୍ଦର ବାହୁପାଶରେ ନନ୍ଦିକା ।

ସରଗର ଆନନ୍ଦ ନନ୍ଦିକା ଅନୁଭବ କରୁଛି । ତାର ମନ ଚିତ୍କାର କରି ଡାକ ଛାଡ଼ୁଛି କହିକୁ,—ରଖିଥା ତମର ଅମୂଲ୍ୟ ଦରବ ପାଣ୍ଡୁଆ ପାଟିର ଓଠରେ ଲୁଚାଇ, କେଉଁ ଅନାଗତ ଭବିଷ୍ୟତର ଶିଶୁଟି ପାଇଁ । ଦେଖ ଲୋ କହ, କବାଟ ତ ମୁକୁଳା ଅଛି, ଆଖିପୂରାଇ ଦେଖ, ମନ ପୂର୍ଣ୍ଣ କରି ଦେଖ, ମୋ ଜୀବନଦେବତା ବଦଳିନାହାନ୍ତି, ବଦଳି ପାରିବେ ନାହିଁ, ଚିରଦିନ ସେ ମୋର, ସେ ମୋର— ।

ନନ୍ଦିକା, ତମେ କଟକ ଯିବ ନାହିଁ ?

ପ୍ରତି ମୁହୂର୍ତ୍ତିରେ ମୋ ପ୍ରାଣ ଡାକୁଛି, ମୋ ଆତ୍ମା ତ ଛଟପଟ ହେଉଛି ଗୋ !

କାଲି ମୋ ସଙ୍ଗେ ଯିବ ତେବେ ? ତମର 'ମା' ତମକୁ ଦେଖି କେଡ଼େ ଖୁସି ହେବ ! ସେ ତମକୁ ଝୁରୁଛି । ଏକୁଟିଆ ରହିବାକୁ ଭଲ ପାଉ ନାହିଁ ।

ସୁନନ୍ଦର ହାତଟିକୁ ଦୁଇ ହାତରେ ମୁଠାଇ ଧରି ନନ୍ଦିକା କହିଲା, ବୋଉଙ୍କର ମନ ଟିକିଏ ବଦଳିଯାଉ, ବୁଢ଼ୀଲୋକ, ପାଚିଲା ପତର ! ତାଙ୍କର ଧାରଣା ନିଜନାଲ ତେଣୁ ଏ ସମୟରେ ଘର ଛାଡ଼ି ବୁଆଡ଼େ ଗଲେ ଭଲ ହେବ ନାହିଁ । ତାଙ୍କର ଦୁଡ଼ଗୁଡ଼ିଆ ମନରେ କାହିଁକି ଆମେ ଡର କି ସନ୍ଦେହ ଆଣିବା ?

ସୁନନ୍ଦ ତୁନି ରହିଲା । ବାହୁପାଶ ଶିଥିଳ ହେଲା ।

ମନଦୁଃଖ କଲ କି ?

ନାଇଁ, ବୋଉର ଅଲିଗୁଣିଆ କଥା ଭାବୁଛି ।

ସୁନନ୍ଦର ବାହୁ ଦଉଡ଼ିଟି ଫେରେଇ ନିଜ ପାଖକୁ ।

ମୋ ପେଟ ଭିତରେ ପିଲା ଲେଉଟୁଛି ।

ସତେ ?

ହଁ, ସେ କଅଣ କହୁଛି ।

ଦୁଷ୍ଟ ! କଅଣ କହୁଛି ସେ ?

ତମେ ସିନା ତା କଥା ଶୁଣିପାରୁନ,—

ତମେ ଶୁଣିପାରୁଛ ?

ହଁ । କହୁଛି ସେ, ସବୁ ବାପ ଦିନେ ମୋ'ର ପରି ମା' ପେଟରେ ଖେଳୁଥିଲେ, ସବୁ ପୁଅ ପୁଣି ଦିନେ ବାପ ହେବେ ।

ସୁଖ ଆନନ୍ଦରେ ଲଳିତାର ସମସ୍ତ କଟିଛି । ସ୍ୱାମୀ ଯେ କେବଳ ତାକୁ ଭଲ ପାଆନ୍ତି ସେତିକି ନୁହେଁ, ସ୍ୱାମୀ ତାକୁ ସମ୍ମାନ ଦେଖାନ୍ତି । କଥା ହେଉ କି ଅକଥା ହେଉ ତା' ତୁଣ୍ଡରୁ ଯାହା ବାହାରେ, ସଙ୍ଗେ ସଙ୍ଗେ ହୋଇଯାଏ । ତାର କଥା ତଳେ ପଡ଼େ ନାହିଁ । ତାକୁ ସେ ସବୁ ସ୍ୱାଧୀନତା ଦେଇଛନ୍ତି । ସ୍ୱାମୀଙ୍କର ଧନ ଆଜି ତା'ର ପାଖରେ । ସେ ଆଉ ପରର ହାତ ଟେକାରେ ନାହିଁ ।

ମାସ ପରେ ମାସ କଟିଯାଇଛି । ଶୀତକାଳ କଟି ଗ୍ରୀଷ୍ମଲକ୍ଷ୍ମ ବହିଲାଣି । ଗାଆଁକୁ ଫେରିବାର ନାମ ଲଳିତା ଧରିନାହିଁ । ସ୍ୱାମୀ କେବେ ଗାଆଁକୁ ଫେରିଯିବା କଥା ତୁଣ୍ଡରେ ଧରନ୍ତି ନାହିଁ । ବେଳେବେଳେ ଭଲମନ୍ଦ ଲେଖି ନନ୍ଦିକା ଚିଠି ଦିଏ । ସବୁ ଚିଠିରେ ବେଶି ଥାଏ ବୋଉଙ୍କ କଥା ।

—ଦିନୁଦିନ ସେ ଦୁର୍ବଳ ହେଉଛନ୍ତି । ବାରଦିନେ ତେର ରୋଗ ।

ମନ ହେଲେ ଲଳିତା ଏଣୁ ତେଣୁ ଦୁଇ ପଦ ଲେଖି ଉତ୍ତର ଦେଇଦିଏ ।

ତହିଁ ବ୍ୟତୀତ ପତ୍ର ଆଦାନ ପ୍ରଦାନ କେବଳ ଲୋକଦେଖଣା, ଭଦ୍ରତା ରକ୍ଷା । ସେସବୁ ପତ୍ରରେ ଆନ୍ତରିକତା ନ ଥାଏ ।

ଘର ଖବର ବୁଝିବାକୁ ସୁନନ୍ଦର ବେଳ ନାହିଁ । କୋଠାତୋଳା କାମ ସରିଆସିଲାଣି । ଦୋଳପୂର୍ଣ୍ଣିମା ଆଗରୁ ଶେଷ ହେଲେ ପୂର୍ଣ୍ଣିମା ଦିନ ସେମାନେ ନୂଆ ଘରକୁ ଯିବେ । ଏ ଘରକୁ ବଢ଼ାଇବାକୁ ହେବ । ସବୁ ବ୍ୟବସ୍ଥା ଏଇଠି ହେବ । ଗାଆଁରୁ ସେ ସମସ୍ତଙ୍କୁ ନେଇଆସିବ କଟକ । ସମସ୍ତେ ନୂଆ ଘରେ ସୁଖରେ ରହିବେ ।

ଲଳିତାକୁ ସେ ଏଇଆ ବୁଝାଇଛି । ଲଳିତାର ପ୍ରତିବାଦ କରିବାର କିଛି ନାହିଁ । ଆସନ୍ତୁ ଗାଆଁଯାକର ଲୋକେ, ଯାହା ଇଚ୍ଛା ତାହା କରନ୍ତୁ, ତା'ର ସ୍ୱାମୀ ତା'ର

ହାତରେ ଓ ସ୍ୱାମୀଙ୍କର ପାଣ୍ଠି ତା' ପାଖରେ । ସେ ଆଜଆଜି କରି ନୋଟ୍ ଜମାଇ ରଖିଛି । ତା ନାମରେ ପୋଷ୍ଟ ଅଫିସରେ ହିସାବ ଖୋଲା ହୋଇଛି । ତା'ର ଅଛି ଜାଠିଜାଠିକା ଗହଣା ଭଲାଭଲିକା ଶାଢ଼ୀ । କି ଚିନ୍ତା ଅଛି ?

ନନ୍ଦିକା ସୁନନ୍ଦର ମୁହଁକୁ ଚାହିଁ ହସିବାକୁ ଲାଗିଲା ।

କଥାର ମର୍ମ ସୁନନ୍ଦ ବୁଝିଲା । ନନ୍ଦିକା କେଡ଼େ ବାଗରେ କଥା କହି ତାକୁ ସାବଧାନ କରିଦେଇଛି,—ତମେ ବି ଦିନେ ତମର ଏଇ ବୁଢ଼ୀ ମାଆଙ୍କ ପେଟରେ ଏମିତି ଖେଳୁଥିଲ । ସେଇ ତମକୁ ପାଳିଛନ୍ତି, ବଢ଼ାଇଛନ୍ତି, ମଣିଷ କରିଛନ୍ତି । କପରି ତାଙ୍କର ମନରେ ଦୁଃଖ ଦେଇପାରିଲ, ପୁଣି ଏ ବୟସରେ ?

ମୁହଁ ଶୁଖାଇ ସୁନନ୍ଦ କହିଲା, ମୁଁ ଅନ୍ୟାୟ କରିଛି ନନ୍ଦିକା, ଲଳିତାକୁ ଆଣି ଏଠାରେ ଛାଡ଼ିଦେଇଯିବି ?

ତମେ ମୋ କଥା ଭୁଲ ବୁଝିଲ କି ? 'ନା' କୁ ଆଣି ଏଠି ଛାଡ଼ି ଦେଇଯିବାକୁ ମୁଁ କହୁ ନାହିଁ । ଦିନାକେତେ ସେ କଟକରେ ରହୁ । ଆମ ଦୁହିଁଙ୍କ ଭିତରୁ ଜଣେ କେହି ସବୁବେଳେ ବୋଉଙ୍କ ପାଖରେ ରହିବା ଆବଶ୍ୟକ । ଗାଆଁ ଛାଡ଼ି ଆଉ କୁଆଡ଼େ ସେ ଯିବେ ନାହିଁ ବୋଲି ଝୁଙ୍କ ଧରିଛନ୍ତି । ତାଙ୍କର ମନ ନେଇ ସିନା ମନ ବଦଳାଇବା, ପ୍ରତିବାଦ କଲେ ଝୁଙ୍କ ବଢ଼ିବ, ତାଙ୍କ ମନରେ ଦୁଃଖ ହେବ ।

ସୁନନ୍ଦ ନନ୍ଦିକାର କଥା ଭାବିବାକୁ ଲାଗିଲା । ଲଳିତାକୁ ଆଣି ଗାଆଁରେ ଛାଡ଼ି ନନ୍ଦିକାକୁ କଟକ ନେଇଗଲେ ଭଲ ହୁଅନ୍ତା । ସୁରୁଖୁରୁରେ ସେ କେମିତି ହଜାର ପାଇବ, ତାହାହିଁ ତ ଚିନ୍ତା । ବୋଉ କଣ ମାନିବ ? ଯାଉ ଦିନାକେତେ, ବୋଉର ମନ ବଦଳୁ ।

କ'ଣ ପୁଣି ଏତେ ଭାବୁଛ ?

ତମର କଥା ।

ସେତିକି ଥାଉ । ଭାତ ଶୁଖି ଚଣାଗୁଡ଼ିଲ ହେବଣି । ଆସ ଖାଇବ ।

ନନ୍ଦିକା ସୁନନ୍ଦର ହାତ ଧରି ଟାଣିଲା ।

ବେଳେବେଳେ ଭାଉଜ ଆସି କଟକରେ ଦୁଇ ଚାରି ଦିନ ରହିଯାଆନ୍ତି । ପ୍ରଶଂସା କରନ୍ତି, ବୁଦ୍ଧି ଶିଖାନ୍ତି । ଗଲାବେଳକୁ ସେ ନେଇଯାଆନ୍ତି ପାଥେୟ । ତାଙ୍କର ରିଣ ଲଳିତା ଶୁଝାଇପାରିଲଣି ଅନେକଗୁଣ । ଭାଇ ଗାଆଁରେ ଶ୍ରେଷ୍ଠ ଦୋକାନଟିଏ ଖୋଲିଲେଣି ସଉଦା ନେବାକୁ ସେ ବରାବର କଟକ ଆସନ୍ତି । ଭଉଣୀର ଭଲମନ୍ଦ ଖବର ବୁଝିଯାଆନ୍ତି । ସୁନନ୍ଦର ଗୋଦାମରୁ ମାଲମତା ଧାର କରି ନେଇଯାଆନ୍ତି । ଭଉଣୀ ଓ ଭଣେଇଙ୍କ ପାଖରେ ସେ କୃତଜ୍ଞ । ପୁଅଟିଏ ତ ଲଳିତା ପାଖରେ ଅଛି ।

ଦଶ ଏଗାର ବର୍ଷର ସୁନ୍ଦର ପୁଅଟି ରବି, ସେଇ ହେଉଛି ଲଳିତାର ସ୍ୱାଧୀନତାର ସହାୟକ । ଅଳ୍ପ ସମୟରେ ଅଧିକ ପାଠ ପଢ଼ିବ ବୋଲି ସେ ସ୍କୁଲରେ ନାମ ନ ଲେଖାଇ ଘରେ ପଢ଼ୁଛି । ସକାଳେ ମାଷ୍ଟର ଆସି ପଢ଼ାଇ ଯାଆନ୍ତି । ଦୁଇପ୍ରହରଟା କିପରି ତା ମନକୁ କଟିଯାଏ । ଅପାଙ୍କର ସେ ହାତବାରସି, କୁହାର ବୋଲର ପିଲା । ଅପା କଅଁଳେଇ କହିଲେ ସେ କଥା ମାନେ, ଆଦେଶ ପାଳିବାକୁ ତତ୍ପର ହୁଏ ।

ଆରେ !

କଅଣ, ଅପା ?

ତୋ ପିଇସା ଚଉଦ୍ୱାର ଗଲେଣି, ଫେରୁ ଫେରୁ ସାତ ଦ'ଘଡ଼ି ହେବ, ଘରେ ମନ ଲାଗୁନାହିଁ ଏ ଧ ପହରେ । ଯିବା କି ରେ ତାଙ୍କ ଘରଆଡ଼େ ବୁଲି ?

କାହା ଘରକୁ ଅପା ?

ଲଳିତା ଭାବିବାକୁ ଲାଗିଲା, କାହା ଘରକୁ ? ଅଳପ ଦିନରେ ବହୁତ ବନ୍ଧୁ ଆସି ଜୁଟିଲେଣି । ସେମାନେ ସ୍ତାବକ । କୌଣସି ସୁବିଧା ଲାଭ କାମନାରେ ସେମାନେ ଆସନ୍ତି । ଗୋଡ଼ରୁ ମୁଣ୍ଡଯାଏ ପ୍ରଶଂସନ୍ତି । ହାସରୁ କାଶଯାଏ ପସନ୍ଦ କରନ୍ତି । ସେମାନଙ୍କ ଆଖିରେ ଲଳିତାର ଚାଲିଚଳନ, ରୂପରେକ; ସ୍ନେହ, ବୁଦ୍ଧି, କର୍ମକୁଶଳତା, ସହାନୁଭୂତି କେବଳ ଆଦର୍ଶ ହୋଇ ରହିଁ ରହିବାର କଥା ! ସେହି ବୟସ୍କର ଗୃହିଣୀରେ ଥାଏ ଅନୁମୋଦନ, ବାହା ବାହା ! କେମିତି ଜାଣିଲ ଶିଖିବାକୁ ମୋ'ର ଆଗ୍ରହ ହେଉଛି । କିଏ କହୁଛି ଝିଅ, କିଏ କହୁଛି ଝିଆରି, କିଏ କହୁଛି ସାନ ଭଉଣୀ ।

ତାର ସବୁ ଭଲପଣ, ଅନ୍ତର୍ନିହିତ ଗୁଣର ପୂର୍ଣ୍ଣ ପ୍ରକାଶ ହୋଇଥିଲା ଛୁଟିକରେ, ଅତି ଅନୁରକ୍ତ ରୂପଗୁଣମୁଗ୍ଧ ସ୍ୱାମୀଙ୍କ ପାଖରେ, ସ୍ୱାଧୀନ ଜୀବନର ଲଗାମହୁଗୁଳା ଚଳନରେ । ଖଡ଼କୁଡ଼ରେ ମୋତି ମାଣିକ୍ୟର ହଜିଲା ଜ୍ୟୋତି ପରି କେଉଁ ଦୂର ଗାଆଁର ମୋଫସଲିଆ ଝିଅବୋହୂଙ୍କ ମେଳରେ ତାର ଜ୍ୟୋତି ଲୁଚି ରହିଥିଲା । ସହରର ଆଧୁନିକତାର ଆଲୁଅରେ ସବୁ ଚହଟି ଉଠିଛି । ଅନ୍ୟର ଆଖି ଝଲସାଇ ପାରୁଛି । ସ୍ୱାମୀ ଏକାଥରେ ମୁଗ୍ଧ, ପଣତ ଭିତରେ ଲୁଚି ରହିବାକୁ ଆକୁଳ । ଅନ୍ୟମାନେ ବିସ୍ମୟଭରା ଆଖିରେ ଅନାଇ ରହନ୍ତି ।

ଲଳିତା ନିଜକୁ ଓ ଆଖିଆଗକୁ ଯେଉଁମାନେ ଆସନ୍ତି ସମସ୍ତଙ୍କୁ ଦେଖି ନିଜର ମୂଲ୍ୟ ନିରୂପଣ କରେ । ସେଇ ମୁହଁ, ସେଇ ଆଖି, କାନ, ଓଠ, ବେକ, ଦେହ, ହାତଗୋଡ଼ କିଛି ବଦଳିନାହିଁ । ଏସବୁର କିଛି ମୂଲ୍ୟ ନ ଥାଏ । ଏସବୁକୁ ସଜାଇବାରେ ହିଁ ମୂଲ୍ୟ ରହିଛି । ସଜାଇବା ପାଇଁ ସରଞ୍ଜାମ ପ୍ରସ୍ତୁତ କରିବା ଆଧୁନିକ ସଭ୍ୟତାର ବଡ଼ ଅଙ୍ଗ ।

କଥା ସମସ୍ତେ କହନ୍ତି, ହସନ୍ତି, ଅଭିମାନ କରନ୍ତି, ରୋହିଲେଇ ହୁଅନ୍ତି, ଅଙ୍ଗ ଚାଳନା କରନ୍ତି, ବସନ୍ତି, ଚାଲନ୍ତି; କିନ୍ତୁ ପ୍ରତ୍ୟେକଟିରେ ଅନ୍ୟକୁ ମୁଗ୍‌ଧ ତନ୍ମୟ କରିବାର ମୋହିନୀ ମନ୍ତ୍ର ନ ଥାଏ । ସହରର ଆଧୁନିକତା ପ୍ରବୃତ୍ତିରେ ନୂଆ ଜୀବନ, ନୂଆ ପ୍ରେରଣା ଆଣି ଦେଇଛି । ସିନେମା, ଥିଏଟର, ବନ୍ଧୁ ! ସେ ଅନୁକରଣ କରେ । ପସନ୍ଦ କଲା ପରି ସମସ୍ତେ ଚାହାନ୍ତି, କେବଳ ଦୁଇଟି ମଣିଷଙ୍କୁ ଛାଡ଼ି ।

ରାଜୀବ ! ପାଖକୁ ଗଲେ କି ପାଖକୁ ଆସିଲେ, ସେ ଗମ୍ଭୀର ହୁଅନ୍ତି । ତଳକୁ ଅନାଇଁ ସେ କଥା ଶୁଣନ୍ତି । ମୁଣ୍ଡ ହଲାଇ ଉତ୍ତର ଦିଅନ୍ତି, ହୁଁ, ହୁଁ, ହୁଁ । ବେଶି କହିବା ଆବଶ୍ୟକ ହେଲେ ସେ କହନ୍ତି, ଭାଇଙ୍କୁ କହିବ । ଦିଅର ପକ୍ଷେ ହେଉନ୍ତୁ, ସୁନନ୍ଦର ସେ ଅନୁଗତ କର୍ମଚାରୀ । ତାଙ୍କର ଗାମ୍ଭୀର୍ଯ୍ୟ ଲଳିତାକୁ ନୂଆ ଚଳନରୁ ନିବର୍ତ୍ତାଇ ପାରେ ନାହିଁ । ଲଳିତାର ମନରେ ଅବଜ୍ଞାର ହାଃଭାବ ଆସେ ।

ରୁହିନା ! ସ୍ୱାମୀଙ୍କ ସଙ୍ଗେ ସେ କେବେ କେବେ ତାଙ୍କ ଘରକୁ ଯାଏ । ନିଜେ ରୁହିନା ପିଲା ଦିଓଟିଙ୍କୁ ନେଇ ଅକସ୍ମାତ୍ ପହଞ୍ଚିଯାଆନ୍ତି । ହସଖୁସିରେ ବେଳ କଟେ; କିନ୍ତୁ ରୁହିନାଙ୍କ ପ୍ରଶଂସାରେ ଷୁଂଧାଳୁଆ ସମାଲୋଚନା ଲୁଚି ରହିଥାଏ । କଥାକଥାକେ ସେ ନନ୍ଦକାର ସମ୍ବାଦ ପକାନ୍ତି । ହଁ ମ ଲଳିତା, ନନ୍ଦକା ପୁରୁଣାକାଳିଆ । ମୁଣ୍ଡ ଟେକି ଅନାନ୍ତି ନାହିଁ, ଚାହିଁ ଜାଣନ୍ତି ନାହିଁ, ହସି ଜାଣନ୍ତି ନାହିଁ । ଓଠରେ ଗୋଲାପ ରଙ୍ଗ ଓ ମୁହଁରେ ଟାଲକମ୍ ପାଉଡ଼ର ବୋଳିଲେ ଯେ ରୂପର ମୂଲ୍ୟ ବଢ଼େ ତାଙ୍କୁ ତାହା ଜଣା ନାହିଁ । ବ୍ଲାଉଜ ପିନ୍ଧିଲେ ଦେହ ଭାରର ଅସ୍ତିତ୍ୱ ଲୋପ ହୁଏ । ଲୁଗା ପିନ୍ଧିଲେ ମୂଲ୍ୟବାନ୍ ସାସ୍ଥ୍ୟର ଆଭାସ ମିଳେ ନାହିଁ । ନିପଟ ମଫସଲୀ । ଆଣୁନା ତାଙ୍କୁ କଟକ, ଦିନାକେତେ ସଭ୍ୟ ସମାଜରେ ମିଶିଲେ ସେ ସଭ୍ୟ ହେବେ, ନିଜର ମୂଲ୍ୟ ବୁଝିବେ ।

ସେ ଆସିପାରିବେ ନାହିଁ ।

ହଁ, ମା ହେବେ ପରା ! ବଡ଼ ଜଞ୍ଜାଳ । ଦେଖୁନା ଲଳିତା, ଏ ପିଲା ଦିଓଟି ମତେ କେତେ ହଇରାଣ କରୁଛନ୍ତି । ମା ନ ହେବା ପାଇଁ କେତେ ଚେଷ୍ଟା ଏବେ କରୁଛନ୍ତି ମ ସମସ୍ତେ, ନନ୍ଦକାଙ୍କର ବୁଦ୍ଧି ନାହିଁ ।

ଅତନୁବାବୁ ସିନାମା ଦେଖିବାକୁ ନିମନ୍ତ୍ରଣ କରନ୍ତି । ଫ୍ରି ପାସ ପଠାଇ ଦିଅନ୍ତି । ଖବର ଦେଲେ, ଫୋନରେ ଥରେ ଡାକିଲେ, ମଟରଗାଡ଼ି ପଠାଇବେ ବୋଲି ଜଣାଇଁ ଦିଅନ୍ତି । ସୁନନ୍ଦ ପରର ଧାରୁଆ ହେବାକୁ ଚାହେଁ ନାହିଁ । ଛବି ଦେଖିବାର କଥା ତ ପଇସା ଖର୍ଚ୍ଚ କରି ଦେଖିବା ଭଲ । ନିଜର ମଟର କିଣା ନ ହେବା ଯାଏ ମ୍ୟାଇଦଲ ରିକ୍‌ସାରେ ଗଲେ ସମ୍ମାନ ପକ୍ଷେ ବାଧିବ, କମିବ ନାହିଁ ।

ଗାଆଁକୁ ଫେରିବା କଥା ମନେ ପଡ଼ିଲେ ହାଲୁକ ଶୁଖେ ।

କୋଠାତୋଳା କାମ ସରିଆସିଲାଣି । ନୂଆ ଡିଜାଇନ୍ । ଖାଲି ବାକି ରହିଛି ପଲସ୍ତରା ଓ ସଫେଇ । ତଳ ମହଲରେ ଚାରି ବଖରା, ଉପରେ ତିନି ବଖରା । ମଝି ଦୁଇ ବଖରା ମିଶି ଲମ୍ବ ହଲ । ପ୍ରଶସ୍ତ ବାରଣ୍ଡା । ପୋର୍ଟିକୋ । ସ୍ୱତନ୍ତ୍ର ରୋଷେଇଘର ଓ ଭଣ୍ଡାରଘର । ମଟର ଗ୍ୟାରେଜ୍ । ଅଧମାଣ ଜମି, ଘର ଆଗରେ ସୌଖୀନ ଗଛଲଟା ଓ ଫୁଲବଗିଚା ପାଇଁ ସ୍ଥାନ । ଘର ପଛରେ ବାଡ଼ି । ଢେଉଢେଉକା ଉଚ୍ଚ କମ୍ପାଉଣ୍ଡ ୱାଲ୍ ।

ଦେଖିଲେ ଆଖି ପୂରିଯାଏ, ମନ ଭରିଯାଏ । ସୁନନ୍ଦ ତୃପ୍ତିରେ ନିଶ୍ୱାସ ମାରେ । ଏତେ ବଡ଼ କାମ ସେ କରିପାରିଛି । ଆହୁରି ଦଶ ହଜାର ଟଙ୍କା ଲୋଡ଼ା । ସେତିକରେ ବାକି କାମ ସରିଯିବ । ମୋଟେ ପାଞ୍ଚ ସାତ ହଜାର ଟଙ୍କା ହାତ ଉଧାର । ଆଉ ଦଶ ମାଣ ଜମି ବିକିଦେଲେ ସବୁ ଠିକ୍ ହୋଇଯିବ । ଧୀରେ ଧୀରେ ବିଭିନ୍ନ ଗରାଖଙ୍କୁ ସେ ପ୍ରାୟ ସବୁ ଜମି ବିକିସାରିଛି । ଘରପାଖିଆ ଜମି ଆଉ ମୋଟେ ପନ୍ଦର ସତର ମାଣ ଅଛି । ସେଥିରୁ ଯଦି ସାତ ଆଠ ମାଣ ବିକ୍ରି କରିଯାଏ, କ୍ଷତି ନାହିଁ ।

ନୂଆ କୋଠାର ଛାତ ଉପରେ ସୁନନ୍ଦ ଟହଲୁଛି । ସେ ଜାଣେ, ବୋଉଙ୍କୁ ନ ପଚାରି ଓ ନନ୍ଦିକାର ଅନୁରୋଧ ରକ୍ଷା ନ କରି କଟକରେ ଥାଇ ସେ ଜମି ବିକୁଛି । ବାକିତକ ମଧ୍ୟ ବିକିବ । ଜମି ରଖି ଲାଭ ନାହିଁ । ଜମି ପରିବର୍ତ୍ତେ ବେପାରରେ ଟଙ୍କା ଖଟାଇ ଚାରି ପଇସା ଉପାର୍ଜନ କରିବା ଭଲ ।

କଅଣ ଭାବୁଛ ମ ଏତେ ? ଦେଖିଲ, କି ସୁନ୍ଦର ଜହ୍ନ ପଡ଼ିଛି । ଆମର ଏ ଘରଟା ବଡ଼ ନିଚ୍ଛଟିଆ !

ନାଇଁ ଲଳିତା, ସମସ୍ତେ ଆସି ଏଠି ରହିଲେ ଗହଳ ଚହଳ ହେବ । ଚାରିପାଖେ ବିଜୁଳି ଆଲୁଅ ଖଞ୍ଜିଦେବା । ସୁନ୍ଦର ଦିଶିବ । ଦେଖ, ଏଇଠି ଠିଆହେଲେ ମହାନଦୀ ଦେଖାଯିବ । ଦେଖିଲ ?

ହଁ, ଦିଶୁଛି ।

ଏ ପାଖକୁ ଆସ, ହେଇ ଦେଖ, କାଠଯୋଡ଼ି !

ହଁ, ଦିଶୁଛି ।

ଦି ଆଡ଼େ ଦୁଇ ନଦୀ, ନନ୍ଦିକା ଓ ଲଳିତା—

ସୁନନ୍ଦର ଗେଲରେ ସେଇ ନିରୋଳା, ଉଚ୍ଛ୍ୱଳ, ମନପୁଲକା, ଦେହଉଲୁସା, ଫଗୁଣ ପନ୍ତରେ ଲଳିତାର ଶିରପ୍ରଶିରରେ ବିଜୁଳିର ଚମକ ଛୁଟିଲା ନାହିଁ । ବିଜୁଳିରୁ ଅଟକାଇ ଦେଲା ଗୋଟିଏ ଶବ୍ଦ, ନନ୍ଦିକା ! ସେଇ ଯେ ମହାନଦୀ, ଯାହାର ଇଚ୍ଛାରୁ ଉଦ୍ଭବ କାଠଯୋଡ଼ି ! ଜହ୍ନର ଆଲୁଅରେ ତାର ଧୂସର ବାଲିଆ ଛାତି ଚକ୍ ଚକ୍ ଦିଶୁଛି ଦୂରରୁ । ସେ ଲଳିତା !

କହିଲି, ଏଥର ଫେରିବା ।

ଗୁଲି, ମିସ୍ତ୍ରୀ ଓ ମୂଲିଆ ବାହାରେ ଅପେକ୍ଷା କରି ବସି ଗପୁଛନ୍ତି । ଯିବା କି ଆଜି ଅତନୁବାବୁଙ୍କ ଘରକୁ ?

ନା ।

ସୁନନ୍ଦ ପୁରୀ ଯାଇଛି । ରାତିଗାଡ଼ିରେ ଫେରିବ । କଅଣ ତାର ଜରୁରୀ କାମ ।

ଲଳିତା ବ୍ୟସ୍ତରେ ପଢ଼ୁଛି । 'ମା' ଚିଠି ଲେଖିଛି,—ବୋଉ ଆଉ ବିଛଣାରୁ ଉଠିପାରୁନାହାନ୍ତି । ଖିଆପିଆ ଛାଡ଼ିଲେଣି । ପାଣି ମନ୍ଦାଏ ବି ପେଟରେ ରହୁନାହିଁ, ବାନ୍ତି ହୋଇ ପଡ଼ୁଛି । ଅତି ଦୁର୍ବଳ ହୋଇପଡ଼ିଲେଣି । ଦେହ ଝରୁଛି । ତମ ଦୁହିଁଙ୍କୁ ଦେଖିବାକୁ ଆକୁଳ ହେଉଛନ୍ତି । ମୋ ଦେହ ଭଲ ଅଛି ।—

ଆର ଚିଠିରେ,—ଦଶଦିନ ତଳେ ବୁଲି ଆସିଲାପରି ଆସି ମୋଟେ ଦୁଇ ତିନି ଘଣ୍ଟା ରହି ଚାଲିଗଲ । ଯେଉଁ ଔଷଧ ଆଣିଥିଲ, ସେ ସେମିତି ରଖା ହୋଇଛି । ବୋଉ ତୁଣ୍ଡରେ ଦେଲେ ନାହିଁ । କବିରାଜଙ୍କୁ ଡକାଇ ଔଷଧ ବରାଦ କଲି, ଅତି କଷ୍ଟରେ ସେ ଖାଉଛନ୍ତି । ତମେ ଦେଖିଗଲାବେଳେ ସେ ଟିକିଏ ଭଲ ଥିଲେ, ଚାଲବୁଲ କରୁଥିଲେ; ଏବେ ବିଛଣା ଧରିଲେଣି । ତମ ଦୁହିଁଙ୍କୁ ଦେଖିବାକୁ ସେ ଚାହାନ୍ତି ।

—କାଠି ଛୁଇଁ କାଳୀଗାଈର ବାଛୁରୀ ମରିଗଲା । ତିନି ଦିନ ହେଲାଣି ଗାଈ ଖାଲି ବୋବାଳି ଛାଡ଼ୁଛି । ଆଜି ସକାଳେ ଦେଖିଲାବେଳକୁ ବୁଢ଼ା କୁକୁର ମରି ଶୋଇଛି । କଅଣ ଗୋଟାଏ ବିପଦ ଆସିଛି ଏ ଘରକୁ ।

—ଭୟ ନାହିଁ । ଯେତେ ଯେଉଁଠି ଦେବଦେବୀ ଅଛନ୍ତି ସମସ୍ତଙ୍କର ପୂଜା ମୁଁ କରାଉଛି । କଷ୍ଟ ଅବଶ୍ୟ କଟିବ । ପାନ କୁହା ମୋର । ମାନିବ ? ସୁନାଟି ପରି, ଯେତିକି ହେଲା ସେତିକି, ଅଉ ଜମି ବିକନା । ରାତିଦିନ ବୋଉ ଖାଲି ସେଇ କଥା ଭାବୁଛନ୍ତି, ଚେଇଁଲାବେଳେ କହୁଛନ୍ତି, ଶୋଇଲାବେଳେ ସେଇସବୁ ଜମିକୁ ସ୍ୱପ୍ନ ଦେଖି ବିଳିବିଳାଉଛନ୍ତି ।

—କୋଠାତୋଳା କାମ ସରିନାହିଁ ? ଆଉ କେତେ ଟଙ୍କା ଲାଗିବ ? ଆର ଥର ଆସିଲାବେଳେ ତ ମୋ ପାଖରେ ବାକି ଯେତିକି ଟଙ୍କା ଥିଲା, ଦେଇଦେଲି, ଆଉ ଟଙ୍କା ନାହିଁ । ଯାଇତାହେଲି ଗହଣା ସବୁ ବିକି କୋଠାକାମରେ ଲଗାଇବାକୁ ତମ ହାତରେ ଦେଇଥିଲି । ବାକି ଅଛି ମୋ ଦେହରେ ପିନ୍ଧା ଗହଣା । ଦି ଦି ପଟି କାଚ ଓ ବେକରେ ସୂତା ସବୁ ହାରଟିଏ ହେଲେ ଚଳିବ । ଆଉ ଓଜନ ଗହଣା ବୋହିବାକୁ ମୋର ବଳ ପାଉନାହିଁ । ସବୁ ଗହଣା ମୁଁ ଖୋଲି ରଖିଛି । ତମେ ଆସିଲେ ନେଇଯିବ । ସେତିକିରେ ଯେପରି କୋଠାକାମ ଶେଷ ହୁଏ ସେଇ ବରାଦ କର ।

—ଆଉ ଜମି ବିକିବାକୁ ମନ କରିବ ନାହିଁ, ତମକୁ ମୋ ରାଣ । ଚିଠି ପାଇ ସଙ୍ଗେ ସଙ୍ଗେ ଆସିବ । ଲଳିତାକୁ ସଙ୍ଗରେ ଆଣିବ । ଦିନଟିଏ ରହି ସେ ତମ ସଙ୍ଗେ ଫେରିଯିବ । ବୋଉ ତମ ବୋହୂଙ୍କୁ ଦେଖିବାକୁ ଭାରି ବିକଳ ହେଉଛନ୍ତି । ବିଛଣାରେ ହାତ ଅଣ୍ଡାଳ ଖୋଜୁଛନ୍ତି । ପଚାରୁଛନ୍ତି, ଆଇଲେ ସମାନେ, ତାଙ୍କ ମୁହଁ ନ ଦେଖି କେମିତି ଆଖି ବୁଜିବେ ?

'ସା'ର ଚିଠି ଦିଓଟିର ଉଦ୍ଦେଶ୍ୟ କଅଣ, ଭଲକରି ପଢ଼ି ବୁଝିବାକୁ ଲଳିତାର ଧୈର୍ଯ୍ୟ ନାହିଁ । ସେ ଜାଣେ, ପ୍ରାୟ ସବୁ ଗହଣା ତା' ପାଖରୁ ଆସିଛି, ସେ ନିଜପାଇଁ ପାଖରେ ସାଇତି ରଖିଛି । ଖଣ୍ଡିଏ ହେଲେ ବନ୍ଧକ କରିବାକୁ ଦେଇନାହିଁ । ଟଙ୍କା ପାଇଁ ଜମି ବିକିବାକୁ ସେ ଉପଦେଶ ଦେଇଛି । ଭାଉଜ ସେଇଆ କାନ କାନ କରି ଶିଖାଇଥିଲେ, ବୁଝାଇ କହିଥିଲେ, ସଉରୁଣୀଆ ଘରେ ପାଖରେ ଧନ ରଖିବା ଭଲ । ଜମି ଗଲା ଭାଗ ହେବ, ଦେହର ଗହଣା ଓ ପାଖରେ ଥିବା ଧନ ଭାଗ ହେବ ନାହିଁ ଗୋ ଲଳିତା !

ଶାଶୁ ଖୋଜୁଛନ୍ତି । ତାଙ୍କର ସେପୁରକୁ ଗଲାଆଇଲା ବେଳ । ଥରେ ଯାଇ ଦେଖି ନ ଆସିଲେ ଲୋକେ କହିବେ କ'ଣ ? ଓହୋ, ଯେଉଁ ଭଲ ପାଆନ୍ତି ତ ! ଡକାଇଛନ୍ତି ଖାଲି ଶୋଧିବାକୁ, ଗୋଇ ଖୋଲିବାକୁ । ଯାହା ସେ କହନ୍ତୁ, ନ ଗଲେ ଭଲ ହେବ ନାହିଁ । ଲୋକେ ନିନ୍ଦା କରିବେ । ଯେତେ ବିଷ ସେ ପେଟରେ ଭରି ରଖିଛନ୍ତି, ସବୁ ଉଦ୍‌ଗାରି ଦେଉନ୍ତୁ, ସେଇଠୁ ଆଖି ବୁଜନ୍ତୁ ।

ସେ ଭୂମା ରହିବ । ଯେତେ ଯାହା କହି ଗାଳିଦେଲେ ସେ ଜବାବ ଦେବ ନାହିଁ । ସାମାନ୍ୟ ଗହଣା କେଇ ଖଣ୍ଡି ଦେହରେ ନାଇ ଯିବ । ବାକି ସବୁ ଏଇଠି ରଖିଯିବ । ଖବର ପଠାଇବ କି ଭାଉଜଙ୍କୁ ? ଖବର ପାଇ ଆସୁ ଆସୁ ଦିନ ଦିନ ଲାଗିବ । ଏ ଭିତରେ ଯଦି ଶାଶୁଙ୍କର କ'ଣ ହୋଇଯାଏ, କଥା କାଳକାଳକୁ ରହିବ । ଲୋକେ ଲଳିତାକୁ ନିନ୍ଦିବେ, ପ୍ରଶଂସିବେ ନନ୍ଦିକାକୁ । 'ସା'ର ଭଲପଣିଆ, ବଡ଼ପଣିଆର ଚେକ ରହିବ । ସେ ସତକୁ ସତ ଅତି ଶ୍ରେଷ୍ଠ ହୋଇଯିବ !

ସ୍ୱାମୀ ପୁରୀରୁ ଫେରିଲେ ତାଙ୍କ ସଙ୍ଗରେ ଗ୍ରାମକୁ ଯିବ, ଶାଶୁଙ୍କୁ ଥରେ ଭୁହିଁ ଦେଇ ତାଙ୍କର ଗୋଡ଼ରେ ହାତ ବୁଲାଇ ପୁଣି କଟକ ଫେରିଆସିବ । ଲୋକେ ଯେ କାମୁଡ଼ା କୁକୁର ପରି । ପଛରେ ଭୁକିବେ ତ ଭୁକୁଥାଆନ୍ତୁ, ତା'ର କି ଥାଏ ?

ସିନେମାରେ ଭଲ ଛବି ଚାଲିଛି । କାଲିଠାରୁ ଅତନୁବାବୁ ଫ୍ରି-ପାସ୍ ପଠେଇ ଦେଇଛନ୍ତି । ମଟର ନେଇ ଆସିବାକୁ ସେ ଫୋନ୍ କରିଥିଲେ । ଲଲିତା ନିଜେ ମନା କରିଦେଲା, କହିଲା, ଦେହ ଭଲ ନାହିଁ । ସେ ସ୍ୱାମୀଙ୍କୁ ଫ୍ରି-ପାସ୍‌ଟି ଦେଇ କହିଲା ସେ ସେ ଛବି ଦେଖିନିବାକୁ ବାରଣ କରିଦେଇଛି ।

ସୁନନ୍ଦ ଖୁସି ହେଲା, କହିଲା, ଠିକ୍ କରିଛ । ପରର ଧାରୁଆ ହେବ ନାହିଁ । ପୁରୀରୁ ଫେରିଲେ ମୁଁ ନିଜେ ତମକୁ ସଙ୍ଗରେ ନେଇ ଖେଳ ଦେଖାଇଆଣିବି । ଭଲ ଖେଳ ସତେ !

ଅତନୁବାବୁଙ୍କର ନିମନ୍ତ୍ରଣକୁ ସୁନନ୍ଦ ପସନ୍ଦ କରେ ନାହିଁ ।

କାହିଁକି ?

ରାଜପୁତ୍ର ସେ, ଭଲ ଲୋକ, ଅତି ଭଦ୍ର । ସ୍ନେହ କରନ୍ତି, ସମ୍ମାନ ଦେଖାନ୍ତି । ବିଶେଷତଃ ଲଲିତାକୁ ସେ ଅନୁମୋଦନ କଲା ଆଖିରେ ଦେଖନ୍ତି । ଦେହରେ ଯେଉଁଠି ଲଳିତା କେଉଁ ନୂତନତ୍ୱ ଆଣିଥାଏ, ଅତନୁଙ୍କର ଦୃଷ୍ଟି ଥରକୁ ଥର ସେଇଠି ପଡ଼େ । ପଚେଇ ସ୍ନେହ ମୁଗ୍ଧ ଦୃଷ୍ଟି କହୁଥାଏ, ଠିକ୍ ହୋଇଛି, ସୁନ୍ଦର ହୋଇଛି, ମନ ମୋହୁଛି, ଧ୍ୟାନ ଟାଣୁଛି, ଧୈର୍ଯ୍ୟ ଦୋହଲାଉଛି । ମୁଁ ଏହା ପସନ୍ଦ କରୁଛି । ଅବିକଳ ଚିତ୍ରତାରକା ଶ୍ରୀମତୀ ଅସୀମାଙ୍କ ପରି ତମେ ଦିଶୁଛ ।

କିଏ ସଜାଇଛି ?

ଏଇ ଦେହରେ ସରଗର ଅଖି ଝଲସା ମନ-ପରସା, ଦେହ ହଳୁସା ପ୍ରାଣ ପୁଲକ ଅସୀମ ସୁଷମା ଅଛି, ପୁଣି ଅଛି ନରକର ଆଖି ଫୁଟା, ନାକ-ଫଟା, ମନ-ଖଟା, ଇସିଇସି କୁତ୍ସିତତା । ବିକାଶରେ କେବଳ ଏ ଦେହର ସୁଷମା ବା ହୀନତାର ପରିଚୟ ମିଳେ ।

କିଏ ସଜାଇଛି, ବାଃ, ଅତନୁଙ୍କର ବିହ୍ୱଳ ଦୃଷ୍ଟି ପଚ୍ଛରେ ।

ଲଲିତାର ଉଡ଼ନ୍ତା ମନରେ ଗରବ ଆସେ । ତା'ର ଲୋହିତ ସ୍ମିତ ହିଁ ଉତ୍ତର ଦିଏ, ମୁଁ, ମୁଁ ନିଜେ, କେହି ମତେ ଶିଖାଇନାହିଁ । ଦେଖ, ସୁଖୀ ହୁଅ !

ଉତ୍ତର ଦିଏ ଅତନୁଙ୍କର ଭ୍ରମିଲା ଆଖି, ହସିଲା ଓଠ, ତନ୍ମୟ ହେଲ । ନିଅ ଫ୍ରି-ପାସ୍ । ମଟର ପଠାଇବି ?

ସୁନନ୍ଦର କାବା କାବା କୁହୁଡ଼ିଆ ସନ୍ଦେହରେ ଅଳପ ଅରିଲ ମନ, ନିଜକୁ ନିଜେ ନୀରବରେ କହେ, ଅତନୁର ଦୃଷ୍ଟି ପବିତ୍ର ନୁହେଁ, ପରର ଧାରୁଆ ହେବା ନାହିଁ ଲଳିତା !

ଲଳିତାର ହସହସ ମନ ଉପହାସ କରି ଉଠିଲ ଦାଏ ନିଜ ଭିତରେ, ଡରିଲ କି, ସନ୍ଦେହ କରୁଛ ? ତାଙ୍କୁ ମନା କରିଦିଅ । କହ, ମୋ ଦେହ ଭଲ ନାହିଁ ।

ସୁନନ୍ଦ ତା'ର ମନ କଥା ବୁଝିଲ ପରି ଏଣୁ ତେଣୁ ଆରି ଦେଇ କହି ଅତନୁଙ୍କୁ ହଲାଣ କରି ବାହୁଡ଼ାଏ ।

ସକାଳ ଗାଡ଼ିରେ ସୁନନ୍ଦ ପୁରୀ ଚାଲିଗଲେ ।

ଦିନ ଦଶଟାବେଳେ ସେଇ ଅବାଗିଆ, ଅଧବାଇଆ ଟୋକା ଆସି ପହଞ୍ଚିଲ । ତା ନାମ ମନୋରଞ୍ଜନ । ସେ ଫଟୋ ଉଠାଏ । ସେଇ କାମରେ ତାର ଝୁଙ୍କ । ସୁନନ୍ଦ ତାକୁ ସ୍ନେହ କରେ ।

ମନୋରଞ୍ଜନ ପାଠୁଆ ପିଲା । ସେ ସରଳ, ସୁବୋଧ ଓ ସାଧୁ ପ୍ରକୃତିର । ତା'ର ଶିଶୁସୁଲଭ ସରଳତା, ବିକାରହୀନ, ନିର୍ଭୀକ ସଙ୍କୋଚ । ରୂପ ତାର ପରି ଉଜ୍ଜ୍ୱଳ । ପାତଳ ଦେହ । ଡେଙ୍ଗାଳିଆ । ଧାର ମୁହଁ । ବିଜୁଳି ପରି ତା'ର ଚଞ୍ଚଳ ଗତି । ଅସଜଡ଼ା କେଶ । ମୁହଁରେ କେବେ କ୍ଷୁର ବାଜିନାହିଁ । କହରିଆ ଗ୍ରେଷ୍ଠ ଗ୍ରେଷ୍ଠ ନିଶଦାଢି । ଉଜ୍ଜ୍ୱଳ ଆଖି । ପରିଷ୍କାର ପରିଚ୍ଛନ୍ନ । ଝଙ୍କ୍ରିଲ ପରି ମୁକ୍ତା ପରି ଦାନ୍ତ ଦ' ଧାଡ଼ି ।

ସେ ଅଳପ ହସେ । ହସିଲେ ତୋରି ମୁହଁଟି କେଡ଼େ ଭଲ ଦିଶେ । ଅଳପ କହେ,—ମୁହଁ ସାମାନ୍ୟ ଟେକନ୍ତୁ । ବାସ୍, ସେତିକ । ଶାଢ଼ୀଟା ସାମାନ୍ୟ ଉଠାନ୍ତୁ, ମୁଣ୍ଡ ଉପରକୁ ବେଶି ଉଠିଗଲ । ହାରି ଏକାଥରେ ଲୁଚିଗଲା ଯେ ! ରହନ୍ତୁ ।

ବିଜୁଳି ବେଗରେ ମନୋରଞ୍ଜନ ପାଖକୁ ଆସେ । ଫେରିଯାଏ, କହେ, ହଁ, ଏଥର ହେଲା । ହସନ୍ତୁ । ଏକ୍, ଦୁଇ, ତିନ୍ '

ନମସ୍କାର ।

ଭଲ ଛବି ବୋଲି ମନୋରଞ୍ଜନ କହୁଥିଲେ । ଯେ ଆଜି ସିବେ । ସେ କହନ୍ତି, ମୁଁ ଛବି ଦେଖିବାକୁ ଯାଏ ନାହିଁ, ଏ ଯୁଗର ଫେସନ ଦେଖିବାକୁ ଯାଏ । ସିନେମା ତାରକାମାନଙ୍କର ଫେସନ ଓ ଚାଲିଚଳନକୁ ଲୋକେ ଅନୁସରଣ କରିବାକୁ ବ୍ୟାକୁଳ । ମୁଁ ସେଇଆ ଦେଖେ ।

ନଅନ୍ତୁ ଆପଣଙ୍କର ବଡ଼କରା ଫଟୋ, ଆଉ ଏଇଟା ଶ୍ରୀମତୀ ଅସୀମା ଦେବୀ ଚକ୍ରବର୍ତ୍ତୀଙ୍କର ! ଅପସରା ଛବିରେ ସେ ଉର୍ବଶୀ ହୋଇଛନ୍ତି । ମିଳାଇ ଦେଖନ୍ତୁ ।

ତଫାତ୍‌ ଟିକିଏ ଅବଶ୍ୟ ଦେଖିବେ । ଅସୀମାଙ୍କର ମୁହଁର ଗଠଣ ଏଡ଼େ ସୁନ୍ଦର ନୁହେଁ । ଦେହରେ ସେ ପାଉଡର ବୋଳିଛନ୍ତି । ସେ ଟିକିଏ ଅଧିକ ନଗ୍ନତାର ପକ୍ଷପାତୀ ।

ଲଳିତା ପ୍ରଫୁଲ୍ଲ ବଦନରେ ମିଳାଇ ଦେଖିଲା । ସେ ହୁଏତ ଅଧିକ ସୁନ୍ଦର ହୋଇଥିବ; କିନ୍ତୁ ଅସୀମାଙ୍କ ମୁହଁରେ ହସ, ଆଖିର ଚାହାଣୀ, ଦେହର ଅର୍ଦ୍ଧପରିସ୍ଫୁଟ ଭଙ୍ଗୀ, ତା' ଫଟୋରେ ନାହିଁ ।

ତା'ର ମୁହଁ ମଉଳିଲା । ସେ ବୁଝିପାରିଲା ଯେ ସେ ଉର୍ବଶୀ ହୋଇପାରି ନାହିଁ, କି ଅସୀମା ମଧ୍ୟ ହୋଇପାରି ନାହିଁ ।

ମନୋରଞ୍ଜନ କହିଲା, ଯେଉଁ ତଫାତ୍‌ ଦେଖୁଛନ୍ତି, ସେଥିପାଇଁ ଫଟୋଯନ୍ତ୍ର ଦାୟୀ ନୁହେଁ କି ଫଟୋଗ୍ରାଫର ଦାୟୀ ନୁହେଁ । କୁଳବଧୂ ଓ ଚଳଚ୍ଚିତ୍ରତାରକା ଭିତରେ ଏ ପ୍ରଭେଦ ରହିବ ଓ ରହିବା ଅତି ବାଞ୍ଛନୀୟ । ଦେଖନ୍ତୁ ଅସୀମାଙ୍କର ଛବି । ଏଥର ଦେଖନ୍ତୁ ନିଜର ଛବିକୁ । ଅବଶ୍ୟ ପସନ୍ଦ କରିବେ ।

ଲଳିତା ହସ ସମ୍ଭାଳି ପାରିଲା ନାହିଁ । ଚାହିଁଲା ସେ ମନୋରଞ୍ଜନଙ୍କୁ । ସେମିତି ସେ ଗମ୍ଭୀର । ବିଦାୟ ନେବାକୁ ବାହାରିଲାଣି ।

ଲଳିତା କହିଲା, ସିନେମା ଗଲାବେଳେ ଏଇବାଟେ ଆସିବେ ? ମୁଁ ବି ସଙ୍ଗରେ ଯିବି ।

ସୁନନ୍ଦବାବୁ ?

ସେ ପୁରୀ ଯାଇଛନ୍ତି । ରାତି ଏକ୍‌ସପ୍ରେସ୍‌ରେ ଫେରିବେ ।

ମୁଁ ଡେରି କରି ଯାଇଥାନ୍ତି ଓ ଫେରିଥାନ୍ତି ସହଳ । ବେଶି କାମ ମୋର ଅଛି ।

ନାଇଁ, ଆଜି ଟିକିଏ ସହଳ ଯାଉନ୍ତୁ; ଡେରିକରି ଫେରିବେ । ଆପଣଙ୍କର ବିଲ୍‌ ?

ସୁନନ୍ଦବାବୁଙ୍କୁ ପଠାଇଦେବି । ନମସ୍କାର ।

ଆସିବେ ନିଶ୍ଚୟ ।

ନମସ୍କାର ।

କେତେଥର ଲଳିତା ଅନୁରୋଧ କରିଛି; ମନୋରଞ୍ଜନ ଆସିନାହିଁ । ଦେଖା-ହେଲେ ଏଣୁ ତେଣୁ କୈଫିୟତ୍‌ ଦେଇଛି । ଆଜି ଯେ ସେ ଆସିବ ତା'ର କେଉଁ ସ୍ଥିରତା ? ସେ ଆସୁ ବା ନ ଆସୁ, ଲଳିତା ନିଶ୍ଚୟ ଯିବ; ସିନେମା ଦେଖିବ । ରବିକୁ ସଙ୍ଗରେ ନେଇଯିବ । କାର୍‌ ପଠାଇବାକୁ ଅତନୁବାବୁଙ୍କୁ ଫୋନ୍‌ କରିବ କି ?

ଶାଶୁଙ୍କର ଦେହ ବେମାର । ସଙ୍ଗେ ସଙ୍ଗେ ଗ୍ରାମକୁ ଯିବା ଉଚିତ୍ । ଭଲମନ୍ଦ ହୋଇଗଲେ କାଳକାଳକୁ କଥା ରହିବ । ଗାଁ ଲୋକେ ନିନ୍ଦା କରିବେ । ସେମାନଙ୍କ ନିନ୍ଦାପ୍ରଶଂସାକୁ ଏଡ଼ିଦେଇହେବ; କିନ୍ତୁ ସେଇ 'ଧା' ଦିନେ କହିବ ଆମେ 'ବା' ଗୃହର କାହିଁକି ତ, ଶାଶୁ ମଲାବେଳକୁ ତୁଣ୍ଡରେ ବୁନ୍ଦାଏ ନିର୍ମାଲ୍ୟ ପାଣି ଦେଇପାରିଲୁ କି ?

ଜନମକଲା ମା ! ଦିନେ ପୁଣି ସେଇ ସ୍ୱାମୀ ଓଲଟି କହିବେ ଆଉ ଗୋଟାଏ ଶାଶୁ କାହାର ଜନମ ହୁଏ ନାହିଁ । କାହାର ସେବା କରିବ ?

ଲଳିତା ଉଠି ବସିଲା । କେଶବାସ ଫିଟିପଡ଼ୁଛି । ମୁଣ୍ଡ ଘୂରିଯାଉଛି ମଥା ଉପରର ବିଜୁଳି ପଙ୍ଖା ପରି । ଦି'ପହରର ଖରା ଘର ବାହାରେ ଉପହାସ କରୁଛି । ବାଉ ଦି'ଟା ରଡ଼ି ଛାଡ଼ିଲେଣି । କ'ଣ ଡେରେ ହୋଇଗଲା କି ?

ଲଳିତା ଠିଆହେଲା । ଝରକା ପାଖକୁ ଯାଇ ପଦାକୁ ଚାହିଁଲା । ନିରୁପାୟ । ସ୍ୱାମୀ, ସେ ରାତିରେ ଫେରିବେ । ରାତି ପାହିଲେ ସମସ୍ତେ ଗ୍ରାମକୁ ଯିବେ । ଶାଶୁ ଏତେଦିନ ବଞ୍ଚିଲେଣି, ଆଉ ଦିନଟିଏ ଅବଶ୍ୟ ବଞ୍ଚିବେ । ଠାକୁରେ ଏତିକି କରନ୍ତୁ ।

ମନ ଖରାପ ହେଉଛି । ଘରେ ଏକା ରହି ଛଟପଟ ହେବା ଉଚିତ ନୁହେଁ । ଭଲ ଛବି ଆସିଛି, ଅପ୍‌ସରା ! ଦେଖିଆସିଲେ ମନର ଅବସ୍ଥା ବଦଳିବ । ମନୋରଞ୍ଜନ ଫଟୋଗ୍ରାଫର ନ ଆସିଲେ ନାହିଁ । ଫୋନ୍ କଲେ ଅତନୁବାବୁ ଆସି ନେଇଯିବେ ।

ପାଖରେ କିଏ ଜଗି ବସିଛି । ରାତି ଅଧରେ ବି କାଳୀ ଗାଈଟା ରହି ରହି ବୋବାଳି ଛାଡ଼ୁଛି ତାର ପିଲାକୁ । କନକକୁ ବିରକ୍ତ ଲାଗିଲା । କୁଆଡ଼େ ଗଲା ଗନ୍ଧଆ ସଅର, ଗାଈ ଆଗରେ କେରାଏ କୁଟା ପକାଇଦେଲେ ସେ ଚୁପ୍ ହୁଅନ୍ତା ! ତା' ରଡ଼ିରେ ଭାଉଜଙ୍କର ନିଦ ଭାଙ୍ଗିଯିବ ।

କନକ ଧୀରେ ଧୀରେ ପଲଙ୍କ ଉପରୁ ଉଠିଲା । ମଶାରି ଟେକି ପଦାକୁ ଆସିଲା । ଝରକା ବାଟେ ବାହାରଟା ଦିଶୁଛି । ଉଜ୍ଜ୍ୱଳ ଜହ୍ନ ଆଲୁଅ । କାହାର ସ୍ୱର ଶବଦ ନାହିଁ । ରହି ରହି କାଠହଣା ଚଢ଼େଇର ଠକ୍ ଠକ୍ ଶବଦ ଶୁଭୁଛି । କେଜାଣି କାହିଁକି ଆଜି ଡର ଲାଗୁଛି ।

ବାହାର ପାଖର ଝରକା ଦି' ଫାଳ ଆଉଜେଇ ଆଣିଲା । ଆଲୁଅ ତେଜିଲା । ମଶାରି ଅଳପ ଟେକି ପୁଣି ଚାହିଁଲା ନନ୍ଦବାର ମୁହଁକୁ । ନିଦରେ ସେ ଶୋଇଛି । ଘନ ଘନ ନିଶ୍ୱାସ ବହୁଛି । ଯେତେ ଦେବାଦେବୀ ଏ ସଂସାରରେ ଅଛନ୍ତି, ସମସ୍ତଙ୍କୁ ସୁମରଣା କଲା । ତା'ର ପ୍ରାଣ ଲେଉଟିପଡ଼ିଲା ସଭିଙ୍କର ଆସ୍ଥାନ ତଳେ । ମନ ଗୁହାରି କଲା, ମୋ

ଭାଉଜଙ୍କୁ ଭଲ କରିଦିଅ । କାହିଁକି ଅନାହୂତ ଏ କଷ୍ଟ ଦେଲ ? ମାଛକୁ ଯେ ମ ନ ଖାଏ, ତା ଉପରେ କି ଦାଉ ସାଧୁଛ ?

ଆଠ ମାସ ପୂରି ନଅ ମାସ ପଶିବାକୁ ବସିଲା । ଅସଜ ମାଇପୀ, ତଥାପି ମନାକଲେ ମାନିବେ ନାହିଁ, ନଇଁ ପଡ଼ି ଉଠି ସବୁ ଧାଇଁ ନିଜେ କରିବେ । ସକାଳୁ ରାତି ଅଧଯାଏ ଶାଶୁଙ୍କ ସେବା । ଜନମକଲା ପିଲାଙ୍କର ସେବା କେହି ଏତେ କରିପାରିବ ନାହିଁ । ହାତରେ ଖୋଇଦେବେ, ଘଷା ଆଉଁସା, ସଫାସୁତୁରା ସବୁ କରିବେ । ନିଜର ଖିଆପିଆର ଠିକଣା ନାହିଁ । ରାତି ଅନିଦ୍ରା ହୋଇ ଜଗି ବସିବେ । ଦେହ ଆଉ କେତେ ସହନ୍ତା ? ନିଜେ ପଡ଼ିଲେ ।

ଗାଆଁ ମାଇପେ ଦେଖିବାକୁ ଆସିଲେ । କିଏ କହିଲା ଲକ୍ଷଣ ଦେଖି ବାଣ ପେଶେଇଛି, କାଳଗିଣିକା ଶର, ନୋହିଲେ ଭଲ ମାଇପଟା ଆଉଯାଉ ହେଉଥିଲା, ହଠାତ୍ ସକାଳଟାରୁ ଲହୁଲୁହାଣ ହୋଇ ବସନ୍ତା କାହିଁକି ? ଶୂଳ ନାହିଁ, ପିଲା ଜନ୍ମ ହେବାର ସମ୍ଭାବନା ନାହିଁ, ବେଳ ବି ହୋଇନାହିଁ, ବାଣ ଛଡ଼ା ଆଉ କିଛି ନୁହେ !

ଗୁଣିଆ ଝାଡ଼ିଯାଉଛି । କବିରାଜ ଔଷଧ ଦେଇଛନ୍ତି । ମହାଦେବଙ୍କ ପଣ୍ଡା ଆସି ବେଲପତ୍ର ପାଣି ଛିଞ୍ଚି ଦେଇ ଯାଇଛନ୍ତି । ଭୟ ନାହିଁ । ତଥାପି, କାନ୍ତର ମନ ଦକ ଦକ । ଦେବାଦେବୀଙ୍କ ପାଖରେ କେତେ ମାନସିକ କଲାଣି, ସବୁ ଭଲ ହୋଇଯିବ ଯେ ।

ପୁଣି ସେଇ କାଳ ରାତି ଉଡ଼ି ଘୁଞ୍ଚିଲାଣି । ନିଦ ଭାଙ୍ଗିବ । କୁଆଡ଼େ ଗଲ ରାଧିଆ ? କାନ୍ତ ଆଉଜା କବାଟ ମୁକୁଳା କଲା । ଶବଦ ହେଲା । ମଶାରି ଭିତରୁ କ୍ଷୀଣ ଦୁର୍ବଳ ସ୍ୱରରେ ଡାକ ଶୁଭିଲା ନଥକା, କାନ୍ତ !

କ'ଣ ଭାଉଜ ?

କାନ୍ତ ପଲଙ୍କର ପାଖକୁ ଆସିଲା, ମଶାରି ଅଳପ ଟେକିଲା । ନଥକା ଉଠିଲାଣି । ବଲବଲ କରି ଚାହୁଁଛି । କାହାକୁ ଯେପରି ଖୋଜୁଛି ।

ନା, ସେ ଆସି ନାହାନ୍ତି । କାଲେ ଡେରି ହେବ ବୋଲି ଲୋକ ହାତରେ ରାତି ପାହାନ୍ତାରୁ ଚିଠି ପଠାଇଥିଲି । ରାତି ପାହିଲେ ଦୁଇଦିନ ହେବ । କାହିଁକି ସେ ଆସିଲେ ନାହିଁ ? ଦେହ ଭଲ ଅଛି ତ ? ଲୋକ ଏବଯାଏ ଫେରିନାହିଁ କାହିଁକି ? 'କା'ର ଦେହ ଭଲ ନାହିଁ କି ?

ମନ ହେଉଛି ପାଖକୁ ଧାଇଁଯିବ । ଏଥିକିବେଳକୁ ତା'ର ଦେହ ଖରାପ ହେଲା । ମୁଣ୍ଡ ବୁଲାଉଛି । ଗୁଡ଼ ଥରୁଛି । ପେଟ ଭିତରେ ପିଳ୍ଟା କଲବଲ ହେଉଛି । ଆରେ, ବୋଉଙ୍କ ପାଖରେ କିଏ ଅଛି ? କାନ୍ତ ତ ଏଇଠି । ପିଲାକୁଆବାଳୀ ସୁମିତ୍ରା, ଗୁଡ଼ୁଲି ଗାଡ଼ିର ପିମ୍ପୁଡ଼ାଙ୍କ ଘରେ ଗୁଡ଼ ବୁଢ଼ୀଙ୍କର ସେବା କରିବାକୁ ଧାଇଁଆସିଛି । ଅଲୁଣି ବାଲୁଣି । ଭଲଦିନେ ବୋଉ ତା ଉପରେ ଚଢ଼ାଚଢ଼ି ହୁଅନ୍ତି । ଜାଣିକରି ତ ସେ ବେମାର !

ଆଉ କେହି ପାଖକୁ ଆସୁନାହାଁନ୍ତି । ସମସ୍ତେ ଶାଶୁଙ୍କର ଶଙ୍ଖା ଖୋଜୁଛନ୍ତି, ଅଶୁଭ ଖବର ପାଇବେ । ଝିଆ' ମାନେ ଆସି ଆହା ଉହୁ ହୋଇ ଗଲେଣି । ଶୁଭ ମନାସିଲେ, ଏଇଥର ବୁଢ଼ୀ ମୁକ୍ତି ପାଇଯିବେ, ଆହା କେତେ କଷ୍ଟ ପାଇଲେଣି, ପାଚିଲା ପତର ।

ମୁକ୍ତି ପାଇଯିବେ ? ମନକାମନା ପୂରଣ ହେବ ନାହିଁ ? ସବୁ ତପସ୍ୟା ତାଙ୍କର ବ୍ୟର୍ଥ ହେବ ?

କଟକରୁ ସେମାନେ ଆସିଲେ ନାହିଁ ? ବୁଢ଼ୀ ପୁଅ ମୁହଁ ଦେଖିବେ ନାହିଁ ? ସତେ ସେ ଚାଲିଯିବେ ? ମନକାମନା ପୂର୍ଣ୍ଣ ହେବ ନାହିଁ ?

ପିଠି ଆଉଁସୁଛି ନନ୍ଦ ।

ନନ୍ଦ ଲୋ—

କଅଣ, ଭାଉଜ ?

ବୋଉଙ୍କ ପାଖରେ କିଏ ଅଛି ?

ସୁମିତ୍ରା ଭାଉଜ, ପାଲୁଣୀ । ସେ ଭଲ ଅଛନ୍ତି । ଠୋ ଠୋ କଥା କହୁଛନ୍ତି, ଔଷଧ ଖାଉଛନ୍ତି । ପିଇବାକୁ ସାଗୁପାଣି ଦେଲେ ଢକଢକ କରି ଢୋକିଦେଉଛନ୍ତି । ସେ ଭଲ ହୋଇଆସୁଛନ୍ତି, ଚିନ୍ତା କର ନାହିଁ । ମାଗିକରି ଫଳରସ ଖାଉଛନ୍ତି ।

ମିଛ କହୁଛ '

ଆଖି ଛୁଇଁଛି ।

ନନ୍ଦିକା ରୁନ୍ଧି ହେଲା । ମନରେ ଆସିଲା ଅଶୁଭ ଭାବନା, ଦୀପର ତେଲ ସରିଆସିଲା କି, ସଳିତା ଜଳୁଛି, ଲିଭିଯିବ ? ଏଁ, ସତେ ଲିଭିଯିବ ? ପୁଅ ମୁହଁ ଦେଖିବେ ନାହିଁ, ସପନ ସତ ହେବ ନାହିଁ ?

ନନ୍ଦିକା ବିଚଳିତ ହେଲା । ଖଟ ଉପରୁ ଓହ୍ଲାଇବାକୁ ଗୋଡ଼ ବଢ଼ାଇଲା ।

ଏ କଅଣ କରୁଛ ?

ବୋଉଙ୍କୁ ମୁଁ ଦେଖିବାକୁ ଯିବି । ମୋ ଦେହ ଭଲ ଲାଗୁଛି । ଦୁଇଦିନ ହେଲା ବିଛଣାରେ ପଡ଼ି ଭଲ ଲାଗୁନାହିଁ । ଦି'ଦିନ ହେଲା ତାଙ୍କୁ ମୁଁ ଦେଖିନାହିଁ ନନ୍ଦ, ମତେ ସେ ଖୋଜୁଥିବେ । ତମେ ଖାଲି ଟିକିଏ ମୋର ହାତ ଧର, ମୁଁ ଚାଲିଯିବି ।

ଛି, ଅଝଟ ହୁଅନା, ମୋ କଥା ମିଛ ମଣ ନା, ସେ ଭଲ ଅଛନ୍ତି । ସଞ୍ଜବେଳେ ପାଲୁଣୀର ହାତ ଧରି ସେ ତମକୁ ଦେଖିବାକୁ ଆସିଥିଲେ । ତମେ ଶୋଇଥିଲ । ତମ ମୁଣ୍ଡ ଆଉଁସିଲେ, ଗେଲ କଲେ, ଫେରିଗଲେ ।

ସତେ ନନ୍ଦ ?

ନନ୍ଦକାର ମୁହଁ ଉଜ୍ଜ୍ୱଳ ଦିଶିଲା, ଓଠରେ ହସ ଚହଟିଲା । ଗେଲ କଲେ ? ସେ ଜାଣି ପାରେ ନାହିଁ । ଶୋଇଲାବେଳେ ଏମିତି ସେ କେତେ ଗେଲ କେବେ କରୁଥିବେ, ନଅ ବରଷ ହେଲା, ଲୁଚି ଲୁଚି । କେହି ଦେଖି ନାହିଁ ତାହାକୁ ସେ ଜଣେଇ ଦେଇ ନାହାନ୍ତି । ଏବେ ନନ୍ଦକା ଜାଣି ପାରେ ନାହିଁ । ଆଖି ମେଲି ଚାହିଁଛୁ, କେତେଥର ଦେଖିଛୁ, ଶାଶୂ ପାଖରେ ଠିଆ ହୋଇଛନ୍ତି । ହସହସ ମୁହଁରୁ ଅମୃତ ବଚନ ବାହାରୁଛି, ଉଠିବୁ ନାହିଁ କି ମା, ମୁଣ୍ଡ ବାନ୍ଧିବୁ ନାହିଁ ? ଖାଇବୁ ନାହିଁ ?

ମିଛ ମଣୁଛୁ? ତମ ବାଁ ଗାଲରେ ହାତ ମାରୁନା, ମନକଲେ ନାଲ ଲାଗିଥିବ ।

ଚନ୍ଦ ହସିଲା ।

ସେତକ ମୋ'ର ଗଉରବ ଲୋ ଚନ୍ଦ, ହାତ ମାରିଲେ ଉଣା ହୋଇଯିବ ।

ଆଉ ଗାଲଟି ଖୋଲି ପଡ଼ିଛି ଭାଉଜ !

ତମ ଭାଇ କଅଣ ଆସିବେ ନାହିଁ କି ? ରାତ ଅଧରେ ଦନେ ଦନେ ସେ ଆସି ପହଞ୍ଚନ୍ତି । ଲଳିତା ବି ଆସୁଥିବ ।

ଗେଲ କରିବି କି ?

ଥାଉ, ଉଣା ହେବ ତୁମ ସଞ୍ଚିତ ସମ୍ପଦ ।

ଚନ୍ଦର ଆଖିରେ ଲୁହ । କହିଲା, କେବେ କ'ଣ କହିଥିଲି, ମନେ ରଖିଛ, ଅଭିମାନ କରିଛ ? ମୁଁ ଗେଲ କରିବି ।

ଚନ୍ଦ ନନ୍ଦକାର ମୁହଁକୁ ନୁଆଁଇଆଣିଲା । ତା'ର ଆଖିର ଲୁହବୁନ୍ଦା ନନ୍ଦକାର ହାତରେ ପଡ଼ିଲା ।

ନନ୍ଦକା ମୁହଁ ବୁଲାଇ ଖଟରୁ ଓହ୍ଲାଇ ତଳେ ଉଭାହେଲା । କହିଲା, ମୋ ହାତ ଧରି ଚାଲ, ମୋତେ ବୋଉଙ୍କ ପାଖକୁ ନିଅ । ମୋ ଦେହ ଭଲ ହୋଇଗଲାଣି ।

ତମେ ଖଟ ଉପରେ ବସିଥା, ମୁଁ ଆଗ ଦେଖି ଆସେ ସେ ଶୋଇଛନ୍ତି କି ଚେଇଁଛନ୍ତି । ଶୋଇଲା ରୋଗୀକୁ ଉଠାଇବା ଭଲ ନୁହେଁ ।

ନନ୍ଦକାର ହାତ ଧରି ପଲଙ୍କ ଉପରେ ବସାଇଦେଲା । କବାଟ ଆଉଜାଇ ଆର ଖଞ୍ଜାକୁ ଚାଲିଗଲା ।

ସେ ସୁମିତ୍ରା ଆଗରେ ଗପୁଛନ୍ତି । କାନ୍ଥକୁ ଆଉଜା ବସିଛନ୍ତି । ହାଡ଼ମାଳ ଦେହ, କୋରଡ଼ିଆ ଆଖି । ଗପୁଛନ୍ତି ଭଲ ମଣିଷ ପରି, ତୋ ହାତରେ ଅମୃତ ଅଛି ଲୋ ବୋହୂ, ହେଇ ଦେଖ୍, ମୁଁ ଉଠି ବସିଲିଣି । ଗୁଲକର ପଦାକୁ ଗଲିଣି ଦ ଥର । ମୋ ଦେହ ଭଲ ହୋଇଗଲା, ମରଣ ହେବ ନାହିଁ ଲୋ — ।

ଏବେ ଗପ ନା, ବୋଉ, ଶୋଇପଡ଼ ।

ନିଦ ହେଉ ନାହିଁ । ନିଦଆ ମୋ'ର ଆଉ ନାହିଁ । ସେଇ ରକ୍ଷାସୁଣୀ ତାକୁ ମନା କରିଥିବ । ନିଜେ ମୁଁ ଜହର ଖାଇଛି, ଜଳପୋଡ଼ି ମଲେ କାହା ଦୋଷ ଦେବ ?

ବାର୍ଲି ଟିକେ ଦେବ ?

ଆଣ୍ । ଦିନ ଦୁଇଟାରେ ଦୁଇ ହାଣ୍ଡି ସାଗୁବାର୍ଲି ମତେ ପେଇଲୁଣି । ତୋ ହାତରେ ଅମୃତ ଅଛି, ବୋହୂ !

ଆଉ ?

ନା । ସେଇ ମ, ଶ୍ରେଷ୍ଠଘର ଝିଅ, ପୁଅକୁ ମୋର ଶିଖେଇ ମନ୍ତେଇ ଜମି ବିକେଇଲା । ମୋ ବୋହୂଠାରୁ ସବୁ ଧନଦରବ, ଗହଣା ଗଣ୍ଠି ଓଟାରି ନେଲା । ନିଧିଙ୍କୁ ମତେ ଲୁଚେଇଛି । ମୁଁ ସବୁ ଜାଣେ ଯେ !

ଶୋଇପଡ଼ ଟିକେ ।

ନିଦ ମାଡ଼ୁନାହିଁ ।

ଔଷଧ ଦେବ ?

ଦେ । କେତେ ଖୋଇବୁ ? ଆଉ ଲୋଡ଼ା ନାହିଁ, ଯମ ମୋତେ ଗୁଞ୍ଜି ପକେଇଲଣି । ବୋହୂ ମ, ଅଳ୍ପ ଏ ଗାଆଁ ମଶାଣିକ ଗୁହଁ ରହିବ ନାହିଁ । ଜମି ଗଲା, ଧନ ଦଉଲତ ଗଲା, ଶିରୀ ତୁଟିଲା ଏ ଘରର, ସେଇ ବୋହୂଟା ପାଇଁ । ସେ ଆଉ ଫେରିବ ନାହିଁ, ନିଧିଅକୁ ଛାଡ଼ିବ ନାହିଁ, ଶ୍ରେଷ୍ଠ ଘରର ଝିଅଟା !

ଠିଆ ହେଲ ବୋଉ, ଲୁଗା ପାଲଟେଇ ଦିଏଁ । ମତେ ଧରି ଠିଆ ହୁ ।

ପାଲୁଣୀ ମଲା କି ?

ବୁଢ଼ୀ ହେଲା, ଘୁମେଇ ପଡ଼ିଥିବ । ହଁ, ହେଲା । ଏଥର ଶୁଅ । ମୁଁ ଗୋଡ଼ ଆଉଁସିଦିଏ ।

ଅଭୟା ଖଟ ଉପରେ ଶୋଇଲେ । ସୁମିତ୍ରା କୋଳରେ ଗୋଡ଼ ପକାଇ ଆଉଁସିବାକୁ ଲାଗିଲା । କହିଲା ବୋଉ ମ, ଶୁଣିଲ, ସାଆନ୍ତେ କୁଆଡ଼େ ପୁଣି ସେହି ପଦନା ମଲେଙ୍କୁ ଅଧେ ଜମି ବିକିଦେ । କୋଠା କାମ ହେଉନାହିଁ ।

ବରୁ ! ଥିଲେ ସେଇ ସେବା କରନ୍ତା, ନ ଥିଲେ ସେ ଦୁଃଖ ପାଇବ । ହେଲେ, ମୁଁ ତାହାଙ୍କ ଏଠି ରହିବ ? ଯଦି ମରଣ ହୁଏ, ଆଉ କଏ ତାହାଙ୍କ ମୋ ମୁହଁରେ ନିଆଁ ଦେବ ? ନନ୍ଦଆ ନ ଆସୁ, ମାଇପୀ ବୋଲନ୍ତା, ମୁଁ ଯିବ କଟକ ।

ଏ ଦେହରେ ?

ଭଲ ହୋଇଗଲଣି । ବୋହୂ ମ, ଦୁନିଆରେ ସବୁ ମଶାଣି ସମାନ । ଗୋଟାଏ ଦେହ ଜାଳଦେବାକୁ କେତେ ଜମି ଲୋଡ଼ା, କେତେ ତେଲ ଲୋଡ଼ା ? ସେ ଜମି ପୁଣି ସେମିତ ପଡ଼ିରହେ । କେହୁ ସଙ୍ଗରେ ନେଇ ଯାଏ ନାହିଁ । ଗାଁ ମଶାଣିରୁ ଆଙ୍ଗୁଳେ କ'ଣ ମତେ କଏ ଦେବ, ନା ମୁଁ ସାଙ୍ଗରେ ନେବ ? ମୁଁ କଟକ ଯିବ ।

ଅପା ?

ତା'ର କଥା ଭାବୁଛୁ । ଯେତେବେଳେ ସେ ଯାଇପାରଥାନ୍ତା, ଗଲା ନାହିଁ ମୋ'ର ପାଇଁ । କେମିତ ସେ ଯିବ ? ବୋହୂ ମ, ମୋ ନନ୍ଦବାର କଟୁ ପ୍ରାପ ହେବ ନାହିଁ ?

ଭୟ ନାହିଁ । କାହାର କେମିତ ଏପରି ହୁଏ । ନଅ ମାସ ହେଲା । ପ୍ରଥମ ପୋଖତ ହେବ, ଖିଆପିଆର ଠିକଣା ନାହିଁ । ସବୁବେଳେ ପରିଶ୍ରମ କଲେ, ଅନନ୍ତା ହେଇ ଜଗି ବସିଲେ, ସେବା କଲେ । ମନରେ ରହିଲା ଦକ । ଯାହାକୁ ମୁହୂର୍ତ୍ତେ ନ ଦେଖିଲେ ସାଆନ୍ତେ ଛୁଆଖାଇ ବାଲେଇ ପରି ହୁଅନ୍ତି, ସେଇ ପୁଣି କରଛଡ଼ା ଦେଇ ରହିଲେ । ମୁହଁଟାଣ କରି କଥା କହିଲେ ମନ ତ ଟାଣ ହୁଏ ନାହିଁ । ଅପା ବୁଝୁଛନ୍ତି । ଆଖି ନ କାନ୍ଦଲେ ବି ତାଙ୍କ ମନ କାନ୍ଦୁଛି ।

ମୋର ମରଣ ହେଉ ଲୋ ସୁମିତ୍ରା, କୋଉ ନାତ, କି ନାରୁଣୀ କାହାକୁ କେବେ ସ୍ୱର୍ଗକୁ ନେବା କଥା ମୁଁ ଜାଣିନାହିଁ । କି ପରି ବୋହୂକୁ ମୁଁ କି ଦୁଃଖ ଦେଲି ! ମୋର ମରଣ ହେଉ ମରଣ ହେଉ । ତମେ ସବୁ ମତେ ଛଟପଟ, କଲା ବଲା କରି ଦାଉ ସାଧିବାକୁ ଔଷଧ ପାଣି ଦେଇ ବଞ୍ଚେଇଛ, ନା ? ଆଉ ମୁଁ ନ ଖାଏଁ, ମୋର ମରଣ ଲୋଡ଼ା ।

କୋରଡ଼ ଆଖିରେ ଚଚଲା ଲୁହ । ଆତ୍ମା ଛଟପଟ ହେଉଛି, ବାହୁନ ଉଠୁଛି ।

ସେ କଥା କହନା ବୋଉ, ତମେ ଆଖି ବୁଜିଲେ ଅପାଙ୍କ ଗେହ୍ଲାପଣିଆ ମରିଯିବ, ତାଙ୍କ ଟାଣ ଭାଙ୍ଗିବ । ହାତ ବଢ଼ାଇଲେ ଆଉ ସେ ସାଆନ୍ତଙ୍କ ପାଦ ଧରି-ପାରିବେ ନାହିଁ । ତମେ ଥାଉଁ ଥାଉଁ ତ—

ଭୁ ସତ କହିଲୁ ଲୋ ସୁମିତ୍ରା, ମୁଁ ମରିବ ନାହିଁ, ମୁଁ ମରିବାକୁ ଚାହେଁ ନାହିଁ । ମୁଁ ଆଖି ବୁଜିଲେ ମୋ ସୁନାକଣ୍ଢେଇକି ଭଙ୍ଗଛଡ଼ା ଗୋବର ପିତୁଳା ପରି ଗୋଡ଼ରେ ସେମାନେ ଆଡ଼େଇଦେବେ । ମୁଁ ବଞ୍ଚିବ । ଦେ, ଦେ ମତେ ଆଉ ପାନେ ଔଷଧ ।

ଲୁହ ଛଳଛଳ ଦରଳଙ୍କ ଆଖିର ଆଲୁଅ ତେଜଲ ଦୀପବଳିତା ପରି ଜଳିଉଠିଲା ।

ଔଷଧ ପଥ୍ୟ ଖାଇଲ, ପୁଣି ଯାଇଁ ସକାଳେ ଖାଇବ ।

ଚାଲି ଦେବୁ ?

ଯାଉ ଆଉ ଘଣ୍ଟାଏ । ମୁଁ କହୁଛି ଏପାଙ୍କ ଦେହ ଟିକିଏ ବାଗେଇଗଲେ ତାଙ୍କୁ କଟକ ନେଇଯାଅ । ବାଟ ଅଳପ । ସବାରି ଗାଡ଼ି ବରାଦ କଲେ ସେମାନେ ହାଙ୍କିଲେ ହାଙ୍କିଲେ ନେଇଯିବେ । କଷ୍ଟ ଜଣା ପଡ଼ିବ ନାହିଁ । ଦେହରେ ଆଞ୍ଚ ଲାଗିବ ନାହିଁ । ବଡ଼ ବଡ଼ ଡାକ୍ତର ଅଛନ୍ତି ଶୁଣିଛି, ଦରକାର ପଡ଼ିଲେ ସେମାନେ ଆସି ପହଞ୍ଚିବେ । ଖଲାସ କରି ଦେବେ ।

ଯେତେ କହୁଛୁ ତ, ମୁଁ ବି ସଙ୍ଗରେ ଯିବି । ହସିଲା ମୁହଁରେ ଅଭୟା ପୁଣି କହିଲେ ସେଇଆ କରିବ । ଠାକୁରେ ତାଙ୍କୁ ଭଲ କରନ୍ତୁ । ମୋ ଜୀବନକୁ ପାଣି ଛଡ଼େଇ ମୋ ନନ୍ଦବାବୁ ଜୀବନକୁ ମୁଁ ଭିକ ମାଗିଛି । ମୋ ଗୁହାରି ଠାକୁର ନିଶ୍ଚେ ଶୁଣିବେ ।

କଳି ଧୀରେ ଧୀରେ ଘରେ ପଶିଲା । ଅଭୟାଙ୍କର କଥା ଶୁଣି ତା'ର ମନ କୁରୁଳି ଉଠିଲା । କଟକ ଯିବାକୁ ଅପା ରାଜି ହୋଇଛନ୍ତି । ସୁମିତ୍ରା ଖାଉଜ ବେଳ ଉଣ୍ଡି କାମ କରେ । ତା'ର ଗୋଡ଼ ଧରିବାକୁ କଳିର ମନ ହେଲା । ସାଥ ପାଇଲେ ସେ ଦ'ଣ୍ଡ ମଣିଷ ଠିକଣା କରିବ । ଘରେ ଦୁଇଟା ସବାରି ଅଛି । ଧୀରେ ଧୀରେ ଗଲେ ଛାଇଆ ବେଳକୁ କଟକରେ ପହଞ୍ଚିଯିବେ । ସଙ୍ଗରେ ଯିବ ଗଛଆ ସଅର । କଳି ନିଜେ ଯିବ । ଟିକିଏ କଷ୍ଟ ହେବ ହଁ; କିନ୍ତୁ କଟକରେ ପହଞ୍ଚିଲେ ସବୁ ଭଲ ହୋଇଯିବ । ଏ ଗାଆଁରେ ଯାହା ଭରସା ନାହିଁ । ସମସ୍ତେ ବଇରି ।

କି ଲୋ, ବୋହୂକୁ ମୋ'ର ଏକା ଛାଡ଼ିଆସିଲୁ କହି ବୁଢ଼ୀ ଉଠି ବସିଲେ । ରାଗିଲା ଆଖିରେ କଳିକୁ ଚାହିଁଲେ ।

କଳି କହିଲା, ତାଙ୍କର ନିଦ ଭାଙ୍ଗିଲାଣି; ସେ ଖଟ ଉପରେ ବସିଛନ୍ତି ।

ତା ବୋଲି ତାଙ୍କୁ ଏକା ଛାଡ଼ିଆସିବୁ ?

ତମ ପାଖକୁ ଆସିବାକୁ ସେ ଏକା ଜିଦ୍ ଧରି ବସିଛନ୍ତି । କହିଲେ, ବ'ଦିନ ହେଲା ବୋଉଙ୍କୁ ଦେଖିନାହିଁ; ମୁଁ ଯିବି । ତାଙ୍କ ଦେହ ଭଲ ଅଛି । ମୁଁ ମନା କଲି । ସେ ମାନୁନାହାନ୍ତି । ମୁଁ କହିଲି, ଦେଖିଆସେ, ଅପା ଶୋଇଛନ୍ତି କି ଚେଇଁଛନ୍ତି ।

ଅଭୟାଙ୍କ ଦେହରେ ନୂଆ ଜୀବନ, ନୂଆ ବଳ ସଞ୍ଚରିଲା । ସେ ତଳକୁ ଓହ୍ଲାଇଲେ । କହିଲେ, ମୁଁ ଭଲ ହୋଇଗଲିଣି । ମୋ ହାତ ଧର ଲୋ କନି, ମୁଁ ନିଜେ ଯିବି ମୋ ମାଆ ପାଖକୁ । ସେ କାହିଁକି ଆସିବ ?

ଅପେକ୍ଷା ନ କରି ଅଭୟା ଟଳିଟଳି ପଦାକୁ ଆସିଲେ । କନି ଓ ସୁମିତ୍ରା ଦୁହେଁ ତାଙ୍କର ଦୁଇହାତ ଧରିଲେ । ବିଳିବିଳେଇ ଉଠିଲା ପରି ପାଳୁଣୀ ଉଠି ଠିଆ ହେଲା । ଗଛଆ ସଅର ଠେଙ୍ଗା ଧରି ପିଣ୍ଡାରୁ ଓହ୍ଲେଇ ଆସିଲା ଅଗଣାକୁ ।

କାଳଗାଈ ଗୁହାଳ ଭିତରୁ ହମ୍ବାଳି ଛାଡୁଛି । ଶୀତଳ ଜୋଛନା ନେଳି ଆକାଶରୁ ଝରିପଡୁଛି । ମଥାନ ସେପାଖେ ଜହ୍ନ ମୁହଁ ଛପେଇଲାଣି ।

ବାଲ୍‌କୋନି ଉପରେ ପ୍ରଥମ ଧାଡ଼ିର ଯାଉଁଳି ସିଟରେ ବସିଛି ଲଳିତା, କଣ୍ଠ ସିଟ୍‌ରେ ରବି । ଛବି ଖେଳ ଆରମ୍ଭ ହୋଇନାହିଁ । ଅଖି ଆଗରେ ଧଳା ପରଦା । ଚାରଟିଏ ବି ସେଥିରେ ପଡ଼ୁନାହିଁ । ବାଜିକରର କୁହୁକ କାଠି ଛୁଇଁଲା ପରି ସେଇ ଶ୍ୱେତ ଚଉକୋଣିଆ ସଫେଦ ପରଦା ଉପରେ କେତେ କଅଣ ଘଟିଯିବ ଅନ୍ଧାରରେ । ଆଲୁଅ ଜଳିବ, ପୁଣି ଆଖି ଆଗରେ ଦିଶିବ ସେଇ ଧଳା ପରଦା ।

ତା ଆରି ଉପରେ ଠିଆହେବ ଆକାଶର ମଥାନଲଗା ସବୁଜ ପର୍ବତ, ସୀମାହୀନ ନୀଳ ସମୁଦ୍ର, ବିସ୍ତୀର୍ଣ୍ଣ ପ୍ରାନ୍ତର, ଧୂସର ମରୁଭୂମି, କୁଳୁକୁଳୁଗାମିନୀ ତଟିନୀ, ଜନବହୁଳ ମୁଖର ନଗରୀ, ଛବିଳ ପଲ୍ଲୀ, ଘୋର ଅରଣ୍ୟ, ପଶୁପକ୍ଷୀ, ମନୁଷ୍ୟ । ଭୁଲା ଅତୀତ, ଚଳନ୍ତି ବର୍ତ୍ତମାନ ଓ ଧାରଣାର ଭବିଷ୍ୟତ । ଜନମ, କର୍ମ, ରାଗରୋଷ, କୌତୁକ, ଆଶା ଦୁରାଶା, ପ୍ରେମ ଓ ବିଫଳତା, କନ୍ଦନ, ମରଣ ଅଥବା ମିଳନ ଓ ହାସ୍ୟ ।

ଆଲୁଅ ଜଳିବ, ପୁଣି ସବୁ ହେବ ଶୂନ୍ୟ, ଧଳା ପରଦା ।

ଲଳିତା ଗୁହିଁରହିଛି । ଏବେ ବି ଦେହ ଥରଉଠୁଛି । ସେ ସୁସ୍ଥ ବୋଧ କରୁନାହିଁ । ମନେ ହେଉଛି, ଯେପରି ସମସ୍ତଙ୍କର କଡ଼ୁଆ ଚାହାଣୀ ତା'ରି ଉପରେ ନିବଦ୍ଧ, ଯେପରି ତାର ଅଙ୍ଗ ବାସରେ ସମସ୍ତେ ମୁଗ୍ଧ । ଏଇଆ ସେ ଚାହିଁଥିଲା, ସେଇଥିପାଇଁ ନିଜକୁ ସେ ଅଧଲଙ୍ଗୁଳୀ ଅପ୍ସରୀ କରି ସଜାଇଥିଲା । ଦେହରେ ଆବୃତ କରିଥିଲା ସୁହୀନ ବସନ । ମୂଲ୍ୟବାନ ଗହଣା ମଣ୍ଡିଥିଲା ଅଙ୍ଗରେ । ଏସେନ୍ସ ଛୁଞ୍ଚିଥିଲା ପିନ୍ଧିଲା ଶାଢ଼ୀରେ । ଦର୍ପଣରେ ନିଜକୁ ଦେଖି ସେ ନିଜେ ସନ୍ତୁଷ୍ଟ ହୋଇଥିଲା, ମୁଗ୍ଧ ହୋଇଥିଲା । ଫୋନ କରିଥିଲା ଅତନୁବାବୁଙ୍କୁ । ଫଟୋଗ୍ରାଫର ମନୋରଞ୍ଜନ ଉପରେ ଅଭିମାନ କରିଥିଲା । ଅପେକ୍ଷା କରି କରି ସେ ଆସିଲା ନାହିଁ, ଛୁର ଫଟୋଗ୍ରାଫରଟା !

ଭଲ ଲାଗୁନାହିଁ । ଦେହ ଥରୁଛି । ଅତନୁବାବୁ କେଡ଼େ ଆଗ୍ରହରେ ସାମନା ସିଟ୍‌ର କବାଟ ଖୋଲିଦେଲେ । ହସି ହସି ଲଳିତା ପଶିଲା ନୂଆ କାର୍‌ରେ । ରଙ୍କ ପାଉଁ ପଛ ସିଟ୍ ।

ଅତି ଭଲ ମଣିଷ ସେ ଅତନୁବାବୁ, ସ୍ୱାମୀଙ୍କର ଅନ୍ତରଙ୍ଗ ବନ୍ଧୁ । କଥାକଥାକେ ହସ, ପରିହାସ । ନିଜେ ସେ ମଟରଗାଡ଼ି ଚଳାଉଛନ୍ତି । ଦେହକୁ ଦେହ ଲାଗୁଛି । ସଙ୍କୋଚ ନାହିଁ । ଦୂରେଇ ବସିବାର ଚେଷ୍ଟା ମଧ୍ୟ ଲଳିତାର ନାହିଁ । ଦୁଇଟି ମୁହଁ କେତେଥର ପାଖେଇ ଆସିଛି । ଝିମେଇ ଉଠୁଛି ଦେହ । କାର୍ ଅଟିଛି । ଖିର ପ୍ରଙ୍ଗଣରେ ବିଜୁଳିର ଚମକ ଛୁଟାଇ ଲଳିତାର ହାତ ଧରି ସେ କାର୍‌ରୁ ଓହ୍ଲାଇ ଆଣିଛନ୍ତି । ବାଟ କଢ଼ାଇ ଆଗରେ ଚାଲିଛନ୍ତି । କୃତକୃତ୍ୟ ହୋଇ ବସାଇଛନ୍ତି ବକ୍ସ ସିଟ୍‌ରେ ।

ଅତନୁବାବୁ ସିନେମା ଘରର ମାଲିକ୍ । ସେ ଚାଲିଯାଇଛନ୍ତି । ହିସାବପତ୍ର ତନ୍ଖି କରି ପୁଣି ଫେରିଆସିବେ ବୋଲି କହିଛନ୍ତି ।

ଧଳା ପରଦା ଉପରେ ଲଳିତାର ଆଖି । ମନ ଭ୍ରମୁଛି ନିଜର ଅନ୍ତର ଭିତରେ । ନୂଆ ଅଭିଜ୍ଞତା । ସେ ବିବାହିତା । ସେ କୁଳବଧୂ । ପର ପୁରୁଷ ସାନ୍ନିଧ୍ୟ ନିରୋଳାରେ ପାଇଛି, ଜୀବନରେ ପ୍ରଥମ ଥର । ସେ ବୟସ୍କ, ବିବାହିତ, ଦୁଇଟି ସନ୍ତାନର ପିତା । ତିନୋଟି ସନ୍ତାନର ପିତା ହେବାକୁ ବସିଛନ୍ତି । ପାର୍ବତୀ ପରି ସୁନ୍ଦରୀ ପତ୍ନୀ ସେ ବ ତରଲାଛନ୍ତି । ମୁହଁର ବାସ୍ନା ଓ ଦେହର ପରଶ ମନର ମୋହକୁ ଧନ୍ଦାରେ ପକାଇଛି ।

ଆଜି ନିଜେ ଲଳିତା ?

ସ୍ୱାମୀ ପ୍ରବାସରୁ ଫେରୁଥିବେ । କେଜାଣି ବା ଫେରିସାରିବେଣି । ଘରକୁ ଫେରିଯିବାକୁ ମନ ହେଉନି । ସିନେମାର ଛବି ଦେଖିବାକୁ ଆଗ୍ରହ ନାହିଁ । ଦେହ ଥରୁଛି । ଅତନୁବାବୁ ପୁଣି ଆସିବେ କହିଛନ୍ତି । ସୁପୁରୁଷ ! ରାଜପୁତ୍ର ! ସମସ୍ତେ ତା'ର ଆଡ଼କୁ ଏମିତି ଅନେଇ ରହିଛନ୍ତି କାହିଁକି ? କେତେବେଳେ ଆଲୁଅ ଲିଭିବ ? କେତେବେଳେ ଅଗଣିତ ଦୃଷ୍ଟିର ଅବୁଝା ପ୍ରଶ୍ନର ତୀବ୍ରତାରୁ ସେ ଆତ୍ମରକ୍ଷା କରିବ ?

ଆଲୁଅ ଲିଭିଲା । ଧଳା ପରଦା ଉପରେ ଚଳନ୍ତା ଛବି ।

କିଛି ସେ ଦେଖି ନାହିଁ, ଶୁଣିନାହିଁ, ବୁଝି ନାହିଁ । ମନ ଯାଇ ନନ୍ଦିକା ପାଖରେ । କେତେ କଥା କହୁଛି, ଶିଖାଉଛି ତାର 'ସା',—ଆମ୍ଭେ 'କା' ସବୁ ଝିଅଙ୍କର ଏକା ଦେହ ଲେ, ସମସ୍ତେ ଏକଥା ଜାଣନ୍ତି । ଯେଉଁମାନେ ସ୍ୱଭାବରୁ ଲଙ୍ଗୁଳି କି ଅଧଲଙ୍ଗୁଳି, ସେମାନେ ଓଲମୀ, ମୂରଖିଆ, ତାଙ୍କୁ କହନ୍ତି ଅସାବଧାନ । ସେମାନଙ୍କୁ କ୍ଷମା କରିଦେବ । ଯେଉଁମାନେ ଜାଣି ଜାଣି ଅଧଲଙ୍ଗୁଳି ହୁଅନ୍ତି, ସେମାନେ ଅଲାଜୁକୀ, ଦେହ ଦେଖାନ୍ତି ନାହିଁ, ମନର ଆବିଳତା ଦେଖାନ୍ତି । ଛି ସେଗୁଡ଼ାଙ୍କୁ । ସେମାନେ ଅସତୀ, ସେମାନେ ଅଭଦ୍ର । ସେମାନଙ୍କୁ କ୍ଷମା କରିବାର ପ୍ରଶ୍ନ ଉଠେ ନାହିଁ ।

'ସା' ମନେ ପକାଉଛି । ଗାଆଁରେ ବସି ମୁହଁ ଶୁଖାଇ କହୁଛି, ପାଇଲୁ 'କା' ଦେଖିଲୁ ତ ? ଅତନୁବାବୁ ତୋ ହାତ ମୁଠାଇ ଧରିଲେ, ମନର ଅପବିତ୍ର କଥା ନୀରବରେ ତୋତେ କହିଲେ । ବାରଣ କରିପାରିଲୁ ? ବାଧା ଦେଇପାରିଲୁ ? ଏତେ ଲୋକ ତୋ ମନର ଲଙ୍ଗଳା ସମ୍ପଦକୁ ଅନେଇ ରହିଛନ୍ତି । ହାତ ଧରିବାକୁ ମନ କରୁଛନ୍ତି । ସୁଯୋଗ ଲୋଡ଼ୁଛନ୍ତି । କାହାକୁ ତୁ ବାଧା ଦେବୁ କହିଲୁ ?

ମେଢକ ଥାଉ । ପଚ୍ଛେଇ ଆ ।

କୁଳବଧୂ ତୁ, ସିନେମା ଛବିର ତାରକା ନୁହଁ । ଦେହ ମୁହଁ ଖୋଲି ନାଟ କରି, ପରପୁରୁଷ ମନରେ ସମ୍ଭୋଗ ଜଗାଇ, ରକତ ତତାଇ, ପଇସା ନେଇ ପେଟ ପୋଷିବୁ ?

ପରଦା ଉପରେ ଅଭିସାରିକା,—ଜ୍ୟୁଜ୍ୟୁଳ୍ପ ତଟିନୀ ତଟ, ନରେଲା ନଇର ଜୋଛନା ଜୁଆର, ପ୍ରେମିକାର ଅଭିସାର । ଝରଝର ଅବିରଳ ଘୂଳି । ଆଉପକା ଖୋଜାଳି ଆଖି । କୁଦା ଉହାଡରେ ଲୁଚିଛି ପ୍ରେମିକ, ହସୁଛି ।

ଭଲ ଛବି ନୁହେଁ ?

ଥରଥର କଥା କାନରେ ବାଜିଲା, ନିଶ୍ୱାସର ଧକ୍କା ଗାଲରେ ।

ଚମକି ଉଠିଲା ଲଳିତା । ମୁହଁ ବୁଲାଇ ଦେଖିଲା । ଅନ୍ଧକାର ହେଲେ ବି ଚିହ୍ନିପାରିଲା, ଅତନୁବାବୁ ! ମୋ ପାଖରେ ବସିଛନ୍ତି । ସେ ଘୁଞ୍ଚିଆସିଲେ । ଦେହକୁ ଦେହ ଲାଗିଛି । ଅନଳ ଶିଖା ।

ଭଲ ଲାଗୁଛି ?

ପାଟିରୁ ବାହାରିଲା, ହଁ ।

ଛପିଛପିକା ଟିପେଇ ଟିପେଇ ଚାଲି । ପଛଆଡ଼େ ଆଇ ପ୍ରେମିକ ଆଖି ବୁଜି ଧରିଲା ଅଭିସାରିକାର । ପ୍ରେମିକର ଉଚ୍ଛଳ ହସ ।

ଲଳିତାର କଅଁଳ ହାତ ଅତନୁଙ୍କର ଦୁଇଟି ହାତ ମଝିରେ ବନ୍ଦୀ । ସେ ଟାଣି ନେଇ ପାରୁ ନାହିଁ । ଜାଣେ ନାହିଁ କାହିଁକି ।

ଧଳା ପରଦା ଉପରେ ଦୁଇଟି ଜୀବଙ୍କର ଲୁଚକାଳି ଖେଳ, ଗୋଡ଼ଆଟଗାଡ଼ ଲଳିତାର ଆଖି ଆଗରେ କେବଳ ଭାସିଯାଉଛି । ମନରେ ଧରା ହେଉ ନାହିଁ । ଅତନୁଙ୍କର ଗୋଟିଏ ହାତ ଉପରେ ତାର ହାତ । ତାଙ୍କର ଆର ହାତଟି କଅଁଳ ହାତକୁ ସାଉଁଳୁଛି। ଲଳିତାର ମନ ସେଇଠି ।

ସେ ବିଚଳିତ, ସେ ହତଭମ୍ବ ।

ଅଭିସାରିକା ଧରାପଡ଼ିଛି । ପ୍ରେମିକର ହାତରେ ତା'ର ପଣତ । ଝୀନ ବାସ ହୁଗୁଳିଆସୁଛି । ଆଉ ସେ ପଳାଇପାରିବ ନାହିଁ ।

ଭ୍ରମର ପାଖେଇ ଆସିଛି । ଲଜ୍ଜାବତୀ କୁସୁମର ମୁହଁରେ ମୁହଁ ଲଗାଇଚି । ଗୁଞ୍ଜରିଉଠିଛି ।

ଚମତ୍କାର !

ଅତନୁବାବୁ କହୁଛନ୍ତି ।

ଲଳିତାର ମୁହଁ ପାଖରୁ ଘୁଞ୍ଚିଯାଉଛି ତାଙ୍କର ସଫଳ ଆନନ । ହାତରୁ ହାତ ଖସିଆସିଛି । ସେ ଉଠିଲେଣି ।

କହିଲେ, ଚମତ୍କାର ଛବି, ଦେଖନ୍ତୁ । ଇଣ୍ଟାରଭାଲ୍ ଢେର ଅଛି । ମୁଁ ଆସୁଛି ।

ଚାଲିଗଲେ ।

ପୁଣି ସେ ଆସିବେ ?

ଦେହ ଥରୁଛି । ମୁଣ୍ଡ ଘୂରୁଛି । ଧଳା ପରଦା ଉପରେ ଖେଳ ଦେଖିବାକୁ ଆଉ ତାର ସାହସ ନାହିଁ । ଅନ୍ଧାରିଆ ଘରର ଅଭିନୟ ପାଇଁ ସେ ଆଉ ପ୍ରସ୍ତୁତ ନୁହେଁ । ଧୈର୍ଯ୍ୟ ଭାଙ୍ଗିଛି । ଏ ପୁରର ନକଲ ଲଙ୍କୁଳୀ ମେନକା ସ୍ୱାଧୀନ ହୋଇ ଉଡ଼ିବାର ପରାଭବ ପାଇସାରିଲାଣି ।

ଦୂର ମୋଫସଲରୁ ଡାକ ଶୁଭୁଛି ତାର 'ମା',—ସେଠିକି ଆଉ 'ବା', ଫେରିଆ ମୋ କୋଳକୁ, ଆଉଁସିଦେବି, ଦେହରୁ ପୋଛିଦେବି ଉତ୍ତେଜନାର ଝାଳ, ଗାଲରୁ ଲିଭାଇଦେବି କଳଙ୍କର ଦାଗ । ଫେରିଆ; ଫେରିଆ ମୋର 'ବା', ମନରୁ ତୋ'ର ଧୋଇଦେବି ଆଧୁନିକତାର ଆବିଳତା । ଏଠି ମୋର ଉପାସ ଅଛି ଲୋ, ଗୋଟିଏ ତଟେ ଜଳିବ ।

ଲଳିତାର ଦୁଇ ଆଖିରୁ ଦୁଇ ଧାର ଲୁହ ଝରିଆସିଲା ।

ଇଣ୍ଟାରଭାଲ୍ ଡେରି ଅଛି ।

ସିନେମାଘରର ବାହାରେ ଲୋକ ଭିଡ଼ । ଆର ଶୋ ପାଇଁ ଟିକଟ୍ କିଣିବାକୁ ସମସ୍ତେ ବ୍ୟାକୁଳ । ଲୋକେ ଆସୁଛନ୍ତି, କେହି ଫେରୁନାହାନ୍ତି । ରିକ୍ସା, ମଟର କି ଘୋଡ଼ାଗାଡ଼ିଟିଏ ଆଖିରେ ପଡ଼ୁନାହିଁ । ଲଳିତାର ମନେ ହେଉଛି, ଉଜ୍ଜ୍ୱଳ ଆଲୁଅରେ ସମସ୍ତେ ତା'ରି ଆଡ଼କୁ ଆଗ୍ରହଭରା ଆଖିରେ ଅନାଉଁଛନ୍ତି । ଅତନୁବାବୁ ଯେଉଁ ଅଭିନୟ କଲେ, ସମସ୍ତେ ସେଇଆ କରିବାକୁ ଆଗ୍ରହୀ ।

ଦୋଷ ସେମାନଙ୍କର ନୁହେଁ, ଦୋଷ ତାଆରି ।

ରବି କହିଲା, ହେଇଟି, ମନୋରଞ୍ଜନବାବୁ ।

ଲଳିତା ଗୁହିଁଲା । ସେ ଗୋଟାଏ ରିକ୍ସା ଉପରକୁ ଉଠିଲେଣି । ଡେରି କରି ସେ ଆସନ୍ତି, ଆଗରୁ ଗୁଲିଯାଆନ୍ତି । ସେ ତାର ଅନୁରୋଧ ରଖିନାହାନ୍ତି ।

ଡାକିବି ଅପା !

ଯାଉନ୍ତୁ ସେ, ତୁ ଖଣ୍ଡେ ରିକ୍ସା ଡାକି ଆଣ ।

ଲଳିତା ଫେରୁଛି । ପାଖରେ ରବି ବସିଛି । କାଳିପରି ଲାଗୁଛି ତାର ଜନମ, କୁଆଁ କୁଆଁ ରଡ଼ି । ଗୋଡ଼ରେ ପକାଇ ସେ ରବିକୁ ତେଲ ହଳଦୀ ଲଗାଇଦିଏ । କୁଲୁକୁଲିଆ ଟିକି ପିଲାଟାକୁ କୋଳରେ ପୁରାଇ ଶୁଏ । ସେଇ ଏବେ ବଡ଼ ହୋଇ ଆସୁଛି । ପାଖରେ ସେ ବସିଛି । ସିନେମା ଦେଖା ଆଗ୍ରହ ତାର ଭାଙ୍ଗିଛି । ପଗୁରିବାକୁ ତାର ସାହସ ହେଉନାହିଁ । କୈଫିୟତ ଦେବାକୁ ଲଳିତାର ମନ ହେଉଛି ।

ଭଲ ଖେଳ ନୁହେଁ ରେ ରବି, ଦେଖୁ ଦେଖୁ ମୋ ମୁଣ୍ଡ ବୁଲେଇଲା ।

ବୃନ୍ଦାବନରେ ଯେଉଁ ଅଜଗରସାପ ଲୁଚିଥିଲା, ସେ କ'ଣ ତାକୁଧରି ଗିଳିବ, ଅପା ?

କାହାକୁ ?

ସେଇ ଫୁଲେଇ ଝିଅଟାକୁ ମ, ଅପା !

ଧରିପାରିବ ନାହିଁ ।

ଆଉ ସେ ବାଘ, କୋରଡ଼ ଭିତରୁ ମୁହଁ କାଢ଼ି ଯେ ଏନେଇଁ ଅନେଇଁ ଜିଭ ଗୁଟୁଥିଲା ? ସେ କଣ ସେ ଫାଜିଲ୍ ଟୋକାଟାକୁ ଧରି ଖାଇବ ନାହିଁ ?

ଫାଜିଲ୍ କାହିଁକି କହୁଛୁ ?

ଆଉ କଅଣ କହିବି ଅଭଦ୍ର ?

କାହିଁକି ?

ଝିଅଟିର ଲୁଗା ଧରି ସେ ଟାଣିଲା, ଏତେ ଲୋକ ଅଛନ୍ତି !

ଲଳିତା ମୁଣ୍ଡ ଉପରକୁ ପଣତ ଟାଣିଲା । ଆରେ, ଛୁଆ ଗୃହଣ୍ଡର ରବି, ତାର ବି ଭଲମନ୍ଦ ବୁଝିବାର ଶକ୍ତି ହେଲଣି !? ମଣିଷର ଚଳନର ବିଭିନ୍ନ ଭଙ୍ଗୀକୁ ଚିନିଛି, ସମାଜର ଗ୍ରହଣୀୟ ନୈତିକତାର କଷଟି ପଥରରେ ପରୀକ୍ଷା କରି ଭଲ ଓ ମନ୍ଦ ବାଛିବାର ଧାରଣା ତାର ଟିକିମନରେ ଅଙ୍କୁର ଆସିଲଣି ?

ଲଳିତା ହସି ହସି କହିଲା, କୋଉଠି ଭିତରୁ ବାଘ ବାହାରିବ, ଛପି ଛପି ଯିବ, ପଛରୁ ସେ ଆଖି ବୁଜି ଧରିବ ନାହିଁରେ ରବି, ଝାମ୍ପ ମାରି ଝିଅଟିକୁ ଆଗ ଗୋଡ଼ରେ ଜାକି ଛୁଟି ପଳାଇବ ଅରଣ୍ୟ ଭିତରକୁ ।

ଏଁ ?

ରବି ଭୟରେ ଅଣଚିଠିଲା ।

ଶୁଣ୍ । ସେଇ ଅରଣ୍ୟ ଭିତରେ—

ଟୋକାଟା ସେଇ ବାଘକୁ ମାରିବ !

ଭଦ୍ରଲୋକ ପରି ସେ ଖସି ପଳାଇବ । ବଞ୍ଚିଗଲି ବୋଲି କେଡ଼େ ଆନନ୍ଦ ତା'ର ହେବ । ଅରଣ୍ୟ ଭିତରେ ବାଘଟା ଝିଅର ମୁହଁରେ ଗେଲ କରିବ ନାହିଁ । ତା'ର ତଣ୍ଟି କଣା କରି ଆଗ ରକ୍ତ ଶୋଷିବ, ସେଇଠୁ ହାଡ଼ ମାଂସ ଚୋବାଇ ଖାଇବ ।

ନାହିଁ ଅପା !

ହଁ ରେ ରବି, ତୁ ସିନା ନାହିଁ କରିବୁ, ବାଘ ତୋ' କଥା ମାନିବ ନାହିଁ । ଥାଉ ରେ ସେ ବାଘ ଏଇ କଟକ ସହରରେ ସିନେମା ଘରେ । କାଲି ସକାଳୁ ମୁଁ ଗାଆଁକୁ ଚାଲିଯିବି । ଆମର ସେଠି ବାଘ ଭାଲୁ ନାହାନ୍ତି । ଯିବୁ ମୋ ସାଙ୍ଗରେ ? ଗାଁର ସ୍କୁଲରେ ପାଠ ପଢ଼ିବୁ ?

ବଡ଼ ଅପା ଛାଡ଼ିବେ ନାହିଁ ? ବୋଉ କହୁଥିଲା—

ରବିର ପାଟିରେ ଲଳିତା ହାତ ଦେଲା । ଗୁରୁଜନର କଥା ପିଲାଟା ମୁହଁରେ ଲୁହାଇ ଦେଲା ନାହିଁ । ନିଜେ କହିଲା, ତୋ ବୋଉର ସେଇ ଧାରଣା । ବଡ଼ ଅପାକୁ ସେ ଦେଖିନାହିଁ ରେ, ଚିହ୍ନି ନାହିଁ । ତୁ ତ ଦେଖିଛୁ, ଜାଣିନୁ କି ସେ କେଡ଼େ ଭଲ ?

ଜାଣେ ନେ ଅପା, ମୋ ବୋଉଠୁ ବି ସେ ଭଲ ।

ଲଳିତା ଉତ୍ତେଜିତ ହୋଇ ଡବିକୁ ଗେଲ କଲା । ତା'ର ସ୍ନେହମୟୀ 'ମା' ର ହସ ହସ ମୁହଁ ଆଖିକୁ ଦିଶିଯାଉଛି, କାନରେ ବାଜିଯାଉଛି ତା'ର ମନଭରା କଥା । ଲଳିତା କହିଲା, ସତ କହିଲୁ ରେ ରବି, ମୋ ବୋଉଠାରୁ ବି ସେ ଭଲ । ସେ ମୋର ମାଆ । ତାଆରି ପାଖକୁ ମୁଁ ଯିବି, କାଲି ସକାଳେ, ତୋ ପିଉସା ଆଜି ଫେରନ୍ତୁ କି ନ ଫେରନ୍ତୁ ।

ଆଖିରୁ ଗଡ଼ିଆସୁଥିବା ଲୁହଧାରକୁ ସେ ପୋଛୁନଥିଲା ନାହିଁ ।

ସବୁ ସନ୍ଦେହ ମନରୁ ଝଡ଼ିପଡ଼ୁ । ତାର 'ସା' ର ସୁନା ଓଠରେ ମୂହ ଗୁଞ୍ଜି ସେ ମାଗିବ ଗେଲଟିଏ, ସେଇଠି, ସେଉଁଠି ଅତନୁବାବୁ ଉଦ୍ଧତହ ନଥା କଲାଇଛନ୍ତି । ସହରର ବାଘ ସେ, ପୋଡ଼ିଛଠୁ ମନର କ୍ଷତ । ସବୁ କଥା ସେ କହିବ ତାର 'ସା'କୁ । କ୍ଷମା ମାଗିବ, ମାଗିବ ପୁଣି ଗେଲଟିଏ । ଦେବାକୁ ସେ ନାହିଁ କରିବ ନାହିଁ । କେବେ କିଛି ସେ କାହାକୁ ଦେବାକୁ ମନା କରିନାହିଁ ।

ହସି ହସି ସବୁ ଟଙ୍କା, ସବୁ ଗହଣା ସେ ସମର୍ପି ଦେଇଛି ସ୍ୱାମୀଙ୍କ ହାତରେ । ସବୁ ରଖିଛି ଲଳିତା । କାହିଁକି ସେ ତା'ର ବଡ଼ପଣ ସହିବ ? ସବୁ ନେଇ ତା ଆଗରେ ଥୋଇଦେବ, ଗୋଡ଼ ଧରି ନେହୁରା ହୋଇ କହିବ, ନେ, କିଛି ଗମି ନାହିଁ, କିଛି କମି ନାହିଁ ବରଂ ବଢ଼ିଛି ।

ନେବୁ ନାହିଁ ? ରାଗିଛୁ ?

ମତେ ବ ତୁ ନେ ନେ 'ସା', ମୁଁ ତୋ'ର ଖେଳଣା ହେବାକୁ ମଙ୍ଗିଛୁ । ଆଉ ଅଡ଼ିବ ନାହିଁ, ଆଉ ଅଝଟ ହେବ ନାହିଁ, ତୋ ଗୋଡ଼ ଧରୁଛୁ । ମିଣିପଗୁଡ଼ା ଖାଲି ଦେହକୁ ଅନାନ୍ତି, ଦେହକୁ ଭଲ ପାଆନ୍ତି, ଲଙ୍ଗଳା ଦେହକୁ । ଦେହ ପାଇଁ ସେମାନେ ମନ କିଣନ୍ତି । ଆଉ ତୁ, ମନ କିଣିବାକୁ ଦେହକୁ ଆଦର କରୁ । ସବୁ ତୁ ଦେଇଛୁ, କେମିତି ତୋ'ର ଏତେ ଦାନର ବୋଝ ମୁଁ ସହିବ ?

'ସା' ଡାକ ଶୁଭୁଛି ଦୂର ଗାଁରୁ, ଘୁଞ୍ଚିଆ ମୋ ପାଖକୁ ମୋର 'କା' ।

ମନ ଭିତରେ ଦେଇଛୁ, ଯାଉଛୁ, ଗୋଡ଼ତଳେ ସବୁ ମୁଁ ଉତ୍ସର୍ଗ କରିଦେବ । ମାଗିବ ଗୋଟିଏ ଚିଜ, ଦେବୁଟି ? ହସୁଛୁ କାହିଁକି ? କହିଥିଲୁ ତ ଦେବୁ ବୋଲି, ଯାହାକୁ ଲୁଚେଇ ରଖିଛୁ ତୋ ଭିତରେ, ଅମୂଲ୍ୟ ଦରବ !

ଅପା !

ଲଳିତାର ସପନ ଭାଙ୍ଗିଲା । ଘର ଆଗରେ ସେମାନେ ପହଞ୍ଚିଲେଣି । ଦୁଇଟା ଖବାଶ ରାସ୍ତା ଉପରେ ରଖା ହୋଇଛି । କେତେ ଲୋକ ଜମା ହୋଇଛନ୍ତି, ପାଟି ଶୁଭୁଛି ।

ବିଚଳିତ ହୋଇ ଲଳିତା ରିକ୍‌ସାରୁ ଓହ୍ଲେଇଲା ।

ତରତର ହୋଇ ରାଜୀବ ଖଣ୍ଡାଭିତରୁ ବାହାରିଆସୁଛନ୍ତି ।

କଅଣ ରାଜୀବ ?

ବଡ଼ମା ମୂର୍ଚ୍ଛା ହୋଇଯାଇଛନ୍ତି ।

'ସା' ?

ବଡ଼ମାଙ୍କ ପାଖରେ ଅଛନ୍ତି । ମୁଁ ଡାକ୍ତର ଡାକିବାକୁ ଯାଉଛି ।

ଫୋନ୍ କଲ ନାହିଁ ?

ଫୋନ୍ ଘର ବନ୍ଦ ଅଛି ।

ରାଜୀବ ଅପେକ୍ଷା ନ କରି ତରତର ହୋଇ ଚାଲିଗଲା । ବ୍ୟସ୍ତ ହୋଇ ଲଳିତା ସିଡ଼ିରେ ଉଠିଲା । ଭାବିଲା, ଶ୍ରୀମତୀ ସେଠିଙ୍କୁ ଫୋନ୍‌ରେ ଡାକିଲେ ସେ ସଙ୍ଗେ ସଙ୍ଗେ ଆସି ପହଞ୍ଚିବେ ।

ତୁଇ ଦିନ ତୁଇ ରାତି ସମସ୍ତେ ଅସ୍ତବ୍ୟସ୍ତ ହୋଇପଡ଼ିଲେ । କେତେବେଳେ ବୁଢ଼ୀ ଆଖି ବୁଜିବେ ତାହାହିଁ ସମସ୍ତଙ୍କର ଭୟ ଓ ଉଦ୍‌ବେଗର କାରଣ । ଶୁଖିଲା ପତର, ଝଡ଼ିପଡ଼ିବା ମୁହୂର୍ତ୍ତର କଥା । ଘନ ଘନ ମୂର୍ଚ୍ଛା ହେଉଛନ୍ତି । ଗାତ୍ର ଅତି ତୁର୍ବଳ । ଦେହ ଥରୁଛି । ବାରମ୍ବାର ଡାକ୍ତର ଆସୁଛନ୍ତି, ଯାଉଛନ୍ତି । ଆଶାର ବାଣୀ ଶୁଣାଉଛନ୍ତି, ଅବସ୍ଥା ବାଗେଇ ଆସୁଛି, ଭୟ ନାହିଁ । ଏତେ ତୁର୍ବଳ ଅବସ୍ଥାରେ ସବାରୀ ଚଢ଼ି ଗାଆଁରୁ ଆସିବା ଉଚିତ ନ ଥିଲା ।

ଆଖି ଖୋଲିଲେ ଅଭୟା ଦେଖନ୍ତି, ପୁଅ, ତୁଇ ବୋହୂ ଓ କନ୍ଦ ପାଖରେ ଜଗି ବସିଛନ୍ତି । ରାଜୀବ ଆତଯାତ ହେଉଛି । ନାନା ଜାତିକା ଔଷଧର ବୋତଲ ଓ କେତେ ପ୍ରକାର ଫଳ ରଖାହୋଇଛି ଟେବୁଲ୍ ଉପରେ । ଛାତରୁ ଓହଳିଛି ବିଜୁଳି ପଙ୍ଖା । ଧୀରେ ଧୀରେ ବୁଲୁଛି । ମୁଣ୍ଡ ବୁଲାଉଛି ।

ସୁନନ୍ଦ ବସିଛି ମୁଣ୍ଡ ପାଖରେ, ମୁଣ୍ଡ ଆଉଁସୁଛି ।

ଟିକିଏ ଭଲ ଲାଗୁଛି ବୋଉ ?

ହଁ, ମତେ ମରଣ ହେବ ନାହିଁ ରେ ବାପ !

ଦୃଷ୍ଟି ଖୋଜୁଛି ଯାହାକୁ, ସେ ବସିଛି ଗୋଡ଼ ପାଖରେ । ତା'ର ଆଖିରେ ଚଳଚଳ ଲୁହ । ମୁହଁ ତା'ର ମଳିନ ଦିଶୁଛି । ମନ ପଚାରୁଛି ମନକୁ, ନନ୍ଦିକା ମୋର ଭଲ ଅଛି ତ ? ଆଉ ସେ ଲଳିତା ? ହଁ ସେ ବି ବସିଛି ଗୋଡ଼ ତଳେ । ଗୋଡ଼ ଆଉଁସୁଛି । ଦିଶୁ ନାହିଁ ତ ରାକ୍ଷାସୁଣୀ ପରି, କେଡ଼େ ଭଲଟିଏ ! ଆଖିରେ ଲୁହ । ସବୁ ସେବା ସେଇ କରଛି । ତୁନିଆଁରେ ସମସ୍ତେ ଭଲ ।

ନନ୍ଦ !

କଅଣ ବୋଉ ?

ଗୋଡ଼ ପାଖରୁ ଧୀରେ ଧୀରେ ଉଠି ନନ୍ଦକା ମୁଣ୍ଡ ପାଖକୁ ଆସିଲି । ପେଟର ବେଦନା ଲୁଚାଇବାକୁ ମନ ଟାଣ କରି ସେ କହିଲା, ଡାକ୍ତର କହିଗଲେ, ତମର ଦେହ ଭଲ ହୋଇଗଲାଣି । ଟିକଏ ସିନା ଦୁର୍ବଳ ଅଛ, ସେତକ—

କଥା ଅଧା ରହିଗଲା । ପେଟ ଭିତରେ ତୀବ୍ର ବେଦନା, ସତେକି ପ୍ରାଣ ଛାଡ଼ିଯିବ । ଅତି କଷ୍ଟରେ ଦୁଇ ଦିନ ସେ ଲୁଚାଇ ପାରିଛି । କାହାକୁ ସେ କହିବ ? ସମସ୍ତେ ଶାଶୁଙ୍କ ପାଖରେ ବ୍ୟସ୍ତ । ଏକା ନନ୍ଦ ଅନୁମାନ କରିଛି । ସେ ପଚାରିଲେ ଉତ୍ତର ଶୁଣେ, ଭଲ ଅଛି ମ, ଯାଅ ତମେ ବୋଉଙ୍କ ପାଖକୁ । ମୁଁ ଯିବି ଚାଲ ।

---

'କା' ସଙ୍ଗେ ନିରୋଳାରେ ଭଲକରି କଥାବାର୍ତ୍ତା ହେବାକୁ ବେଳ ପାଇ ନାହିଁ । ବାତଚକ୍ର ପରି ସେ ଭ୍ରମୁଛି । ବେଳେବେଳେ ଘର ଭିତରକୁ ପଶିଆସି କହୁଛି, ମୁହଁ ଶୁଖେଇ ମନ ମାରି ବସିଛୁ କାହିଁକି ସା ?

ନାଇଁତ ।

ବୁଝିଲି ଯେ, ରାଗିଛୁ ମୋ' ଉପରେ ? କାନ୍ଥରେ ଝୁଲି ହୋଇଥିବା ଛବି ଗୁଡ଼ାକୁ ଦେଖି ବିରକ୍ତ ହେଉଛୁ ? ଭାବୁଛୁ, ମୁଁ ନିର୍ଲଜ, ମୁଁ ବେହିଆ ? 'ସା' ମ, ସେ ଗୁଡ଼ାକ ମୋର ଫଟୋ ନୁହେଁ ଲେ, ତାଙ୍କରି ମନର ଉତ୍ତେଜନାର ଫଟୋ । ରଖି ଥାଆନ୍ତୁ ସେଗୁଡ଼ାକ, ସେ । ମୁଁ ଏଠି ଆଉ ରହିବି ନାହିଁ । ତୋ ସଙ୍ଗେ ଗାଁକୁ ଫେରିଯିବି । ଆଉ ମତେ କଟକ ଆସିବାକୁ ତୁ କେବେ କହିବୁ ନାହିଁ, ତତେ ମୋ ରାଣ ।

ନନ୍ଦକା ହସିଲା ।

ହସ ନା କହୁଛି, ତୋ' ହସ ମତେ କାଟୁଛି । ମତେ ଛୁ ଗେଲ କରିବୁ ନାହିଁ ?

ଆ ମୋ ପାଖକୁ । ହେଲା ?

ନାଇଁ, ଏ ଗାଲରେ ।

ହେଲା ତ ?

ହେଲା । ତୁ ଥା ଏଇଠି । ତଳକୁ ଓହ୍ଲାଇବୁ ନାଇଁ । ମୁଁ ବୋଉଙ୍କୁ ଦେଖି ଆସେ ।

ରହ, ମୁଁ ବି ଯିବି, ମୋ' ହାତ ଧରି ନେବୁ ।

ମୁହଁ ଶୁଖେଇ ବସିଛୁ ଯେ ? ଦେହ ଭଲ ଲାଗୁନାହିଁ 'ସା' ?

ବୋଉ ?

ତାଙ୍କର ଚେତା ହେଲାଣି । ସମସ୍ତେ ଜଗି ବସିଛନ୍ତି । ତାଙ୍କ କଥା ଭାବି ମନ ଦୁଃଖ କର ନା । ଶୋଇ ପଡ଼ ଟିକିଏ, ମୋ ଧନ । ଗୋଡ଼ ଚିପିଦେବି ?

ଥାଉ ।

କଥା ନ ମାନି ଲଳିତା ଗୋଡ଼ ଘସିଲା । କହିଲା, ଭାରି ଓଲଟା ରେ ! କୋଠା ତୋଳିବେ ସେ; ତୋ'ର ଟଙ୍କା, ତୋର ଗହଣା ଭୁଲେଇ କରି ନେଇଆସି ଖରଚ କରିବେ ? ଏତେ ସାହସ ? ମୁଁ ଏଠାରେ ଥାଉଣୁ ଏହା କରାଇ ଦିଅନ୍ତି ? ସବୁ ମୁଁ ଛଡ଼େଇ ରଖିଛି । ଏଇ ନେଏ ଚାବି । ସବୁ ସେଇ ଲୁହା ବାକ୍ସରେ ରଖିଛି । ମୁଁ ଏ ଚାବି ଆଉ ବୋହିବି ନାହିଁ ।

ସବୁ ତ ତାଙ୍କର ।

ଆରେ ନାଃ, ତାଙ୍କର କାହିଁକି ଦେଲା-ଚଳରେ ଆଖି ପଡ଼ିବ ? ସେ କଥା ହେବ ନାହିଁ ।

ସେ ମାଗି ନାହାନ୍ତି, ମୁଁ ନିଜେ ଦେଇଛି ।

ଆଣିଲେ କାହିଁକି ?

ଜମି ବିକିଲେ ତ !

ବିକିଲୁ ।

ସେଇଥି ପାଇଁ ବୋଉଙ୍କର ଏ ଅବସ୍ଥା । ଜମି ବିକି ହେଲା, ଏହା ସେ ସହିପାରିଲେ ନାହିଁ । ଖାଲି ଝୁରି ହେଲେ । କେମିତି ସେ ଅଛନ୍ତି କହିଲୁ ?

ଭଲ ଅଛନ୍ତି ।

ମୋ ହାତ ଧରିଲୁ, ଟିକିଏ ଦେଖି ଆସେ ।

ଦେଖି ତଳ ଉପର ହେବାକୁ ଡାକ୍ତର ମନା କରିଛି ।

ଧୀରେ ଧୀରେ ଯିବି ।

ନାହିଁ ।

ଏଇ ଅରକ, ଚଳେ ମୋ ଧନ ।

ଲଳିତା ନନ୍ଦକାକୁ ତଳକୁ ଆଣିଲା ନାହିଁ ।

କେତେ ନେହୁରାରେ କନ୍ନ ମଙ୍ଗରେ ସେ ଆସିଲା । ପେଟର ବେଦନା ସହ୍ୟ ହେଉ ନାହିଁ ।

ଆଃ—! ନନ୍ଦକା ଆଖି ବୁଜି ପୁଣି ଆଖି ଖୋଲିଲା ।

ଅଭସ୍ଥା ବୁଝିଲେ । ବିକଳ ହୋଇ ଉଠି ବସିବାକୁ ଚେଷ୍ଟା କଲେ ।

ନନ୍ଦକା ତାଙ୍କ ଗୁଡକ ଆଉଜି ବସିଲା । ଦୁଇ କାନ୍ଧରେ ହାତ ଦେଇ ଅଟକାଇ ରଖିଲା । ଶୁଖିଲା ମୁହଁକୁ ହସ ଟାଣି ଆଣି କହିଲା, କିଛି ନୁହେଁ ବୋଉ, ଟିକିଏ ଘଡ଼ ଅନିଦ୍ରା ହେଲାକୁ—, ଆଃ—

ନନ୍ଦକା ପୁଣି ଆଖି ବୁଜିଲା ।

ଆଖି ଖୋଲିଲା । ଗୃହଆଡ଼ ଅନ୍ଧାର ଦିଶୁଛି । ପିଣ୍ଡରୁ ପ୍ରାଣ ଛୁଟିଗଲା ପରି ଲାଗୁଛି । କଅଣ ସେ କରିବ ? କୁଆଡ଼େ ଯିବ ? ସଂସାର ତ ଶୂନ୍ୟ ଦିଶୁଛି '

ବୁଢ଼ୀ ବ୍ୟାକୁଳ ହୋଇ କହିଲେ, କଅଣ ଦେଖୁଛୁରେ ନନ୍ଦଆ ? ତୋହର ଦେହ କଅଣ ହେଉଛି । ଆରେ ତାଆର ପାଇଁ ମୁଁ କଷ୍ଟ ଆସିଛୁରେ, ମତେ ମରଣ ହେଉ । ଆରେ ନନ୍ଦଆ, ଡାକ୍ତରଙ୍କୁ ଡକା । ଆଲୋ ଲଳିତା, ମୋତେ ପଛେ ମରଣ ହେଉ, ମୋ ନନ୍ଦକାକୁ ଧର । ଆଲୋ କନ୍ନ, କାହାକୁ ଯାଇଁ ଡାକଲୋ ।' ସଜାବଟା ଗଲା କୁଆଡ଼େ ?

ତୁମେ ହ ବୋଉ, ମୋର କିଛି ହୋଇ ନାହିଁ ।

ମତେ ଲୁଚଉଛୁ କେ ଚଣ୍ଡାଳୁଣୀ ? ଆଲୋ କନ୍ନ,—

ପୁଣି ଅଭସ୍ଥାଙ୍କର ଚେତା ବୁଡ଼ିଲା ।

ଚେତା ହେଲାଣି । ବିଜୁଳି ଆଲୁଅ ଜଳୁଛି । ପାଖରେ କନ୍ନ ଜଗି ବସିଛି । ଆଉ କେହ ନାହିଁ ।

କନ୍ନ ଉଠିଲା । ମନ ଛଟପଟ ହେଉଛି । କେହି ଜଣେ ପାଖକୁ ଆସିଲେ ସେ ଉଠି ପଳାନ୍ତା, ଗୁହଁ ଦେଇ ଆସନ୍ତା ନନ୍ଦକାକୁ । ଦେଳୁବେଳ ନନ୍ଦକାର ଦେହ ଜଳାଉଛି, ରହି ରହି ସେ ପାଟି କରି ଉଠୁଛି ।

ଭଲ ମହଲାର ଆର କଡ଼ କୋଠରୀରେ ନନ୍ଦକା ଅଛି । ପାଖରେ ଡାକ୍ତରାଣୀ ଓ ନର୍ସ । ଦାହାରେ ଛୁଆଖାଇ ବଳେଇ ପରି ଲଳିତା ଏପାଖ ସେପାଖ ହେଉଛି ।

ଛଟପଟ ହେଉଛି । ଆଖିରୁ ଗଡ଼ିପଡ଼ୁଛି ଲୁହଧାର । ଗୃହର ଦୁଇଟା ଧାଁ ଧପଡ଼ କରୁଛନ୍ତି ।

ନର୍ସର ଆଦେଶ ପାଳୁଛନ୍ତି । ଗରମ ପାଣି, ସାବୁ, ବଡ଼ ତଉଲ— ବୁଢ଼ୀଙ୍କ ଗ୍ରୁଡ଼ କେତେ ଥର ଧାଇଁ ଯାଇ କନ ବାହାରୁ ବୁଲି ଆସିଲଣି । ଲଳିତା କହୁଛି, ବୋଉଙ୍କ ଗ୍ରୁଡ଼ ଆସିଲ ? ଯାଅ ତମେ କନ, ଯାଅ ।

କାଇ ?

ବଡ଼ ଡାକ୍ତରଙ୍କୁ ଆଣିବାକୁ ଗଲେ ।

କାହିଁକି ?

ଯେତେ ପଚାରିଲେ କେହି ମତେ କିଛି କହୁ ନାହାନ୍ତି । କଅଣ ମୁଁ କରିବ କନ ! ମୋ 'ସା'—

ଆଖିରେ ଲୁହ ।

ନନ୍ଦିକା ପାଟି କରି ଉଠିଲା ।

ମୋ 'ସା'—

କଅଣ ହେଉଚି ଦେଖିଲ ନାହିଁ ?

କବାଟ ବନ୍ଦ କରିଛି ସେ ନର୍ସଟା । ଭିତରକୁ ଯିବାକୁ ମନା କରୁଛି । ବୋଉ କେମିତି ଅଛନ୍ତି ?

ଶୋଇଛନ୍ତି ।

ତମେ ତାଙ୍କ ପାଖକୁ ଯାଅ । ଆସ ।

ଲଳିତା ବି ଆସିଥିଲା ସଙ୍ଗରେ । ବୋଉ ଶୋଇଛନ୍ତି କନ, ତମେ ପାଖରେ ଜଗି ବସିଥା । ଖୋଜିଲେ ମତେ ଡାକ ଦେବ । ଏକୁଟିଆ ଗ୍ରୁଡ଼ି ଯିବ ନାହିଁ ।

ଲଳିତା କେତେବେଳୁ ଗଲାଣି । ଏ ଘରକୁ କେହି ଆସୁ ନାହିଁ । ସମସ୍ତେ ଯାଇଁ ସେପାଖେ । ପଢ଼ାକୁ ଗୃହିବା ସାର ହେଉଛି । ମନ ଯାଇଁ ନନ୍ଦିକା ପାଖରେ । ବେଳେ ବେଳେ ତାର ବିକଳିଆ ପାଟି ଶୁଭୁଛି । ଗ୍ରୁଡରୁ ଖଣ୍ଡେ ଛିଡ଼ି ପଡ଼ିଲା ପରି ଲାଗୁଛି । ଧାଇଁ ଯାଇ ଗେଲ କରିବାକୁ ମନ ହେଉଛି । କାହା ପାଇଁ ତାର ଗେଲର ପୂର୍ଣ୍ଣ ଭଣ୍ଡାର ସେ ସଞ୍ଚି ରଖିଛି, ଜଣା କରି ନାହିଁ ? ସେ ନ ଆସୁ, ଯାହା ପଛେ ହେଉ ସେ ଅବେଇଜର ।

ମୋ ନଢକା ଭଲରେ ଖଲାସ ହେଉ, ସବୁ ଦେବଦେବୀ ମୋର ଶେଷ ଗୁହାରି ଶୁଣ । ମୋର ଯାହା କିଛି ଥିଲା ସବୁ ମୁଁ ଦେଇ ସାରିଛି । ମୋର ଏହି ଅଖୋଜା ଅଲୋଡ଼ା ଜୀବନକୁ ସମସ୍ତେ ତମେ ବାଣ୍ଟି କୁଣ୍ଟି କରି ନିଅ, ମୋ ନଢକାକୁ ସୁକୁଶଳରେ ଉଦ୍ଧାର କର, ମୋର ଶେଷ ଗୁହାରି ଶୁଣ ଠାକୁରମାନେ !

କନିର ଆଖିରେ ଲୁହ ।

ଅଭସ୍ଥା ଆଖି ଖୋଲିଲେ । ମୁହଁରେ ହସ ।

ନଢଆ କାହିଁ ?

ଦେହ ଟିକେ ଭଲ ଲାଗୁଛି ଅପା ?

ହଁ ଭଲ ଲାଗୁଛି । ସପନ ଦେଖିଲି କି ?

କଅଣ ?

ନଢକାର ସୁଅ ହେଇଚ ।

ଦେଖି ଆସିବ ?

ଲଳିତା ?

ଡାକଦେବ କି ?

ରବି ଘର ଭିତରକୁ ଚାହିଁଲା । ସେପାଖକୁ ଗଲେ ଲଳିତା ଅପା ତା' ଉପରେ ବିରକ୍ତ ହେଉଛନ୍ତି । ଏପାଖକୁ ଆସିବାକୁ ତାକୁ ଡର ମାଡ଼ୁଛି । ବୁଢ଼ୀଟା ବେମାର, ସମସ୍ତେ କହୁଛନ୍ତି, ବୁଢ଼ୀ ଖସିଯିବେ । ରବିର ମନ କେଉଁଠି ଲାଗୁନାହିଁ ।

କନି ଡାକିଲା, ରବି ବାବୁ, ଶୁଣିଲ ।

କିଏ ଟାଣିଲା ପରି ଡରି ଡରି ସେ ଘର ଭିତରକୁ ଆସିଲା ।

କନି କହିଲା ସୁନା ପିଲାଟି ତମେ, ମାଆଙ୍କ ପାଖରେ ଏଇଠି ବସି ଥା, ମୁଁ ତମ ଅପାଙ୍କୁ ଡାକି ଆଣେ । ବସିଥା, ଏଁ ? କୁଆଡ଼େ ଯିବ ନାହିଁ ।

ଅଭସ୍ଥାଙ୍କ ପାଖରେ ରବିକୁ ବସାଇ କନି ଚଲ ପରି ଛୁଟିଗଲା ।

କଅଣ କହିଲେ ଡାକ୍ତର ? ତମେ ଏମିତି ମୁହଁ ଶୁଖାଇଛ କାହିଁକି ? କେମିତି ଅଛି ମୋର 'ସା' ? ଏମିତି ବିକଳ ହୋଇ ପାଟି କରୁଛି କାହିଁକି ? ମତେ କବାଟ ଖୋଲ, ମୁଁ ତାକୁ ଦେଖିବାକୁ ଯିବ ।

ଲଳିତାର ଆଖିର ଝର ଅଟକ ରହୁ ନାହିଁ ।

ତମେ ବ୍ୟସ୍ତ ହୁଅନା ଲଳିତା, ତମର 'ସା' ଭଲ ଅଛି । ଡାକ୍ତର କହିଲେ, ପ୍ରଥମ ପୋଖତରେ ଏମିତି କଷ୍ଟ ହୁଏ । ଆଉ ଘଣ୍ଟାଏ, କି ଦ'ଘଣ୍ଟା ଭିତରେ ସନ୍ତାନ ହେବ । ତମେ ଯିବନି ଏଠୁ, ବୋଉ ପାଖକୁ ଯାଅ । ହେଇ, କନ ଆଇଲାଣି । ଆଲେ କନ—

ଆଜ୍ଞା ।

ନନ୍ଦିକା ଭଲ ଅଛି । ନେଇ ଯା ତୋ ନୂଆ ଭାଉଜକୁ ବୋଉଙ୍କ ପାଖକୁ । ଏଠି ଠିଆ ହୋଇ ଚାହିଁଲେ କଅଣ ନନ୍ଦିକାର କଷ୍ଟ ଊଣା ହେବ ? ଯାଅ ତେଣେ । ଦୁଇ ଦୁଇଟା ଡାକ୍ତର ଲାଗିଛନ୍ତି, ଲୋକ ଭିଡ଼ ହେଲେ କାମ କରିବାକୁ ଅସୁବିଧା ହେବ । ପୁଣି ଠିଆ ହେଲ କାହିଁକି ? ମୋ କଥା ମାନି ଚାଲିଯାଅ ଏଠୁ ।

କନ ଓ ଲଳିତା ଧୀରେ ଧୀରେ ଚାଲିଗଲେ । ସେମାନେ ଅଦୃଶ୍ୟ ହେଲାରୁ, ସୁନନ୍ଦର ଦବିଲା କୋହ ମୁଣ୍ଡ ଟେକିଲା । ଦୁଇ ହାତରେ ମୁହଁ ଲୁଚାଇ ସେ କାନ୍ଦି ଉଠିଲା । ଆଉ ତ ଧୈର୍ଯ୍ୟ ଧରି ହେଉନାହିଁ । ବଡ଼ ଡାକ୍ତର କହିଲେ, ପିଲାଟା ସ୍ଥାନଚ୍ୟୁତ ହୋଇଛି । ନନ୍ଦିକା ଅତି ଦୁର୍ବଳ । ଚେଷ୍ଟା କରି ଫଳ ନ ହେଲେ, ପେଟ ଅପରେସନ୍ କରିବାକୁ ପଡ଼ିବ । ପିଲାଟାର କଥା ପଛରେ କଏ, ମାଆକୁ ଯେ କୌଣସି ଉପାୟରେ ବଞ୍ଚାଇବାକୁ ହେବ ତ !

ସତେ କ'ଣ ନନ୍ଦିକା ମୋର ଉଦ୍ଧାର ପାଇବ ?

ଅବାଧ ଲୁହ ଅଟକି ରହୁ ନାହିଁ ।

ନନ୍ଦିକାର ବିକଳ ଚିତ୍କାର ।

ସୁନନ୍ଦ ଚମକି ଉଠିଲା । ପିଣ୍ଡରୁ ପ୍ରାଣ ଛାଡ଼ିଲା ପରି ଲାଗିଲା । ଆଖିରୁ ଲୁହ ପୋଛି ସେ ଧାଇଁଗଲା ମଝି କବାଟ ପାଖକୁ । କିଳଣୀ ଖୋଲିଲା । କବାଟ ଫିଟୁ ନାହିଁ । ସେପାଖରୁ ବନ୍ଦ କରା ହୋଇଛି । ଓଠ ଚିପି, କୋହ ଅଟକାଇ ସୁନନ୍ଦ ଅସ୍ଥିର ହୋଇ ଘରର ଏପାଖ ସେପାଖ ହେଲା । ଦୃଷ୍ଟି ପଡ଼ିଲା ଲଳିତା ଉପରେ । ବାଇଆଣି ପରି ସେ ଦିଶୁଛି । ତା ପଛରେ ଠିଆ ହୋଇଛି କନ ।

ଚିହିଁକି ଉଠିଲା ବିରକ୍ତିରେ, ପୁଣି ଆସିଲ କାହିଁକି ? ବୋଉ ମୋର ଏକା ଅଛି ସେ ଘରେ, ଯାଅ କହୁଛି ।

କନ ମୁହଁ ଛପେଇଲା ।

ଲଳିତା କହିଲା, ବୋଉ ଭଲ ଅଛନ୍ତି । ଭବ ତାଙ୍କ ପାଖରେ ବସିଛି । ସେ ଡାକୁଛନ୍ତି ।

ତମେ ବି ଯାଅ ।

'ସା' କେମିତି ଅଛୁ ?

ଭଲ ଅଛୁ । ମୋ କଥା ମାନ । ବୋଉ ପାଖକୁ ଯାଅ । ଏତେ ଅଧୀର ହେବା ଆବଶ୍ୟକ ନାହିଁ । ଯାଅ, ମୋତେ ଭାବିବାକୁ ଦିଅ ।

ଲଳିତା ପଳେଇ ଗଲା ।

ଟିକି ପିଲା କୁଆଁ କୁଆଁ ଡାକ ଶୁଭୁଛି ।

ସିଏ ଯେଉଁଠି ଥିଲେ ଧାଇଁ ଆସିଲେ । ଖୁସି ହୋଇ ନର୍ସ ଖବର ଦେଲା, ପୁଅ ହୋଇଛି ।

ଅଭସ୍ୱାଙ୍କର କାନରେ ବାଜିଲା, ପୁଅ ହୋଇଛି । କେହି ତ ପାଖରେ ନାହିଁ, କାହାକୁ ପଚାରି ବୁଝିବେ ? ରକ୍ତ ଖସିଗଲାଣି । ଧାଇଁ ଯିବାକୁ ବଳ ପାଉ ନାହିଁ । ଓଠଗ କୁଆଡ଼େ ଉଡ଼ି ପଳେଇଲାଣି । ହାତ ଭରା ଦେଇ ସେ ଉଠି ବସିଲେ ।

ପୁଅ ହୋଇଚ ମୋ ନନ୍ଦିକାର ! ଏତେ ଦିନକେ ପୁଣି ସେ ଫେରି ଆସିଛନ୍ତି, ସୁନନ୍ଦର ବାପ । ଧାଇଁ ଯିବାକୁ ମନ ହେଉଛି । ଗେଲ କରି ପଚାରିବାକୁ ଇଚ୍ଛା ହେଉଛି, ଆସିଲ ତ, ଏତେ ଡେରି କଲ କାହିଁକି ? ଆଗରୁ ଯଦି ଆସି ଥାଆନ୍ତ, ଏ ଘରେ କଳି ମଞ୍ଜି ପୋତା ହୋଇ ନ ଥାନ୍ତା !

ନାଇଁ, ମୁଁ ଭୁଲ ବୁଝିଚି । ସେଇ ନନ୍ଦିକା ତ ନଅ ବର୍ଷ ହେଲା ଆସିଲାଣି, କେତେ ଔଷଧ ମଉଷଧି ଖାଇଥିଲା, ସବୁ ଦେବଦେବୀଙ୍କର ପୂଜା କରା ହେଲା, ଉପାସ ବ୍ରତ ନନ୍ଦିକା ପାଳିଲା; ଆଜଯାଏ ଫଳ ନ ଥିଲା ତ ! ପୁଅ କଢ଼େଇ ଆଣିଛି ଲଳିତା ।

ସେଇଟି ମୋର ଲକ୍ଷ୍ମୀ ! କେଡ଼େ ସୁଲକ୍ଷଣୀ ! କେତେ ସେବା ସେ ମୋର କରିଛି । ତା'ର ବି ସାତ ପୁଅ ହେବ ଯେ ।

କାହିଁ ଗଲା ସେ ବାଇଆଣୀ ? ଗୋଡ଼ ତାର ତଳେ ଲାଗୁ ନ ଥିବ । ତା 'ସା' ର ପୁଅ ହୋଇଛି । କେଡ଼େ ଭଲ ପାଏ ସେ ନନ୍ଦିକାକୁ । କେତେ ବୁଦ୍ଧି ତାର, ନନ୍ଦିଆ ହାତରୁ ସବୁ ଗହଣା ଛଡ଼ାଇ ରଖିଛି, ସବୁ ଟଙ୍କା ଜବତ କରିଛି । ନନ୍ଦିକା ପାଖରେ ପୁଣି ସମର୍ପି ଦେଇଛି ।

ହଉ, ସୁଖରେ ସେମାନେ ଘର କରନ୍ତୁ ।

ନାଥ ଝୋକା ପାଟି କରୁଛୁ, ଅଭସ୍ୱାଙ୍କର ଦରମଲ ହାଡ଼ରେ ନୂଆ ଜୀବନର ଶିହରଣ ଛୁଟାଇଛୁ ।

ବୋଉ, ବୋଉ—

ଲଳିତା ଘରେ ପଶିଲା । ସତେ ତ, ବାଇଆଣୀ ପରି ଦିଶୁଛି । ମୁଣ୍ଡ ଫୁରୁ ଫୁରୁ ଅଧ ଲଙ୍ଗୁଳୀ । ଦେହରେ ବେଶୀ ଗହଣା ନାହିଁ, ମୋଟା ଦରମଇଳା ଲୁଗାର ପଣତ ଲୋଟିଯାଇଛି ତଳେ । ହସରେ ଓଠ ଫାଟି ପଡ଼ୁଛି । ହାତରେ ଟିକି ଟିକି ଜାମା ପାଇଜାମା ଧରିଛି ।

ଆରେ, ଏ ଲଳିତାଟା, ବୋହୂ ନା ଝିଅ ମ ।

ବୋଉ ରାତି ଗୋଟାଏ ହେଲାଣି, ତମେ ଚେଇଁ ବସିଛ ? ମୋ ରାଣ, ଟିକଏ ଶୋଇପଡ଼ ।

ତୋ ଶଶୁରର ରଡ଼ିରେ କଣ ନିଦ ହେବ ?

ମୋଓର ପୁଅ ସେ, 'ମା' କହୁଛି—

ଲଳିତା ହସିଲା ।

ଅଭସ୍ୱା କହିଲେ, ହୁଁ, ସେ ତୋଓର ପୁଅ । ମୁଁ ବି ତୋର ଝିଅ ହୋଇ ଆସିବ ଯେ ଦିନେ ରହିଥା ।

ଜନ ଡାକିଲା ଦ୍ୱାରବନ୍ଧରୁ, ସାନ ଭଉଜ !

ଜ୍ୱର ଅଗ ଉଠୁଛି ।

କଅଣ ଗୋ ଜନ ?

ଲଳିତା ଛୁଟି ଆସିଲା ଶାଶୁଙ୍କ ପାଖରୁ ।

ବଡ଼ ଡାକ୍ତର ନନ୍ଦକାକୁ ଝଲପ କରି ଚାଲିଗଲେଣି । ସବୁ ଭଲ ଥିଲା । କେବଳ ଅତ୍ୟନ୍ତ ଦୁର୍ବଳତା । । ଶ୍ରୀମତୀ ଶ୍ରେଇ ତ ଅଛନ୍ତି, ବାକି ଚିନ୍ତା ସେ ନେବେ । ପିଲାଟିକୁ ଧୋଇ ଧାଇ ସଫା ସୁତୁରା କରି ଦୋଲା ଖଟରେ ଶୋଇ ଦେଇଛି ନର୍ସ । ଟିକି ମଣିଷକୁ ସମସ୍ତେ ଦେଖି ଆସିଲେଣି । ନନ୍ଦକା ଆଖି ପୂର୍ଣ୍ଣ କରି ଦେଖିଛି । ସବୁ ବେଦନା ସପନ ପରି ଭୁଲିଛି ।

'ମା' !

ମୁଗ୍ଧ ଆଖିରେ ନନ୍ଦନା ଚାହିଁଲା ଲଳିତାକୁ ।

ସେ କାହାନ୍ତି ?

ବୋଉଙ୍କ ପାଖରେ ।

ବୋଉ ଭଲ ଅଛନ୍ତି ?

ଉଠି ବସିଲେଣି । କହିଲେ, ତୋ ଶଶୁରର ପାଟି ଶୁଭୁଛି କେ ଲଳିତା ! ଜୀବନରେ ଏତେ ଆନନ୍ଦ କେବେ ତାଙ୍କର ହୋଇ ନ ଥିଲା ।

ନନ୍ଦକାର ଦୁର୍ବଳ ମୁହଁରେ ହସ । କ୍ଷୀଣ ସ୍ୱରରେ କହିଲା, ବୋଉ ଟିକଏ ଆସିବେ ନାହିଁ, ଦେଖିବେ ନାହିଁ ତାଙ୍କ ନାତକ ?

ଶ୍ରୀମତୀ ଖୋଇ କହିଲେ, ସେ ଅତି ଦୁର୍ବଳ, ଦେଖିବେ ବଲେ, କାଲି ଦେଖିବେ ।

କାଲେ କଅଣ ଘଟିବ ?

ସେ ଭୟ ନାହିଁ ନନ୍ଦକା, ବୁଢ଼ୀ ଭଲ ହୋଇଗଲେଣି ।

କନ୍ନ କହିଲା, ମୁଁ ଯାଉଛି ତାଙ୍କୁ କାଖ କରି ଆଣିବ । ଯାଉଛି ।

କନ୍ନ ଚାଲିଗଲା ।

ଲଳିତା ନଇଁ ପଡ଼ିଛି ଝୁଲା ଖଟ ଉପରେ । ଟିକି ପିଲାଟି କୁନ୍ତୁ କୁନ୍ତୁ କରି ଚାହିଁଛି । ନନ୍ଦକାର ଆଖି ଲାଖି ରହିଛି ସେଇଠି ।

'କା' '

ଲଳିତା ଉଠି ଠିଆ ହେଲା ।

ଦେଖିଲୁ ତୋ ପୁଅକୁ ?

ଉହୁଁ, ଭଲକରି ଦେଖି ନାହିଁ । ତୁ ଭଲ ହୋଇ, ଶେଯରୁ ଉଠି ତାକୁ ମୋ କୋଳକୁ ଦେବୁ, ତେବେ ଯାଇଁ ତାକୁ ମୁଁ ଆଖି ପୁରେଇ ଦେଖିବ ।

ଶ୍ରୀମତୀ ଖୋଇଙ୍କୁ ନମସ୍କାର କରିବୁ 'କା', ସେଇ ତୋ ପୁଅକୁ ଆଣିଛନ୍ତି ।

ଭୁଲି ଯାଇଥିଲି ।

ଲଳିତା ଡାକ୍ତର ଖୋଇଙ୍କ ପାଖକୁ ଉଠିଗଲା । ନମସ୍କାର କଲା । ହାତ ଧରି ପୁଣି କହିଲା, ମୋ 'ସା' କେବେ ଭଲ ହୋଇ ଉଠିବ ?

ସାତଟି ଦିନ ଲାଗିବ ।

କନ ସତେ କି କାଖ କରି ଅଭ୍ୟସ୍ତାକୁ ଆଣିଛି । ସୁନନ୍ଦ ମଧ୍ୟ ତାଙ୍କର ହାତ ଧରିଛି । ଶ୍ରୀମତୀ ଷ୍ଟେଇ ଉଠି ପଦାକୁ ଆସିଲେ । ସୁନନ୍ଦ ପଚାରିଲା, ନନ୍ଦିକାର ଅବସ୍ଥା କପରି ଅଛି ?

ଭଲ ଅଛୁ । ଅତି କଷ୍ଟ ସେ ପାଉଛନ୍ତି । ଶ୍ରୀଫଣ ହାମୋରେଜ୍ । ଦେହରେ ରକ୍ତ ନାହିଁ । ଅତି ଦୁର୍ବଳ । ଏତେ ଲୋକ ଭିଡ଼ କରିବା ଠିକ୍ ନୁହେଁ । ମନରେ ଉତ୍ତେଜନା ଆସିବ । ହାର୍ଟ ଫେଲ୍ କରିପାରେ । ସମସ୍ତଙ୍କୁ ଚାଲିଯିବାକୁ କହନ୍ତୁ । ଏଇ ସବୁ କାରଣରୁ ଡାକ୍ତରଖାନାକୁ ନେବା ସିଭିଲ୍ ସର୍ଜନ କହୁଥିଲେ । ଆପଣମାନେ ଶୁଣିଲେ ନାହିଁ । ଅତି ଜଟିଳ କେସ୍ । ରକ୍ତ ଇଞ୍ଜେକ୍‌ସନ ଦିଆ ହୋଇଛୁ । ତଥାପି, ନିରାପଦ ନୁହେଁ । ଜଗି ରହିବାକୁ ସିଭିଲ୍ ସର୍ଜନ ମତେ କହିଗଲେ । ସିରିଅସ୍ ! କେତେବେଳେ କି ଟର୍ଣ୍ଣ ନେବ, କିଏ କହିବ ? ସମସ୍ତଙ୍କୁ ଚାଲିଯିବାକୁ କହନ୍ତୁ ।

ମୁଗ୍ଧ ଆଖିରେ ନନ୍ଦିକା ଚାହିଁଛୁ,—ହସିଲା ମୁହଁରେ ଦୁର୍ବଳ ଶାଶୁ ଅନେଇଁଛନ୍ତି ତାଙ୍କର ସପନ ପ୍ରତିମା, କାମନାର କୁସୁମଟିକୁ ' ଏପାଖେ କନ, ସେପାଖେ ଲଳିତା, ଶାଶୁଙ୍କୁ ଧରି ଠିଆ ହୋଇଛନ୍ତି ।

ଦେଖନ୍ତୁ, ଆଖି ପୁରାଇ ସେ ଦେଖନ୍ତୁ । ମନ କାମନା ପୂର୍ଣ୍ଣହେଉ, ଆତ୍ମା ତାଙ୍କର କହୁ, ନନ୍ଦିକା ବାଞ୍ଝ ନୁହେଁ , ନନ୍ଦିକାର ପୁଅ ହୋଇଛୁ । ପାଚିଲା ଫଳ ସେ, କେବେ ଝଡ଼ିବେ କିଏ କହିବ ? ଦେଖନ୍ତୁ, ଆଖି ପୁରାଇ, ମନ ପୁରାଇ ସେ ଦେଖନ୍ତୁ ।

ନନ୍ଦିକାର କୋହ ଉଠିଲା । ଦେହ ଝାଳେଇ ଆସିଲା ।

ସୁନନ୍ଦ ଭିତରକୁ ଆସିଲା । କହିଲା, ଡାକ୍ତର ବିରକ୍ତ ହେଉଛନ୍ତି । ସମସ୍ତେ ତୁମେ ଚାଲିଯାଅ । ରାତି ଦୁଇଟା ହେଲାଣି । ଶୋଇବ ଯାଅ । ନନ୍ଦିକା ବି ଟିକିଏ ଶୋଉନ୍ତୁ ।

କା—, କା—, କା—

'ମା' ଡାକୁଛୁ ? ଝନେଇଁ ଝନେଇଁ ?

ଲଳିତା ଆଖି ଖୋଲିଲା ।

ଝରକା ବାହାରେ ସଜ ସକାଳର ଆଲୁଅ । ରାତି ପାହିଲାଣି । ବାହାରେ ଝରକା ଉପରେ, ଶୁଭ କାଉଟିଏ ବସି ତାଆରି ଆଡ଼କୁ ଚାହିଁ ବୋବାଳି ଛାଡ଼ୁଛୁ । ଝରକା ଉପର କାନ୍ଥରେ ନନ୍ଦିକାର ବଡ଼ ଭରି ଫଟୋ । ବୋହୂ ହୋଇ ନୂଆ ମଣିଷଟି ଘରକୁ ଆସିଥିଲା ଯେତେବେଳେ । ମୁଣ୍ଡରେ ଓଢ଼ଣା, ନାକରେ ନୋଥ ବସଣୀ, କପାଳରେ ଚନ୍ଦ୍ର ଝୁମା । ଲାଜେଇ ଲାଜେଇ ହସ । ହାତ ଭରି ଚୁଡ଼ିଆ ଗୁହାଣୀ ।

କେଡ଼େ ସୁନ୍ଦର ଦିଶୁଛି ଆଜ ଆଖିକୁ ! କେତେ ଦିନରୁ ଟଙ୍ଗା ହୋଇଥିବା କାଗଜ ଫୁଲର ମାଳରେ ପ୍ରତେକ କଏ ନୂଆ କରି ରଙ୍ଗ ବୋଳିଛି । ଏଇ ଗାଉଁଲି ଝିଅଟି, ଆଜ ମା ହୋଇଛି, ଦେବ ଶିଶୁପରି ପିଲାଟିଏ ସଂସାରକୁ ଆଣିଛି !

ନନ୍ଦକାର ଫଟୋ ପାଖରେ ଲଳିତାର ବଡ଼-କରା ଛବି । ସିନେମା ତାରକାର ଅନୁକରଣ ! ମୁଣ୍ଡରେ ଲୁଗା ନାହିଁ, ଦର ଲଙ୍ଗୁଳୀ । ମୁହଁରେ ଅସ୍ୱାଭାବିକ ନିର୍ଲଜ ହସ । ସରମ ନଥିଲା ସିଧା ସଳଖ ଗୃହିଣୀ । କେଡ଼େ ବେହିଆ, କେଡ଼େ ଅଦରକାଅ ଦିଶୁଛି । ସୁନନ୍ଦ ପୁଣି ତାକୁ ପ୍ରଶଂସା କରେ, ନନ୍ଦକାକୁ କହେ ମରହଟ୍ଟୀ । ଛି ।

କା—, କା—, କା—

ଶୁଭ କାଉ ରାବୁଛି ।

ଡଳୁ କନର ପାଟି ଶୁଭୁଛି ।

ଆରେ, ସେ ଶୋଇ ପଡ଼ିଥିଲା । ରାତି ଦୁଇଟାରୁ ସକାଳ ପାଞ୍ଚଟା ହେଲାଣି । 'ମା' ତାର କଅଣ କରୁଥିବ ? ତା'ର ପୁଅର ନୂଆ ମୁହଁଟି ନୂଆ ସକାଳୁ ସେ ଦେଖିବ ନାହିଁ କି ?

ମାର୍ଗଶିର ଶୁକ୍ଳ ଦଶମୀ, ସଜ ସକାଳ !

ଡଳୁ ପାଟି ଶୁଭୁଛି ।

ଅସ୍ତ ବ୍ୟସ୍ତ ହୋଇ ପଲଙ୍କ ଉପରୁ ଲଳିତା ଉଠିଲା । କାଇଟା ଫଡ଼୍ କରି ଉଡ଼ି ପଳେଇଗଲା । ଲଳିତା ଦୁଇ ଡେପାରେ ପାହାଚ ଡେଇଁ ତଳକୁ ଆସିଲା । ବୋଉଙ୍କ ଘରେ ଆଉ କେହି ନାହିଁ । ସେ ଶୋଇଛନ୍ତି । ଘନ ଘନ ନିଃଶ୍ୱାସ ଛାଡ଼ୁଛନ୍ତି ।

ସେ ନନ୍ଦକା ଘରକୁ ଛୁଟିଲା ।

ଘର ବାହାରେ ଲୋକ ଭିଡ଼ ! ମନ ପ୍ରଶ୍ନେଇ ହଉଛି, କଅଣ ହେଇଛି ?

ସମସ୍ତଙ୍କୁ ଠେଲି ସେ ଭିତରେ ପଶିଲା । ପିଲାଟି ଝୁଲା ଖଟରେ ଶୋଇଛି । ନନ୍ଦକାର ଛାତି ଉପରେ ଯନ୍ତ୍ର ଲଗାଇ ନାଡ଼ିପଡ଼ା ଦେଖୁଛନ୍ତି ବଡ଼ ଡାକ୍ତର, କାନରେ ଷ୍ଟେଥିସ୍କୋପ ।

କଅଣ ସେ ଦେଖୁଛନ୍ତି ?

ଡାକ୍ତରଣୀ ହେଇ ମୁହଁ ଶୁଖାଇ ଠିଆ ହେଇଛନ୍ତି ମୁଣ୍ଡ ପାଖରେ !

'ସା' ଆଖି ବୁଜି ଶୋଇଛି । ତା'ର ଓଠରେ ଲାଖି ରହିଛି ମନହୃଜା, ସବୁ ଦୁଃଖ ପାସୋରି ହସ । ସ୍ୱାମୀ ଗୋଡ଼ ପାଖରେ ଠିଆ ହୋଇଛନ୍ତି । ସେଇ ଅନିଦ୍ରା, କେଡ଼େ କଳା ଦିଶୁଛନ୍ତି ସେ ।

ଡାକ୍ତର ଉଠି ଠିଆହେଲେ ।

ମୁହଁ ଶୁଖାଇଲେ । କାନରୁ ଯନ୍ତ୍ର କାଢ଼ିଲେ । ମୁହଁ ଖୋଲିଲେ, ଡେରି ହୋଇଗଲା ସୁନନ୍ଦ ବାବୁ !

ଏଁ —?

ସୁନନ୍ଦର ଆଖିରୁ ଦୁଇଧାର ଲୁହ ଗଡ଼ି ଆସିଲା ।

ଅସ୍ଥିର ହୋଇ ଲଳିତା ପଚାରିଲା, କଅଣ ଡେରି ହେଲା ?

କେହି ତା ପ୍ରଶ୍ନର ଉତ୍ତର ଦେଲେ ନାହିଁ ।

ସେ କାବା ହୋଇ ଚାହିଁଲା ଏ ମୁହଁରୁ ସେ ମୁହଁକୁ । ସମସ୍ତଙ୍କ ଆଖିରେ ଲୁହ ।

ନନ୍ଦିକାର ଆଖିରେ ତ ଲୁହ ନାହିଁ, ଓଠରେ ଲାଖି ରହିଛି ସେହି ମନହୃଜା ହସଟି ।

ସମସ୍ତେ ଘରୁ ବାହାରି ଯାଉଛନ୍ତି କାହିଁକି ? ଆରେ, ସ୍ୱାମୀ କାହିଁକି କେଣ କାଣୁଛନ୍ତି ?

ନନ୍ଦିକାର ଶ୍ରୁତ ଉପରେ ବଚଳିତ ଲତାଟି ପରି ନେଇଟି ପଡ଼ିଲା ।

ସେ ସବୁ ବୁଝିପାରିଲା । ସବୁ ଟେକ ରଖି ତାର 'ସା' ସେପୁରକୁ ଚାଲିଯାଇଛି । ସମସ୍ତଙ୍କୁ ସେ ଦେଇଛି, କାହାର ସେ କିଛି ଧାରି ଯାଇ ନାହିଁ ।

ହସିଲା ମୁହଁ ଟିକୁ ଦୁଇ ହାତରେ ଟେକି ଧରି, ଶୀତଳ କପାଳରେ ମୁହଁ ଲଗାଇ ସେ ଆକୁଳ ହେଇ କହି ଉଠିଲା, କହିବୁ ନାହିଁ, କହିବୁ ନାହିଁ କି ମୋର 'ସା' କଅଣ ଚୋର ହୋଇଛି ?

ଲଳିତାର ଆଖିର ଲୁହ ନନ୍ଦିକାର ଆଖିରେ ପଡ଼ୁଛି । ତାର ନିଦ ଭାଙ୍ଗୁ ନାହିଁ । ଯାହାକୁ ସେ ସଂସାରକୁ ଆଣି ଲଳିତାର ହାତରେ ସମର୍ପି ଦେଇଯାଇଛି, ଝୁଲା ଖଟରୁ ସେଇ ଏକା ଚାହିଁ ଦେଉଛି—

ଭୁବନେଶ୍ୱର

ତା ୩ | ୧୧ | ୫୪

—୦—